# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**April- 2018**

**୭୪ ଭାଗ ୯ମ ସଂଖ୍ୟା ଚୈତ୍ର–ବୈଶାଖ ଅପ୍ରେଲ – ୨୦୧୮**



ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in

ଫୋନ୍ : ୦୬୭୪–୨୫୩୦୨୧୧

**ପ୍ରତିଖଣ୍ଡ : ଟ. ୫.୦୦**

# ସୂଚୀ

ଅପ୍ରେଲ – ୨୦୧୮



❖ ❖ ❖

# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ–ପୟୋଧି–ବିଧୌତ–ଶରୀରା,
ତାଳତମାଳ–ସୁଶୋଭିତ–ତୀରା,
ଶୁଭ୍ରତଟିନୀକୂଳ–ଶୀକର–ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି–ସୁଶୋଭିତ–କ୍ଷେତ୍ରା,
ଜ୍ଞାନବିଜ୍ଞାନ–ପ୍ରଦର୍ଶିତ–ନେତ୍ରା,
ଯୋଗୀରଷିଗଣ–ଉଟଜ–ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ–ଦେଶା,
ଚାରୁକଳାବଳି–ଶୋଭିତ–ବେଶା,
ପୁଣ୍ୟ ତୀର୍ଥଚୟ–ପୂର୍ଣ୍ଣ–ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର–ଦର୍ପିତ–ଗେହା,
ଅରିକୁଳ–ଶୋଣିତ–ଚର୍ଚ୍ଚିତ–ଦେହା,
ବିଶ୍ୱଭୂମଣ୍ଡଳ–କୃତବର–ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ–ବନ୍ଦ୍ୟା,
ଭୁବନବିଘୋଷିତ–କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)

# ନବ ଉତ୍କଳର ନିର୍ମାତାଗଣ



ଉତ୍କଳଗୌରବ ମଧୁସୂଦନ ଦାସ



ଉତ୍କଳମଣି ଗୋପବନ୍ଧୁ ଦାସ



ସ୍ୱଭାବକବି ଗଂଗାଧର ମେହେର



ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ



ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ

# ନବ ଉତ୍କଳର ନିର୍ମାତାଗଣ



ପଣ୍ଡିତ ନୀଳକଣ୍ଠ ଦାସ



କବିବର ରାଧାନାଥ ରାୟ



ବ୍ୟାସକବି ଫକୀରମୋହନ ସେନାପତି



ଡକ୍ଟର ହରେକୃଷ୍ଣ ମହତାବ



ମହାନ ଜନନାୟକ ବିଜୁ ପଟ୍ଟନାୟକ

# ଶ୍ରଦ୍ଧାଞ୍ଜଳି



ମହାନ ଜନନାୟକ ବିଜୁ ପଟ୍ଟନାୟକ

सत्यमेव जयते



ଓଡ଼ିଶା ଦିବସ -୨୦୧୮ ପାଳନ ଅବସରରେ

# ଭାରତର ମାନ୍ୟବର ରାଷ୍ଟ୍ରପତି
# ଶ୍ରୀଯୁକ୍ତ ରାମନାଥ କୋବିନ୍ଦଙ୍କ
# ବାର୍ତ୍ତା

ମୁଁ ଜାଣି ଆନନ୍ଦିତ ଯେ, ଓଡ଼ିଶା ସରକାର ୨୦୧୮ ଅପ୍ରେଲ ୧ ତାରିଖରେ ଓଡ଼ିଶା ଦିବସ ପାଳନ କରୁଛନ୍ତି ।

ଓଡ଼ିଶା ରାଜ୍ୟ ତା'ର ପ୍ରାଚୀନ ସଂସ୍କୃତି, ଐତିହ୍ୟ ଏବଂ ବିପୁଳ ପ୍ରାକୃତିକ ସମ୍ବଳ ପାଇଁ ସର୍ବବିଦିତ । ଏହାର ଖଣିଜ ସମ୍ପଦ ଓ ସମୃଦ୍ଧ ଜୈବବିବିଧତା ଏବଂ ସର୍ବୋପରି ଏହାର ପରିଶ୍ରମୀ ଜନସାଧାରଣ ଓଡ଼ିଶାର ସର୍ବାଙ୍ଗୀନ ବିକାଶ ଦିଗରେ ଉଲ୍ଲେଖନୀୟ ଭୂମିକା ନିର୍ବାହ କରୁଛନ୍ତି । ମୁଁ ନିଶ୍ଚିତ ଯେ, ଓଡ଼ିଶାର ଜନସାଧାରଣ ଏବଂ ଓଡ଼ିଶା ସରକାର କଠିନ ପରିଶ୍ରମ ସହ ସାମଗ୍ରିକ ଅଭିବୃଦ୍ଧି କ୍ଷେତ୍ରରେ ରାଜ୍ୟକୁ ଏକ ଉଦାହରଣ ରୂପେ ଉପସ୍ଥାପିତ କରିପାରିବେ ।

ଓଡ଼ିଶା ଦିବସ ଅବସରରେ, ମୁଁ ଓଡ଼ିଶାବାସୀଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ଏବଂ ଏହି ଉତ୍ସବ ପାଳନର ସର୍ବସଫଳତା କାମନା କରୁଛି ।

**ନୂଆଦିଲ୍ଲୀ**
**ମାର୍ଚ୍ଚ ୨୮, ୨୦୧୮**

R N Kovind

**(ରାମନାଥ କୋବିନ୍ଦ)**

सत्यमेव जयते

ଓଡ଼ିଶା ଦିବସ –୨୦୧୮ ପାଳନ ଅବସରରେ

# ଭାରତର ମାନ୍ୟବର ଉପରାଷ୍ଟ୍ରପତି
# ଶ୍ରୀଯୁକ୍ତ ଏମ୍. ଭେଙ୍କିଆ ନାଇଡୁଙ୍କ
# ବାର୍ତ୍ତା



ମୁଁ ଜାଣି ଆନନ୍ଦିତ ଯେ, ୨୦୧୮ ଅପ୍ରେଲ ୧ ତାରିଖ ଦିନ ଓଡ଼ିଶା ଦିବସ ପାଳନ ହେଉଛି ।

୧୯୩୬ ମସିହା ଅପ୍ରେଲ ୧ ତାରିଖରେ ସ୍ୱତନ୍ତ୍ର ରାଜ୍ୟଭାବେ ଆତ୍ମପ୍ରକାଶ କରିଥିବା ଓଡ଼ିଶାର ସୁଦୀର୍ଘ, ଜାଜ୍ୱଲ୍ୟମାନ ଅତୀତ, ଏହାର ଅସଂଖ୍ୟ କୀର୍ତ୍ତିରାଜି ଓ ସ୍ଥାପତ୍ୟର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ ମଧ୍ୟରେ ଏବଂ ସାହିତ୍ୟ, ନୃତ୍ୟ ଓ ସଙ୍ଗୀତର ଉଲ୍ଲେଖନୀୟ ଅବଦାନ ଭିତରେ ପ୍ରତିବିମ୍ବିତ । ବିପୁଳ ପ୍ରାକୃତିକ ସମ୍ବଳର ସମ୍ଭାର ଏବଂ ଏହାର ପରିଶ୍ରମୀ ଜନସାଧାରଣଙ୍କୁ ନେଇ ଓଡ଼ିଶା ଆଜି ଦ୍ରୁତ ବିକାଶ ପଥରେ ଅଗ୍ରସର । ମୁଁ ଦୃଢ଼ ନିଶ୍ଚିତ ଯେ, ଓଡ଼ିଶା ଏହାର ବିକାଶ ଦିଗରେ ନିରନ୍ତର ଉଦ୍ୟମ ଅବ୍ୟାହତ ରଖିବା ସହିତ ଓଡ଼ିଶାରେ ଓ ଓଡ଼ିଶା ବାହାରେ ରହୁଥିବା ସମସ୍ତ ଓଡ଼ିଆମାନଙ୍କ ଜୀବନଶୈଳୀରେ ଉନ୍ନତି ଆଣିବା ନିମନ୍ତେ ସଦାସର୍ବଦା ପ୍ରୟାସ ଜାରି ରଖିବ ।

ଓଡ଼ିଶା ଦିବସ ଅବସରରେ, ରାଜ୍ୟ ସରକାର ତଥା ରାଜ୍ୟବାସୀଙ୍କୁ ମୋର ଆନ୍ତରିକ ଶୁଭକାମନା ଓ ଶୁଭେଚ୍ଛା ଜଣାଇବା ସହିତ ସମସ୍ତଙ୍କର ସୁଖ ଓ ସମୃଦ୍ଧି କାମନା କରୁଛି ।

(ଏମ୍. ଭେଙ୍କିଆ ନାଇଡୁ)

**ନୂଆଦିଲ୍ଲୀ**

**ମାର୍ଚ୍ଚ ୨୭, ୨୦୧୮**

सत्यमेव जयते

ଓଡ଼ିଶା ଦିବସ –୨୦୧୮ ପାଳନ ଅବସରରେ

# ମାନ୍ୟବର ପ୍ରଧାନମନ୍ତ୍ରୀ
# ଶ୍ରୀଯୁକ୍ତ ନରେନ୍ଦ୍ର ମୋଦିଙ୍କ
# ବାର୍ତ୍ତା



ଓଡ଼ିଶା ଦିବସର ଆନନ୍ଦମୟ ମୁହୂର୍ତ୍ତ ଅବସରରେ ଓଡ଼ିଶାବାସୀଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ !

ଆଜିର ଏହି ପବିତ୍ର ଦିବସରେ ଆସନ୍ତୁ, ଆମେ ସମସ୍ତେ ଏକତ୍ରିତ ହୋଇ ଓଡ଼ିଆ ଭାଷାଭାଷୀମାନଙ୍କ ସଫଳତାର ଉତ୍ସବ ପାଳନ କରିବା ଏବଂ ଯାହାର ସାଂସ୍କୃତିକ ଐତିହ୍ୟ ସମଗ୍ର ଦେଶ ନିମନ୍ତେ ଏକ ଗର୍ବର ବିଷୟ, ସେପରି ଏକ ସୁନ୍ଦର ସମାଜର ଉଚ୍ଚାକାଂକ୍ଷାକୁ ସାକାର କରିବା ।

ଭାରତର ପ୍ରଗତି ପଥରେ ଅତୁଳନୀୟ ଅବଦାନ ରଖିଥିବା ଓଡ଼ିଶାର ମହାମନୀଷୀମାନଙ୍କ ନିକଟରେ ଆମ୍ଭେ ମଥାନତ କରୁଛୁ । ସେମାନଙ୍କ ସ୍ୱପ୍ନର ଓଡ଼ିଶା ଗଠନ ନିମନ୍ତେ ଆଜିର ଏହି ସ୍ୱତନ୍ତ୍ର ଦିବସ ଆମ ସମସ୍ତଙ୍କୁ ଅନୁପ୍ରାଣିତ କରୁ । ଆସନ୍ତୁ, ଆମେ ସଭିଏଁ ସମ୍ମିଳିତ ଭାବେ କାର୍ଯ୍ୟକରି ଆମ ରାଜ୍ୟକୁ ଉତ୍କର୍ଷ ଏବଂ ସମୃଦ୍ଧିର ନୂତନ ଶିଖରରେ ପହଞ୍ଚାଇବା ।

ଓଡ଼ିଶା ଦିବସ ପାଳନ ଅବସରରେ ଆୟୋଜିତ ହେବାକୁ ଥିବା ବିବିଧ କାର୍ଯ୍ୟକ୍ରମଗୁଡିକର ସର୍ବସଫଳତା କାମନା କରୁଛି ।

**ନୂଆଦିଲ୍ଲୀ**

**୨୮ ମାର୍ଚ୍ଚ, ୨୦୧୮**

(ନରେନ୍ଦ୍ର ମୋଦି)

ଓଡ଼ିଶା ଦିବସ -୨୦୧୮ ପାଳନ ଅବସରରେ

# ମାନ୍ୟବର ରାଜ୍ୟପାଳ
# ଶ୍ରୀଯୁକ୍ତ ସତ୍ୟ ପାଲ ମଲିକଙ୍କ
# ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ଓଡିଶା ଦିବସ ଉପଲକ୍ଷେ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି । ୧୯୩୬ ମସିହା ଅପ୍ରେଲ୍ ୧ ତାରିଖ ଦିନ ଭାଷାଭିତ୍ତିକ ରାଜ୍ୟ ଭାବେ ଗଠିତ ହୋଇ ଓଡିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ହାସଲ କଲା । ରାଜ୍ୟର ବିଶିଷ୍ଟ ବ୍ୟକ୍ତିତ୍ୱ ଯଥା ଉତ୍କଳଗୌରବ ମଧୁସୂଦନ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ, ବ୍ୟାସକବି ଫକୀରମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ଆହୁରି ଅନେକ ବରପୁତ୍ର ଓଡିଶାର ଏହି ଭାଷାଭିତ୍ତିକ ଏକତ୍ରୀକରଣ ପାଇଁ ନିଃସ୍ୱାର୍ଥପର ଭାବେ ତ୍ୟାଗ ସ୍ୱୀକାର କରିଥିଲେ ।

ଓଡିଆ ଭାଷାଭାଷୀ ଅଂଚଳଗୁଡିକରେ ରହୁଥିବା ଓଡିଆମାନଙ୍କୁ ଏକାଠି କରି ଓଡିଶାର ଏକତ୍ରୀକରଣ କ୍ଷେତ୍ରରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଦ୍ୱାରା ୧୯୦୩ ମସିହାରେ ଗଠିତ ଉତ୍କଳ ସମ୍ମିଳନୀର ଭୂମିକା ଥିଲା ଅତୁଳନୀୟ । ସୁଦୂର ଦେଶଗୁଡିକ ସହ ଆମର ନୌବାଣିଜ୍ୟିକ ପରମ୍ପରା ଆମର ଗୌରବମୟ ତଥା ବୀରତ୍ୱପୂର୍ଣ୍ଣ ଅତୀତ ସଂପର୍କରେ ଆଲୋକପାତ କରେ । ଧର୍ମନିରପେକ୍ଷତା ଦିଗରେ ସହନଶୀଳତାର ଶକ୍ତି, ବିଶ୍ୱଭ୍ରାତୃତ୍ୱ ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଆମର ମୌଳିକ ବିଶେଷତ୍ୱ ।

ଆମର ପ୍ରାଚୀନ କଳା ଓ ଭାସ୍କର୍ଯ୍ୟ, ମନ୍ଦିର ସ୍ଥାପତ୍ୟ, ଧର୍ମଗ୍ରନ୍ଥ ଓ ତାଳପତ୍ର ପୋଥି, ବିଶ୍ୱପ୍ରସିଦ୍ଧ ଓଡିଶୀ ନୃତ୍ୟ ଓ ସଂଗୀତ ଆମକୁ ସାରା ବିଶ୍ୱରେ ଏକ ଅନନ୍ୟ ପରିଚିତି ପ୍ରଦାନ କରିଛି । ଆମର ଗୌରବମୟ ଅତୀତ ଏବେ ମଧ ଆମକୁ ଦୃଢତା ଓ ପ୍ରତିବଦ୍ଧତାର ପ୍ରେରଣା ଯୋଗାଉଛି । ସଂପ୍ରତି ଓଡିଆମାନଙ୍କ ସାମର୍ଥ୍ୟ ଓ ଉତ୍କର୍ଷ ରାଜ୍ୟ, ଏପରିକି ଦେଶ ବାହାରେ ମଧ ପ୍ରତିପାଦିତ ହେଉଛି ।

ଓଡିଶାର ଅନନ୍ୟ ସାଂସ୍କୃତିକ ଗରିମା ଏବଂ ଓଡିଆ ଭାଷା ଓ ସାହିତ୍ୟର ସୁରକ୍ଷା, ବିକାଶ ଏବଂ ସଂରକ୍ଷଣ ଦିଗରେ ରାଜ୍ୟ ସରକାର ପ୍ରତିବଦ୍ଧତାର ସହ କାର୍ଯ୍ୟ କରୁଛନ୍ତି । ରାଜ୍ୟ ସରକାରଙ୍କ ଆନ୍ତରିକ ଉଦ୍ୟମର ଫଳସ୍ୱରୂପ ୪ ବର୍ଷ ପୂର୍ବେ

ଓଡିଆ ଭାଷା ଦେଶର ୬ଷ୍ଠତମ ଭାରତୀୟ ଶାସ୍ତ୍ରୀୟ ଭାଷା ରୂପେ ମାନ୍ୟତାପ୍ରାପ୍ତ ହୋଇଥିଲା । ଓଡିଶା ବିଧାନସଭା ଇତିହାସରେ, ପ୍ରଥମଥର ପାଇଁ ରାଜ୍ୟର ସାଂସ୍କୃତିକ ରାଜଧାନୀ ପୁରୀଠାରେ ବିଗତ ବର୍ଷ ଡିସେମ୍ବର ୨୬ ତାରିଖ ଦିନ ଏକ ସ୍ୱତନ୍ତ୍ର କ୍ୟାବିନେଟ୍ ବୈଠକ ଅନୁଷ୍ଠିତ ହୋଇ ଓଡିଆ ଭାଷାର ବିକାଶ ଓ ପ୍ରସାର ପ୍ରତି ପ୍ରାଧାନ୍ୟ ଦେଉଥିବା ୨୦ଟି ଗୁରୁତ୍ୱପୂର୍ଣ୍ଣ ସଂକଳ୍ପନାମା ପାରିତ ହେବା ସହ ଓଡିଶାର ସମୃଦ୍ଧ ସାଂସ୍କୃତିକ ଗରିମା ଏବଂ ଐତିହ୍ୟର ସଂରକ୍ଷଣ ଓ ବିକାଶ ପାଇଁ ଏକ ନୂତନ ଐତିହ୍ୟ କ୍ୟାବିନେଟ୍ ଗଠନ କରାଯାଇଛି ।

ଓଡିଶା ବାହାରେ ଓଡିଆ ଭାଷା ଓ ସାହିତ୍ୟର ଅଧ୍ୟୟନ, ବିଶ୍ଳେଷଣ ଏବଂ ଗବେଷଣା ନିମନ୍ତେ ଜବାହରଲାଲ୍ ନେହରୁ ବିଶ୍ୱବିଦ୍ୟାଳୟ ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟଠାରେ ଓଡିଆ ଚେୟାର୍ ପ୍ରତିଷ୍ଠା କରାଯାଇଛି । ଓଡିଆ ଭାଷାର ପରିପାଟୀକୁ ଉଚ୍ଚ ସ୍ତରରେ ପହଞ୍ଚାଇବା ନିମନ୍ତେ ସକାରାତ୍ମକ ପଦକ୍ଷେପ ନେବା ପାଇଁ ରାଜ୍ୟ ସରକାର ଏକ ଭାଷା ଆୟୋଗ ଗଠନ କରିଛନ୍ତି । ଓଡିଶା ସରକାରୀ ଭାଷା ଅଧିନିୟମ, ୧୯୫୪ ଏବଂ ଓଡିଶା ଦୋକାନ ଓ ବାଣିଜ୍ୟିକ ପ୍ରତିଷ୍ଠାନ ଅଧିନିୟମ, ୧୯୫୬ର ବିଧିଦୃଷ୍ଟେ ସଂଶୋଧନ ଆଗତ କରାଯାଇ ସରକାରୀ ସ୍ତରରେ ଓ ଦୋକାନ ଏବଂ ବାଣିଜ୍ୟିକ ପ୍ରତିଷ୍ଠାନଗୁଡିକର ନାମଫଳକରେ ଓଡିଆ ଭାଷାର ବ୍ୟବହାର ଓ ପରିପାଳନକୁ ବାଧ୍ୟତାମୂଳକ କରାଯାଇଛି ।

ସାରା ବିଶ୍ୱରେ ଭାଷାପ୍ରେମୀଙ୍କ ନିମନ୍ତେ ଡିଜିଟାଇଜେସନ୍ ପୂର୍ବକ ୱେବ୍ ପ୍ଲାଟ୍‌ଫର୍ମରେ ଅନ୍‌ଲାଇନ୍ ଉପଲବ୍ଧି ତଥା ଓଡିଶାର ସମୃଦ୍ଧ ସାହିତ୍ୟିକ ଐତିହ୍ୟର ସୁରକ୍ଷା ଦିଗରେ 'ଓଡିଆ ଭର୍ଚୁଆଲ୍ ଏକାଡେମୀ' ପ୍ରତିଷ୍ଠା କରାଯାଇଛି । ବିଦ୍ୟାଳୟ ଛାତ୍ରଛାତ୍ରୀଙ୍କୁ ମାତୃଭାଷାରେ ଉତ୍କର୍ଷ ପ୍ରଦର୍ଶନ ନିମନ୍ତେ ପ୍ରୋତ୍ସାହିତ କରିବାର ଲକ୍ଷ୍ୟ ରଖି ରାଜ୍ୟ ସରକାର ମହାବିଦ୍ୟାଳୟ ସ୍ତରରେ 'ଓଡିଆ ଭାଷା ବୃତ୍ତି' ପୁରସ୍କାର ପ୍ରଦାନ ନିମନ୍ତେ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଓଡିଆ ଭାଷାକୁ ଏକ ନୂତନ ସ୍ତରରେ ପହଞ୍ଚାଇବା ଦିଗରେ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ସ୍ୱରୂପ ମହାବିଦ୍ୟାଳୟ ସ୍ତରରେ ବ୍ୟାସକବି ଫକୀରମୋହନ ଛାତ୍ରବୃତ୍ତି ପ୍ରଚଳନ କରାଯାଇଛି ଏବଂ ଉଚ୍ଚ ସ୍ତରରେ ଓଡିଆ ଭାଷା ଓ ସାହିତ୍ୟର ଗବେଷଣା ଦିଗରେ ପ୍ରୋତ୍ସାହନ ଯୋଗାଇଦିଆଯାଉଛି ।

୧୮୧୭ ମସିହାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଖୋର୍ଦ୍ଧା ପାଇକମାନଙ୍କ ବୀରତ୍ୱପୂର୍ଣ୍ଣ 'ପାଇକ ବିଦ୍ରୋହ'ର ୨୦୦ ବର୍ଷ ପୂର୍ତ୍ତି ଉତ୍ସବ ରାଜ୍ୟ ମହାସମାରୋହରେ ପାଳନ କରୁଛି ।

ରାଜ୍ୟର ବିକାଶ ଦିଗରେ ନାରୀ ସଶକ୍ତିକରଣ ହେଉଛି ଏକ ପ୍ରମୁଖ ପଦକ୍ଷେପ । ମିଶନ ଶକ୍ତିଠାରୁ ଆରମ୍ଭ କରି ମମତା, ପଞ୍ଚାୟତ ଏବଂ ସହରାଞ୍ଚଳ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡିକରେ ପର୍ଯ୍ୟାପ୍ତ ପ୍ରତିନିଧିତ୍ୱ ସହ ମହିଳାମାନେ ଆଜି ରାଜନୈତିକ, ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ସଶକ୍ତ ହୋଇପାରିଛନ୍ତି । ଓଡିଶାରେ ଶିଶୁ ମୃତ୍ୟୁହାର ଉଲ୍ଲେଖନୀୟ ଭାବେ ହ୍ରାସ ପାଇଛି ଏବଂ ଏହା ଜାତୀୟ ହାର ତୁଳନାରେ ବେଶ୍ ନିମ୍ନରେ ରହିଛି ।

ରାଜ୍ୟ ସରକାରଙ୍କ ପ୍ରଗତିଶୀଳ ନୀତିଗୁଡିକ ଓଡିଶାକୁ ଦେଶରେ ଏକ ଦ୍ରୁତ ଅର୍ଥନୈତିକ ଅଭିବୃଦ୍ଧି ହାସଲ କରିଥିବା ରାଜ୍ୟ ଭାବେ ରୂପାନ୍ତରିତ କରିଛି । କୃଷି ଉତ୍ପାଦନ, ଖାଦ୍ୟ ସୁରକ୍ଷା, କୃଷକଙ୍କ ଆୟ ବୃଦ୍ଧି, ବିପର୍ଯ୍ୟୟ ପରିଚାଳନା ଏବଂ ଦାରିଦ୍ର୍ୟ ଦୂରୀକରଣ ପରି ବିଭିନ୍ନ କ୍ଷେତ୍ରରେ ରାଜ୍ୟ ଉଲ୍ଲେଖନୀୟ କାର୍ଯ୍ୟ କରିଛି ।

ପୌରାଞ୍ଚଳ ଓ ବିଜ୍ଞାପିତ ଅଞ୍ଚଳ ପରିଷଦଗୁଡ଼ିକରେ ବସବାସ କରୁଥିବା ବସ୍ତିବାସିନ୍ଦାମାନଙ୍କୁ ଭୂ-ଅଧିକାର ଏବଂ ମହାନଗର ନିଗମଗୁଡ଼ିକରେ ବସବାସ କରୁଥିବା ବସ୍ତିବାସିନ୍ଦାମାନଙ୍କୁ ସଂପତ୍ତି ଅଧିକାର ପ୍ରଦାନ ପରି ଏକ ଅଭିନବ ପଦକ୍ଷେପ ଗ୍ରହଣ କରିବାରେ ଓଡ଼ିଶା ଦେଶରେ ପ୍ରଥମ ରାଜ୍ୟ । ସୁନ୍ଦରଗଡ଼, ଗଜପତି, ମୟୂରଭଂଜ, କେନ୍ଦୁଝର, ରାୟଗଡ଼ା, କୋରାପୁଟ, ନବରଙ୍ଗପୁର, ମାଲକାନଗିରି ଏବଂ କନ୍ଧମାଳ ପରି ୯ ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲାରେ ସ୍ୱତନ୍ତ୍ର ବିକାଶ ପରିଷଦ ଗଠନ କରାଯାଇଛି, ଯାହା ରାଜ୍ୟ ଜନସଂଖ୍ୟାର ୨୩ ପ୍ରତିଶତ ଜନଜାତିଙ୍କର ବିକାଶ ଓ ସଶକ୍ତିକରଣ ତଥା ସେମାନଙ୍କ ସାଂସ୍କୃତିକ ପରିଚିତି ଏବଂ ମହନୀୟତାର ସମାରୋହ ପାଳନ ନିମନ୍ତେ ଏକ ଐତିହାସିକ ପଦକ୍ଷେପ ଅଟେ ।

ଜଙ୍ଗଲ ଅଧିକାର ସ୍ୱତ୍ୱ ପ୍ରଦାନ କରିବାରେ ଦେଶରେ ଓଡ଼ିଶା ହେଉଛି ଏକ ନମ୍ବର ରାଜ୍ୟ। ଜଳବାୟୁ ପରିବର୍ତ୍ତନ କାର୍ଯ୍ୟାନ୍ୱୟନ ଯୋଜନା ପ୍ରସ୍ତୁତି ଏବଂ କାର୍ଯ୍ୟକାରୀ କରିବାରେ ଦେଶରେ ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ । ରାଜ୍ୟର ବିପର୍ଯ୍ୟୟ ପରିଚାଳନାର ମାନ ବିଶ୍ୱସ୍ତରୀୟ ହେବା ସହ ଏହା ଅନ୍ତର୍ଜାତୀୟ ସ୍ୱୀକୃତି ହାସଲ କରିପାରିଛି । ଗ୍ରାମ୍ୟ ଗୃହ ନିର୍ମାଣ କାର୍ଯ୍ୟକ୍ରମରେ ଓଡ଼ିଶା ସମଗ୍ର ଦେଶରେ ଅଗ୍ରଣୀ ହୋଇପାରିଛି । ଉଭୟ ସହରାଞ୍ଚଳ ଓ ଗ୍ରାମାଞ୍ଚଳରେ ଏକ ଲକ୍ଷ୍ୟ ଭିତ୍ତିକ ବ୍ୟବସ୍ଥା ଦେଇ ପାନୀୟ ଜଳ ସୁବିଧା ଯୋଗାଇଦେବା ନିମନ୍ତେ ରାଜ୍ୟରେ 'ବସୁଧା' ଯୋଜନା କାର୍ଯ୍ୟକାରୀ ହେଉଛି । ପୁରାତନ ଛାତ୍ର, ବ୍ୟକ୍ତିବିଶେଷ ଓ ସଂଗଠନମାନଙ୍କୁ ବିଦ୍ୟାଳୟରେ ଶୈକ୍ଷିକ ସହାୟତାର ଅବଦାନ ରଖିବାର ସୁଯୋଗ ଦେବାକୁ ଏକ ଅଭିନବ ନାଗରିକ ସଂଯୋଗ ଉପକ୍ରମ ସ୍ୱରୂପ 'ମୋ ବିଦ୍ୟାଳୟ' ଯୋଜନା ନିକଟରେ ଆରମ୍ଭ କରାଯାଇଛି ।

ପଞ୍ଚାୟତିରାଜ ଦିବସ ପାଳନ ଅବସରରେ କାର୍ଯ୍ୟକାରୀ ହୋଇଥିବା ଏକ ନୂତନ କାର୍ଯ୍ୟକ୍ରମ 'ଆମ ଗାଁ, ଆମ ବିକାଶ' ଦ୍ୱାରା ଗ୍ରାମାଞ୍ଚଳରେ ଭିତ୍ତିଭୂମି ବିକାଶ କ୍ଷେତ୍ରରେ ଥିବା ଗୁରୁତର ବ୍ୟବଧାନକୁ ଦୂର କରିବାର ଲକ୍ଷ୍ୟ ରଖାଯାଇଛି । ଏହି ଯୋଜନା ଗ୍ରାମାଞ୍ଚଳର ତୃଣମୂଳ ସ୍ତରରେ ଥିବା ଲୋକମାନଙ୍କ ସହ ସିଧାସଳଖ ଯୋଗାଯୋଗ ରକ୍ଷାକରିବ । ଜଗଦଲପୁର-ରାଉରକେଲାକୁ ସଂଯୋଗ କରୁଥିବା ୪ ଲେନ୍ ବିଶିଷ୍ଟ ସମୁଦାୟ ୬୫୦ କି.ମି. ଦୀର୍ଘ ବିଜୁ ଏକ୍ସପ୍ରେସ୍ ୱେ ମଧ୍ୟରୁ ୧୬୦ କି.ମି. ରାଉରକେଲା-ସମ୍ବଲପୁର ରାସ୍ତା ଓଡ଼ିଶାର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇଛି । ନିକଟରେ ବିଶ୍ୱର ଶ୍ରେଷ୍ଠ ସ୍ମାର୍ଟ ସିଟି ତାଲିକା ମଧ୍ୟରେ ଭାରତର ଏକ ମାତ୍ର ସିଟି ଭାବେ ଭୁବନେଶ୍ୱର ୨୦ତମ ସ୍ଥାନରେ ରହିପାରିଛି ।

ଏକ ପୁଞ୍ଜିଲଗାଣକାରୀ ତଥା ଉଦ୍ୟୋଗୀ ଅନୁକୂଳ ପୁଞ୍ଜିଲଗାଣ ବାତାବରଣ ସୃଷ୍ଟି ନିମନ୍ତେ ଶିଳ୍ପ ନୀତି, ୨୦୧୫, ଅଣୁ, କ୍ଷୁଦ୍ର, ମଧ୍ୟମ ଉଦ୍ୟୋଗ ନୀତି-୨୦୧୬, ଷ୍ଟାର୍ଟ ଅପ୍ ନୀତି-୨୦୧୬ ଏବଂ ଆହୁରି ଅନେକ ଶିଳ୍ପ କୈନ୍ଦ୍ରିକ ନୀତି ପରି ପ୍ରଗତିଶୀଳ ନୀତିଗୁଡ଼ିକ ରାଜ୍ୟ ପ୍ରଣୟନ କରିଛି ଏବଂ ୨.୫ ଲକ୍ଷ କୋଟିର ନୂତନ ପୁଞ୍ଜିଲଗାଣ ଲକ୍ଷ୍ୟ 'ଭିଜନ୍ ୨୦୨୫'କୁ ସାକାର କରିବା ଓ ୩୦ ଲକ୍ଷ ନୂତନ ନିଯୁକ୍ତି ସୁଯୋଗ ସୃଷ୍ଟି ନିମନ୍ତେ ଏହି ବର୍ଷ ନଭେମ୍ବର ମାସରେ 'ମେକ୍ ଇନ୍ ଓଡ଼ିଶା'ର ପରବର୍ତ୍ତୀ ପର୍ଯ୍ୟାୟ ଆରମ୍ଭ ହେବାକୁ ଯାଉଛି । ରାଜ୍ୟରେ କମ୍ପାନୀ ପ୍ରତିଷ୍ଠା ଓ ପରିଚାଳନାକୁ ସହଜ

କରିବା ଲକ୍ଷ୍ୟରେ ସୂଚନା ପ୍ରଯୁକ୍ତି ବିଦ୍ୟାର ବ୍ୟବହାର ଦୃଷ୍ଟିରୁ ଓଡିଶା ଏକ ଆଗୁଆ ରାଜ୍ୟ । ଦକ୍ଷତା ବୃଦ୍ଧି ପ୍ରଶିକ୍ଷଣ ଏବଂ ଫଳପ୍ରସୂ ନିଯୁକ୍ତି ସୁଯୋଗ ନିମନ୍ତେ ପ୍ରତି ଗ୍ରାମପଞ୍ଚାୟତରୁ ୧୫୦ ଜଣ ଯୁବକଯୁବତୀଙ୍କୁ ସାମିଲ କରିବା ଲକ୍ଷ୍ୟ ସହ କାର୍ଯ୍ୟକାରୀ ହୋଇଥିବା 'ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି କାର୍ଯ୍ୟକ୍ରମ' ଅଧୀନରେ ରାଜ୍ୟର ବିଭିନ୍ନ ବିଭାଗର ଦକ୍ଷତା ବୃଦ୍ଧି କାର୍ଯ୍ୟକ୍ରମରେ ସମନ୍ୱୟ ରକ୍ଷା କରିବା ପାଇଁ ରାଜ୍ୟ ସରକାର ଏକ ସାମଗ୍ରିକ ଦକ୍ଷତା ବିକାଶ ବ୍ୟବସ୍ଥା ଆରମ୍ଭ କରିଛନ୍ତି ।

ସରକାରଙ୍କର ବନ ସଂରକ୍ଷଣ ଓ ଚାରାରୋପଣ ପରି କାର୍ଯ୍ୟକ୍ରମ ଯୋଗୁଁ ଓଡିଶାରେ ଉଲ୍ଲେଖନୀୟ ଭାବେ ବନାଞ୍ଚଳ ବୃଦ୍ଧି ଘଟିଛି । ରାଜ୍ୟ ସରକାର ଅବକ୍ଷୟମୁଖୀ ଜଙ୍ଗଲର ପୁନରୁଦ୍ଧାର ଏବଂ ଜଙ୍ଗଲ ଉପରେ ନିର୍ଭରଶୀଳ ଗ୍ରାମବାସୀଙ୍କର ଜୀବିକା ନିର୍ବାହ କ୍ଷେତ୍ରରେ ଉନ୍ନତି ଆଣିବା ଲକ୍ଷ୍ୟରେ ରାଜ୍ୟର ୧୦ ଗୋଟି ଜିଲ୍ଲାରେ ଓଡିଶା ଜଙ୍ଗଲ କ୍ଷେତ୍ର ଉନ୍ନୟନ ପ୍ରକଳ୍ପ 'ବନାୟନ' କାର୍ଯ୍ୟକାରୀ କରୁଛନ୍ତି ।

ଆଜି ତ୍ୱରିତ୍ ସାମାଜିକ-ଅର୍ଥନୈତିକ ବିକାଶର ଅନ୍ୱେଷଣରେ ଓଡିଶା ସମାନୁପାତିକ ଏବଂ ସାମଗ୍ରିକ ଅଭିବୃଦ୍ଧି ପଥରେ ଅଗ୍ରସର ହେଉଛି । ଏହାର ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ, ସୁଶାସନ, ଦୁର୍ନୀତି ବିରୁଦ୍ଧରେ ଶୂନ ସହନଶୀଳତା ଏବଂ ଜନସଂଖ୍ୟାର ସମସ୍ତ ବର୍ଗଙ୍କୁ ସଶକ୍ତ କରିବା ଉଦ୍ୟମ, ଅନ୍ୟମାନଙ୍କ ଆଦର୍ଶ ହେଲା ପରି ଅଭିଳଷିତ ଜାତୀୟ ବେଞ୍ଚମାର୍କ ପ୍ରତିଷ୍ଠାରେ ସହାୟକ ହୋଇପାରିଛି ।

ଏହି ପବିତ୍ର ଦିବସ ଅବସରରେ ଆସନ୍ତୁ, ଏକ ସମୃଦ୍ଧ ଓ ସଶକ୍ତ ଓଡିଶା ଗଠନ ଦିଗରେ ସଂକଳ୍ପବଦ୍ଧ ହେବା ଏବଂ ଏହି ମାଟିର ବରପୁତ୍ରମାନଙ୍କର ସ୍ୱପ୍ନକୁ ସାର୍ଥକ କରିବା ।

**ବନ୍ଦେ ଉତ୍କଳ ଜନନୀ ।**

ଓଡ଼ିଶା ଦିବସ –୨୦୧୮ ପାଳନ ଅବସରରେ

# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ଆଜି ଓଡ଼ିଶା ଦିବସ । ଓଡ଼ିଆ ଜାତିର ସ୍ୱତନ୍ତ୍ର ପରିଚୟର ଦିବସ ଓ ସଂକଳ୍ପର ଦିବସ । ଏହି ପବିତ୍ର ଦିବସ ଅବସରରେ ଦେଶ ବିଦେଶରେ ରହୁଥିବା ସବୁ ଓଡ଼ିଆ ଭାଇଭଉଣୀ ଏବଂ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଅଭିନନ୍ଦନ ଜଣାଉଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଥିଲା ଆମର ବହୁ ଦିନର ସଂଗ୍ରାମର ଏକ ସିଦ୍ଧି । ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଖଲିକୋଟ ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ, ପଣ୍ଡିତ ଗୋଦାବରୀଶ ମିଶ୍ର, ଫକୀର ମୋହନ ସେନାପତି, ଗଙ୍ଗାଧର ମେହେରଙ୍କ ପରି ବରପୁତ୍ରମାନଙ୍କ ତ୍ୟାଗ ଓ ସଂଗ୍ରାମ ଯୋଗୁଁ ସ୍ୱତନ୍ତ୍ର ଓଡ଼ିଶାର ସ୍ୱପ୍ନ ସଫଳ ହୋଇପାରିଥିଲା । ଏହି ଅବସରରେ ମୁଁ ସେମାନଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଓଡ଼ିଆ ଭାଷା, ସାହିତ୍ୟ, ନୃତ୍ୟ, ସଂଗୀତ ଓ କଳାକୁ ଯେଉଁମାନେ ସମୃଦ୍ଧ କରିଯାଇଛନ୍ତି, ସେମାନଙ୍କ ପ୍ରତି ମୋର ସମ୍ମାନ ଜଣାଉଛି ।

୧୯୩୬ରୁ ୨୦୧୮, ଏହା ମଧ୍ୟରେ ଅଶୀ ବର୍ଷରୁ ଅଧିକ ସମୟ ବିତିଯାଇଛି । ଏହି ସମୟ ମଧ୍ୟରେ ଆମେ ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରିବା ସହିତ ଅନେକ ସାମର୍ଥ୍ୟ ମଧ୍ୟ ସୃଷ୍ଟି କରିପାରିଛୁ । ଓଡ଼ିଶାର ଯୁବକଯୁବତୀମାନଙ୍କର ଦକ୍ଷତା ଓ ଆତ୍ମବିଶ୍ୱାସ ବଢ଼ିଛି । ସେମାନେ ବିଭିନ୍ନ କ୍ଷେତ୍ରରେ ଦେଶବିଦେଶରେ ସୁନାମ କରି ରାଜ୍ୟ ପାଇଁ ଗୌରବ ଆଣୁଛନ୍ତି ।

ଆଜି ବିକାଶର ଜୟଯାତ୍ରାରେ ସବୁ ଓଡ଼ିଆ ସାମିଲ ହୋଇପାରିଛନ୍ତି । ଆମର ଅଭିବୃଦ୍ଧି ହାର ଜାତୀୟ ହାରଠାରୁ ଅଧିକ ରହିଛି । ଲୋକଙ୍କ ରୋଜଗାର ବଢ଼ିଛି, ଗରିବୀ କମିଛି । ମୁଣ୍ଡପିଛା ଆୟ ବଢ଼ିଛି । ଭିତ୍ତିଭୂମି, ଶିଳ୍ପ, ଶିକ୍ଷା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ଆମେ ଆଖିଦୃଶିଆ ବିକାଶ ହାସଲ କରିଛୁ । କୃଷି ଏବଂ ଆନୁଷଙ୍ଗିକ କ୍ଷେତ୍ରରେ ଆମର ସ୍ୱତନ୍ତ୍ର ଦୃଷ୍ଟି ଯୋଗୁଁ

ଆମର ଚାଷୀଭାଇମାନଙ୍କ ରୋଜଗାର ବଢ଼ିଛି । ଚାଷୀ ଭାଇଙ୍କ ରୋଜଗାର ଆହୁରି ବଢ଼ାଇବା ପାଇଁ କାର୍ଯ୍ୟକ୍ରମ ଜାରି ରହିଛି । ସବୁଠାରୁ ବଡ କଥା ହେଉଛି, ବିକାଶର ସୁଫଳ ରାଜ୍ୟର ସବୁବର୍ଗର ଲୋକଙ୍କ ପାଖରେ ପହଞ୍ଚିପାରିଛି । ମହିଳା, କୃଷକ, ଶ୍ରମିକ, ଦଳିତ, ଜନଜାତି ଓ ଯୁବସମାଜ ଆଦି ବିଭିନ୍ନ ବର୍ଗଙ୍କ ପାଇଁ ସ୍ୱତନ୍ତ୍ର ବିକାଶ ଓ କଲ୍ୟାଣ କାର୍ଯ୍ୟକ୍ରମ ଚାଲୁ ରହିଛି । ଗରିବ ଲୋକଙ୍କ କଲ୍ୟାଣ କ୍ଷେତ୍ରରେ ଓଡ଼ିଶା ସାରା ଦେଶରେ ଆଜି ଏକ ଆଦର୍ଶ ରାଜ୍ୟ ହୋଇପାରିଛି । କ୍ରୀଡା ଭିତ୍ତିଭୂମି କ୍ଷେତ୍ରରେ ଓଡ଼ିଶା ଆଜି ଅନ୍ତର୍ଜାତୀୟ ସ୍ତରରେ ନିଜର ଏକ ପରିଚୟ ସୃଷ୍ଟି କରିପାରିଛି ।

ଆମ ଭାଷା, ଆମ ସାହିତ୍ୟ ପାଇଁ ଆମେ ଗର୍ବ କରୁ । ଓଡ଼ିଆ ଭାଷା ଆଜି ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇଛି । ଓଡ଼ିଆ ଭାଷାର ସୁରକ୍ଷା ଓ ପ୍ରସାର ପାଇଁ ରାଜ୍ୟ ସରକାର ଅନେକ ପଦକ୍ଷେପ ନେଇଛନ୍ତି । ଏହାକୁ ସଫଳ ଭାବରେ କାର୍ଯ୍ୟକାରୀ କରିବାରେ ଆପଣମାନଙ୍କ ସମସ୍ତଙ୍କ ସହଯୋଗ ମୁଁ କାମନା କରୁଛି ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ ଏ ଜାତିକୁ ସବୁବେଳେ ମାର୍ଗ ଦେଖାଇ ଆସିଛି । ସମ୍ରାଟ ଖାରବେଳ ଓ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ଜୟଯାତ୍ରା ଓଡ଼ିଆ ଜାତିକୁ ପ୍ରେରଣା ଦେଇଆସିଛି । ଦୃଢ଼ ଇଚ୍ଛା ଶକ୍ତି ଓ କଠିନ ପରିଶ୍ରମ ଦ୍ୱାରା ହିଁ ଆମେ ଆମର ଲକ୍ଷ୍ୟ ହାସଲ କରିପାରିବା ।

ଆସନ୍ତୁ, ଓଡ଼ିଆ ଜାତିର ସ୍ୱାଭିମାନ ଓ ଓଡ଼ିଶା ଜନନୀର ସମୃଦ୍ଧି ପାଇଁ ଆମର ମିଳିତ ଉଦ୍ୟମକୁ ଆହୁରି ଶକ୍ତିଶାଳୀ କରିବା ।

**ବନ୍ଦେ ଉତ୍କଳ ଜନନୀ ।**

ଓଡ଼ିଶା ଦିବସ -୨୦୧୮ ପାଳନ ଅବସରରେ

# ମାନ୍ୟବର ସୂଚନା ଓ ଲୋକସଂପର୍କ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଏବଂ ଆଇନ ମନ୍ତ୍ରୀ ଶ୍ରୀଯୁକ୍ତ ପ୍ରତାପ ଜେନାଙ୍କ ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

'ଓଡ଼ିଶା ଦିବସ' ପାଳନର ଏହି ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭକାମନା ଜ୍ଞାପନ କରୁଛି ।

ଆଜିର ଦିନଟି ଓଡ଼ିଶା ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟକୁ ଚିହ୍ନିତ କରେ । ଭାଷାଭିତ୍ତିରେ ଓ ସ୍ୱତନ୍ତ୍ର ଭାବରେ ଓଡ଼ିଶାର ପରିଚିତିକୁ ସୁଦୃଢ଼ କରିବା ପାଇଁ ଆମର ପୂର୍ବଜମାନେ ଯେଉଁ ଆନ୍ଦୋଳନରେ ଝାସ ଦେଇଥିଲେ, ସେହି ବନ୍ଦନୀୟ ମହାପୁରୁଷମାନଙ୍କ ମଧ୍ୟରେ ଥିଲେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ରାଜା ହରିହର ମର୍ଦ୍ଦରାଜ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ଆଚାର୍ଯ୍ୟ ହରିହରଙ୍କ ପରି ଅନେକ ବ୍ୟକ୍ତିତ୍ୱ । ସେମାନଙ୍କର ତ୍ୟାଗ, ଅଧ୍ୟବସାୟ ଓ ନିଷ୍ଠାର ଫଳସ୍ୱରୂପ ଆମେ ଆଜି ଏକ ସମୃଦ୍ଧ ଓଡ଼ିଶାର ଅଧିବାସୀ ଭାବରେ ଗର୍ବ କରୁଛେ । ମୁଁ ସେହି ପୁଣ୍ୟାତ୍ମାମାନଙ୍କ ଉଦ୍ଦେଶ୍ୟରେ ମୋର ଶ୍ରଦ୍ଧା ଅର୍ଘ୍ୟ ନିବେଦନ କରୁଛି ।

ଓଡ଼ିଶାର ଇତିହାସ ଗୌରବମଣ୍ଡିତ ଏବଂ ଓଡ଼ିଆମାନେ ପରିଶ୍ରମୀ ଓ ସଂସ୍କୃତିସଂପନ୍ନ । ଓଡ଼ିଶାର କଳା ସ୍ଥାପତ୍ୟ, ହସ୍ତତନ୍ତ, ତାରକସି କାମ, ଶିଳ୍ପ ଓ ବାଣିଜ୍ୟ, ଭାଷା-ସାହିତ୍ୟ, ସାଂସ୍କୃତିକ ବିଭବ, ପର୍ଯ୍ୟଟନ ସମ୍ବଳ, ଖଣିଜ ସଂପଦ

ଏହାର ସମୃଦ୍ଧି ଯାତ୍ରାକୁ ସାହାଯ୍ୟ କରିଆସିଛି । ସେହିପରି ଆମର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀଜଗନ୍ନାଥ ଆମର ଅସ୍ମିତା ଓ ସ୍ୱାଭିମାନକୁ ପରିପୁଷ୍ଟ କରିଛନ୍ତି । ଦେଶର ସାମାଜିକ-ସାଂସ୍କୃତିକ-ଅର୍ଥନୈତିକ ବିକାଶରେ ଓଡ଼ିଶାର ଯୋଗଦାନ ସ୍ୱୀକୃତ ।

ବିକାଶ ଦିଗରେ ଆମର ଯାତ୍ରା ଅବ୍ୟାହତ ରହିଛି । ଦାରିଦ୍ର୍ୟ ହ୍ରାସ ପାଇଁ ସରକାର ବିଭିନ୍ନ ଲୋକାଭିମୁଖୀ ଜନମଙ୍ଗଳ ପଦକ୍ଷେପ ଗ୍ରହଣ କରିଛନ୍ତି । ଜାତୀୟ ହାର ତୁଳନାରେ ରାଜ୍ୟର ଅଭିବୃଦ୍ଧି ହାର ବୃଦ୍ଧି ପାଇଛି । ରାଜ୍ୟରେ କୃଷି, ଜଳସେଚନ, ଶିଳ୍ପ, ଶିକ୍ଷା, ସୂଚନା ଓ ପ୍ରଯୁକ୍ତି ବିଦ୍ୟା, ସ୍ୱାସ୍ଥ୍ୟସେବା, ଅନୁସୂଚିତ ଜନଜାତି-ଅନୁସୂଚିତ ଜାତି-ପଛୁଆବର୍ଗଙ୍କ କଲ୍ୟାଣ, ମହିଳା ସଶକ୍ତିକରଣ, ଶିଶୁବିକାଶ, ଜଙ୍ଗଲ ଓ ପରିବେଶ, ସଂଯୋଗୀକରଣ, ବାଣିଜ୍ୟ ଓ ପରିବହନ, ଶକ୍ତି, ନିଯୋଜନ, ଭାଷା-ସାହିତ୍ୟ-ସଂସ୍କୃତି, ପର୍ଯ୍ୟଟନ, ମାନବସମ୍ବଳ ବିକାଶ ଇତ୍ୟାଦି କ୍ଷେତ୍ରରେ ନିରନ୍ତର ଉନ୍ନତିର ଧାରା ପ୍ରବାହିତ ହେଉଛି । ପ୍ରଶାସନିକ ସ୍ୱଚ୍ଛତା ଉପରେ ଗୁରୁତ୍ୱ ଦିଆଯାଇଛି । ସମାଜର ସବୁବର୍ଗର ଲୋକମାନଙ୍କ ପାଖରେ ପ୍ରଶାସନର ସୁଫଳ ପହଞ୍ଚି ପାରିଛି । ବିକାଶର ନୂଆ ଦିଶା ଆଡ଼କୁ ଅଗ୍ରସର ହେଉଛି ଓଡ଼ିଶା ।

'ଓଡ଼ିଶା ଦିବସ' ଅବସରରେ ଓଡ଼ିଶା ପାଇଁ ଏକ ସମୃଦ୍ଧ ଭବିଷ୍ୟତ ନିର୍ମାଣ ନିମନ୍ତେ ପ୍ରତିବଦ୍ଧ ହେବାକୁ ମୁଁ ଆପଣମାନଙ୍କୁ ନିବେଦନ କରୁଛି ।

**ବନ୍ଦେ ଉତ୍କଳ ଜନନୀ ।**

# ସମ୍ପାଦକୀୟ



ଓଡ଼ିଶାର ସାଂସ୍କୃତିକ ଐତିହ୍ୟ ଏହାର ବହୁବିଧ କଳା ମାଧ୍ୟମରେ ପ୍ରସ୍ଫୁଟିତ ହୋଇଛି । କଳାତ୍ମକ ପ୍ରତିବେଦନ କ୍ଷେତ୍ରରେ ସମଗ୍ର ଭାରତବର୍ଷରେ ଓଡିଶାର ସ୍ଥାନ ସ୍ୱତନ୍ତ୍ର ଓ ଅନନ୍ୟ । ସମୃଦ୍ଧ ଜାତି ଓ ସମୃଦ୍ଧ ଭାଷା ପରସ୍ପର ପରିପୂରକ । ଓଡ଼ିଆ ଭାଷା ହେଉଛି ଏକ ପ୍ରାଚୀନତମ ଭାଷା, ଯାହା ନିକଟରେ ଭାରତର ଶାସ୍ତ୍ରୀୟ ଭାଷାରୂପେ ମାନ୍ୟତା ହାସଲ କରିଛି । ଉଲ୍ଲେଖଯୋଗ୍ୟ ଯେ, ଭାଷାଭିତ୍ତିରେ ପ୍ରଥମ ପ୍ରଦେଶ ଭାବରେ ଓଡିଶା ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଲାଭ କରିଥିଲା । ଅପ୍ରେଲ୍ ୧ ତାରିଖ ପବିତ୍ର ଉତ୍କଳ ଦିବସ ଓଡିଆ ଜାତିର ଆତ୍ମପରିଚିତି ଓ ସ୍ୱାଭିମାନର ଦିବସ । ଆମ ସମସ୍ତଙ୍କ ପାଇଁ ଏହା ଏକ ମହତ୍ତ୍ୱପୂର୍ଣ୍ଣ ଦିବସ । ସ୍ମୃତି, ସଂକଳ୍ପ ଓ ଆତ୍ମସମୀକ୍ଷାର ଦିବସ । ଏହିଦିନ ଭାଷାଭିତ୍ତିକ ସ୍ୱତନ୍ତ୍ର ରାଜ୍ୟ ଗଠନର ମହାନ ସ୍ୱପ୍ନ ସାକାର ହୋଇଥିଲା । ଓଡିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ଗଢି ତୋଳିବାକୁ ଯେଉଁମାନେ ଆପ୍ରାଣ ଉଦ୍ୟମ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ପଣ୍ଡିତ ଗୋଦାବରୀଶ ମିଶ୍ର, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, ଆଚାର୍ଯ୍ୟ ହରିହର, ମହାନ୍ ଜନନେତା ବିଜୁ ପଟ୍ଟନାୟକଙ୍କ ସମେତ ଆହୁରି ଅନେକ ନେତୃବୃନ୍ଦ ଅନ୍ୟତମ । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଯେଉଁମାନଙ୍କ ସଂଗ୍ରାମ, ସାଧନା ଓ ସିଦ୍ଧିର ଫଳଶ୍ରୁତି, ସେହି ବନ୍ଦନୀୟ ବରପୁତ୍ରଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସମୃଦ୍ଧ ଭାଷା ଓ ସଂସ୍କୃତି ହେଉଛି ଗୋଟିଏ ଜାତିର ବଳିଷ୍ଠ ପରିଚିତି । ଓଡ଼ିଆ ହେଉଛି ଏକ ପ୍ରାଚୀନ ଭାଷା । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନିରବଚ୍ଛିନ୍ନ ଉଦ୍ୟମକ୍ରମେ ଆଜି ଆମ ଓଡ଼ିଆ ଭାଷା ଶାସ୍ତ୍ରୀୟ ଭାଷାର ମାନ୍ୟତା ଲାଭ କରିପାରିଛି । ଓଡ଼ିଆ ଭାଷାର ସମୃଦ୍ଧି ଦିଗରେ ନାନାବିଧ ପଦକ୍ଷେପ ଗ୍ରହଣ ସହ ଏଥିନିମନ୍ତେ ଓଡ଼ିଆ ଭାଷା ପ୍ରତିଷ୍ଠାନ ଗଠନ ହୋଇଛି । ଓଡ଼ିଶା ବାହାରେ ଓଡ଼ିଆ ଭାଷାର ପ୍ରଚାର ପ୍ରସାର ନିମନ୍ତେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟଗୁଡିକରେ ଓଡ଼ିଆ ଚେୟାର୍ ପ୍ରତିଷ୍ଠା ଏହାର ଅନନ୍ୟ ଉଦାହରଣ ।

ସାଢେ ୪କୋଟି ଓଡ଼ିଶାବାସୀଙ୍କ ପ୍ରିୟ ଭାଷା ଓଡ଼ିଆକୁ ଅଧିକ ସମୃଦ୍ଧ କରିବା ଲକ୍ଷ୍ୟରେ ରାଜ୍ୟ ସରକାର ସତତ ଉଦ୍ୟମରତ ଅଛନ୍ତି । ପୁରୀଠାରେ ଆୟୋଜିତ ସ୍ୱତନ୍ତ୍ର କ୍ୟାବିନେଟ୍ ବୈଠକରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓଡ଼ିଆ ଭାଷାର ସମୃଦ୍ଧି ଦିଗରେ ଅନେକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରିଛନ୍ତି, ଯାହା ଅତୀବ ସ୍ୱାଗତଯୋଗ୍ୟ ।

ଓଡ଼ିଆ ଭାଷା ଓ ସଂସ୍କୃତିର ବିକାଶ ତଥା ପ୍ରଚାର ପ୍ରସାର ନିମନ୍ତେ ରାଜ୍ୟ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗକୁ ଅଲଗା କରାଯାଇ ସ୍ୱତନ୍ତ୍ରଭାବେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ ସୃଷ୍ଟି କରାଯାଇଛି । ଓଡ଼ିଆ ଭାଷାର ପ୍ରସାର ଓ ସଂରକ୍ଷଣ ନିମନ୍ତେ ଓଡ଼ିଆ ଭାଷା କମିଶନ ଗଠନ, କଲେଜ ଓ ୟୁନିଭର୍‌ସିଟିଗୁଡିକରେ ନିଃଶୁଳ୍କ ସ୍ନାତକ ଓ ସ୍ନାତକୋତ୍ତର ଓଡ଼ିଆ ଶିକ୍ଷା ପ୍ରଦାନ, ବ୍ୟବସାୟ ପ୍ରତିଷ୍ଠାନଗୁଡିକରେ ଓଡ଼ିଆ ଭାଷାରେ ଫଳକ ବାଧ୍ୟତାମୂଳକ କରିବା, ପ୍ରତି ୫ବର୍ଷରେ ଥରେ ବିଶ୍ୱ ଓଡ଼ିଆ ଭାଷା ସମ୍ମିଳନୀ ଆୟୋଜନ, ଓଡ଼ିଆ ଭାଷା ଓ ସାହିତ୍ୟରେ ଉଚ୍ଚତର ଗବେଷଣା ପାଇଁ ପ୍ରୋତ୍ସାହନ ବ୍ୟବସ୍ଥା, ରାଜ୍ୟ ଭିତରେ ସରକାରୀ ଉତ୍ସବ ଓଡ଼ିଆ ଭାଷାରେ ପରିଚାଳନା, ପ୍ରତିବର୍ଷ ଜିଲ୍ଲା ଓ ରାଜ୍ୟ ସ୍ତରରେ ପୁସ୍ତକମେଳାର ଆୟୋଜନ,  ସମସ୍ତ ସରକାରୀ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ପର୍କିତ କର୍ମଶାଳା ଆୟୋଜନ, କଲେଜ ଓ ୟୁନିଭର୍‌ସିଟିରେ ଓଡ଼ିଆ ଭାଷାରେ ଭଲ ନମ୍ବର ରଖିଲେ ବୃତ୍ତି ପ୍ରଦାନ ବ୍ୟବସ୍ଥା, ସରକାରୀ ଭାଷା ଆଇନ୍-୧୯୫୪ରେ ସଂଶୋଧନ ଅଣାଯାଇ ବିହିତ ଦଣ୍ଡବିଧାନ ବ୍ୟବସ୍ଥା ସହିତ ଓଡ଼ିଆ ଭାଷାର ବହୁଳ ବ୍ୟବହାର କରୁଥିବା ବିଭାଗ ତଥା କର୍ମଚାରୀଙ୍କୁ ପ୍ରୋତ୍ସାହନ ବ୍ୟବସ୍ଥା, ପ୍ରତ୍ୟେକ ହାଇସ୍କୁଲରେ ପାଠାଗାର ପ୍ରତିଷ୍ଠା ସହ ପର୍ଯ୍ୟାପ୍ତ ପରିମାଣର ଓଡ଼ିଆ ପୁସ୍ତକ ଗଚ୍ଛିତ କରିବା, ଓଡ଼ିଆ ଭାଷା ସାହିତ୍ୟରେ ପିଏଚ୍.ଡି ସ୍ଥାନ ସଂଖ୍ୟା ବୃଦ୍ଧି ଏବଂ ଆବଶ୍ୟକ ଅନୁଯାୟୀ ଓଡ଼ିଆ ଭାଷାର ପ୍ରାଧ୍ୟାପକ ପଦବୀ ସଂଖ୍ୟା ବୃଦ୍ଧି ଇତ୍ୟାଦି ନିମନ୍ତେ ଉକ୍ତ କ୍ୟାବିନେଟ୍‌ରେ ଅନେକ ଯୁଗାନ୍ତକାରୀ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ଭାଷା ହେଉଛି ଗୋଟିଏ ଜାତିର ଗର୍ବ ଓ ଗୌରବ । ଓଡ଼ିଆ ଭାଷାର ବିକାଶ ନିମନ୍ତେ ଫଳପ୍ରସୂ ଉଦ୍ୟମ କରୁଥିବା ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଏହି ସାଧୁ ଉଦ୍ୟମ ପ୍ରତି ସାଢେ ୪କୋଟି ଓଡ଼ିଆଙ୍କ ପୂର୍ଣ୍ଣ ସମର୍ଥନ ରହିଛି । ରାଜ୍ୟ ସରକାରଙ୍କ ଏକମାତ୍ର ଓଡ଼ିଆ ମୁଖପତ୍ର 'ଉତ୍କଳ ପ୍ରସଙ୍ଗ' ଏଥିନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ଅଜସ୍ର ଧନ୍ୟବାଦ ଅର୍ପଣ କରୁଛି ।

ସ୍ୱତନ୍ତ୍ର ଓଡିଶା ଗଠନ ପରେ ରାଜ୍ୟ ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ପ୍ରଗତି ହାସଲ କରିଛି । ବିକାଶର ମାନଚିତ୍ରରେ ଆହୁରି ଅନେକ ପଥ  ଅତିକ୍ରମ କରିବାକୁ ଅଛି । ଓଡିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ଓଡିଶାର ସମ୍ବଳ, ସାମର୍ଥ୍ୟ ଓ ସମ୍ଭାବନାର ସଫଳ ଉପଯୋଗ କରି ଓଡିଶାକୁ ଭାରତର ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାକୁ ଉଦ୍ୟମ ଜାରି ରହିଛି ।

ଇତିମଧ୍ୟରେ ଓଡ଼ିଶା ରାଜ୍ୟ ସରକାର ୨୦୧୮-୧୯ ଆର୍ଥିକ ବର୍ଷ ଲାଗି ପୂର୍ଣ୍ଣାଙ୍ଗ ବଜେଟ୍ ପ୍ରସ୍ତାବ ବିଧାନସଭାରେ ଆଗତ କରିଛନ୍ତି । ବଜେଟ ଅଟକଳ ୧ଲକ୍ଷ ୨୦ ହଜାର ୨୮ କୋଟି ଟଙ୍କା ରଖାଯାଇଛି । ଅନେକ ନୂଆ ଯୋଜନା ଲାଗି ବ୍ୟୟବରାଦ କରାଯାଇଥିବା ବେଳେ ସରକାର ଲୋକଙ୍କ ଉପରେ କୌଣସି ଟିକସ ବସାଇନାହାନ୍ତି । କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ଲାଗି ୧୬୭୬୫ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

ଗ୍ରାମାଞ୍ଚଳ ଭିତ୍ତିଭୂମି ଓ ଜନକଲ୍ୟାଣ କାର୍ଯ୍ୟକ୍ରମକୁ ସରକାର ଏଥିରେ ଧ୍ୟାନ ଦେଇଛନ୍ତି । ଗାଁ ଓ ସହରରେ ଲୋକଙ୍କୁ ପକ୍କାଘର ଯୋଗାଇ ଦେବାକୁ ବଜେଟରେ ୩ ହଜାର ୯୯୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ସ୍ୱାସ୍ଥ୍ୟସେବା ଲାଗି ବିଭାଗର ବଜେଟ ପରିମାଣ ୬ ହଜାର ୧୬୦ କୋଟି ଟଙ୍କାକୁ ବଢାଯାଇଛି । ଶିକ୍ଷା କ୍ଷେତ୍ରରେ ମଧ୍ୟ ବଜେଟ ବଢିଛି । ଶିକ୍ଷା ଓ ଦକ୍ଷତା ବୃଦ୍ଧି ଲାଗି ୧୯୬୭୮ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

'ନିରାମୟ' ଯୋଜନାରେ ବ୍ୟୟବରାଦ ୩୦୪ କୋଟି ଟଙ୍କାକୁ ବଢ଼ାଯାଇଛି । 'ଖୁସି' ଯୋଜନାରେ ସାନିଟାରି ନାପ୍‌କିନ୍ ଯୋଗାଇବା ପାଇଁ ୫୦ କୋଟି ଟଙ୍କା ଦିଆଯାଇଥିବାବେଳେ ସାର୍ବଜନୀନ ଚକ୍ଷୁ ଯତ୍ନ କାର୍ଯ୍ୟକ୍ରମ 'ସୁନେତ୍ର' ପାଇଁ ୬୮୨ କୋଟି ଟଙ୍କାର ୫ ବର୍ଷିଆ ଅଟକଳ ଘୋଷଣା ହୋଇଛି । ତେବେ ଏହି ବଜେଟରେ ୮୭ କୋଟି ଟଙ୍କା ଦିଆଯାଇଛି । ପରିମଳ, ସ୍ୱାସ୍ଥ୍ୟରକ୍ଷା ଓ ନିରାପତ୍ତାର ମାନ ବୃଦ୍ଧି ଲାଗି 'ନିର୍ମଳ' ଯୋଜନାରେ ୭୦ କୋଟି ଟଙ୍କା ଦିଆଯାଇଛି । ସଡ଼କ ଦୁର୍ଘଟଣାଜନିତ ମୃତ୍ୟୁହାର ହ୍ରାସ କରିବାକୁ ୯ଟି ଟ୍ରମାକେୟାର ସେଣ୍ଟର ପ୍ରତିଷ୍ଠା କରାଯାଉଥିବାବେଳେ ସରକାର ଏଥର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ବ୍ୟୟ ଅଟକଳ ୬୧୬୦ କୋଟି ଟଙ୍କାକୁ ବଢ଼ାଇଛନ୍ତି । ସର୍ବୋପରି ୨୦୧୮-୧୯ର ବଜେଟ୍ ଏକ ଲୋକାଭିମୁଖୀ ଓ ବିକାଶର ବଜେଟ୍ ବୋଲି ସାଧାରଣରେ ଚର୍ଚ୍ଚା ହେଉଛି ।

ଉଭୟ ଦକ୍ଷ ମାନବ ସମ୍ବଳ ଏବଂ ପ୍ରାକୃତିକ ସମ୍ବଳରେ ଭରା ଆମର ଏ ରାଜ୍ୟ ଓଡ଼ିଶା । ଓଡ଼ିଶାର ସମୃଦ୍ଧ ଐତିହାସିକ ଓ ସାଂସ୍କୃତିକ ପରମ୍ପରା ଏହାର ସର୍ବାଙ୍ଗୀନ ବିକାଶ ନିମନ୍ତେ ଉପଯୁକ୍ତ ଭିତ୍ତିଭୂମି ଯୋଗାଇ ଦେଇଥାଏ । ଏହାର ଅନୁକୂଳତମ ଜଳବାୟୁ, ଉର୍ବର ମୃତ୍ତିକା, ଖଣିଜ ସମ୍ପଦ, ସାମୁଦ୍ରିକ ବେଳାଭୂମି ଏବଂ ପରିଶ୍ରମୀ ଜନଗଣ ଏହି ପ୍ରଦେଶର ବିକାଶ ନିମନ୍ତେ ଯଥେଷ୍ଟ ଅବଦାନ ରଖିଥାନ୍ତି । ବିଗତ ଦୁଇ ଦଶନ୍ଧି ମଧ୍ୟରେ ଜାତୀୟ ସ୍ତରରେ ଓଡ଼ିଶା ଏହାର ଗୌରବ ବଜାୟ ରଖିବା ସହ ବିଭିନ୍ନ କ୍ଷେତ୍ରରେ ଅନ୍ୟ ପ୍ରଦେଶଠାରୁ ଆଗରେ ରହିଛି ।

ଓଡ଼ିଶା ଦିବସ ପାଳନର ଏହି ପବିତ୍ର ଅବସରରେ ଆମେ ଉତ୍କଳମାତାର ସେବାରେ ନିଜକୁ ନିୟୋଜିତ କରିପାରିଲେ ଏହା ହିଁ ହେବ ଆମ ପୂର୍ବସୂରୀମାନଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ଓ ଉକ୍ତ ଦିବସ ପାଳନର ଯଥାର୍ଥତା । ଗର୍ବିତ ଓଡ଼ିଆଭାବେ ଆମେ ଓଡ଼ିଶା ମାଟିର ସେବାରେ ନିୟୋଜିତ ହୋଇ ଏହାକୁ ଏକ ଶ୍ରେଷ୍ଠ, ସମୃଦ୍ଧ ଓ ଶାନ୍ତିପ୍ରିୟ ରାଜ୍ୟ ରୂପେ ଗଢି ତୋଳିବା ନିମନ୍ତେ ଆମର ପ୍ରୟାସ ଜାରି ରଖିବା ।

**ବନ୍ଦେ ଉତ୍କଳ ଜନନୀ ।**



**ସମ୍ପାଦକ**

# ଓଡ଼ିଶା ବିଧାନସଭାରେ ମାନ୍ୟବର ରାଜ୍ୟପାଳ ଡକ୍ଟର ଏସ୍.ସି. ଜମିରଙ୍କ ଅଭିଭାଷଣ

ମାନ୍ୟବର ବାଚସ୍ପତି ମହୋଦୟ ଏବଂ ମାନ୍ୟବର ସଭ୍ୟବୃନ୍ଦ,

ମୁଁ ଆପଣମାନଙ୍କୁ ପଞ୍ଚଦଶ ଓଡ଼ିଶା ବିଧାନସଭାର ଦ୍ୱାଦଶ ଅଧିବେଶନକୁ ସ୍ୱାଗତ ଜଣାଇ ଅତ୍ୟନ୍ତ ଆନନ୍ଦିତ । ଏହି ଅବସରରେ ପବିତ୍ର ଗୃହର ସମସ୍ତ ମାନ୍ୟବର ସଦସ୍ୟବୃନ୍ଦ ତଥା ଓଡ଼ିଶାର ଜନସାଧାରଣଙ୍କୁ ମୁଁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛି ।

ଏହି ପବିତ୍ର ଗୃହର ଆସୀନ ସଦସ୍ୟ ସ୍ୱର୍ଗତ ସୁବଳ ସାହୁ, ଲୋକସଭାର ପୂର୍ବତନ ବାଚସ୍ପତି ସ୍ୱର୍ଗତ ରବି ରାୟ, ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ଦୁର୍ଗାଶଙ୍କର ପଟ୍ଟନାୟକ, ସୟଦ୍ ମୁସ୍ତାଫିଜ୍ ଅହମ୍ମଦ୍, ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ସ୍ୱର୍ଗତ ମୂରଲିଧର ଗୁରୁ, ପୂର୍ବତନ ସଦସ୍ୟଗଣ ସ୍ୱର୍ଗତ ଅର୍ଜୁନ ନାଏକ, ସତ୍ୟଭାମା ଜେନା, ସୁର ସେଠୀ, ସମାୟ କିସ୍କୁ, ପୂର୍ବତନ ଗ୍ରାମରକ୍ଷୀ ସ୍ୱର୍ଗତ ଜଗାରାଓ ଗୋମ୍ପାରାୟ, ଓଡ଼ିଶା ପୋଲିସର ପୂର୍ବତନ କନେଷ୍ଟବଳ ସ୍ୱର୍ଗତ ଲକ୍ଷ୍ମୀକାନ୍ତ ଜାନୀଙ୍କ ଦୁଃଖଦ ବିୟୋଗରେ ଏହି ପବିତ୍ର ଗୃହ ଗଭୀର ଶୋକ ପ୍ରକାଶ କରିଛି । ଏହି ପବିତ୍ର ଗୃହର ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ବେଣୁଧର ବଳିଆରସିଂହ ଓ ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ଫ୍ରୀଡ଼ା ଟପ୍ନୋ, ପୂର୍ବତନ ସଦସ୍ୟ ସ୍ୱର୍ଗତ ନିତ୍ୟାନନ୍ଦ ସାମନ୍ତରାୟ, ଅଖିଳ ସାଉଁଟା, କୃଷ୍ଣଚନ୍ଦ୍ର ସ୍ୱାଇଁ ଏବଂ ସି.ଆର୍.ପି.ଏଫ୍. ପ୍ରତିରକ୍ଷା ବାହିନୀର ସ୍ୱର୍ଗତ ପ୍ରଦୀପ କୁମାର ପଣ୍ଡା ଓ ମନୋରଞ୍ଜନ ଲେଙ୍କାଙ୍କ ଅମର ଆତ୍ମା ପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ମାନ୍ୟବର ସଦସ୍ୟ/ସଦସ୍ୟାମାନଙ୍କୁ ନିବେଦନ କରୁଛି ।

୨. ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପରିଚାଳିତ ଖୋର୍ଦ୍ଧା ପାଇକ ବିଦ୍ରୋହର ୨୦୦ ବର୍ଷ ପୂର୍ତ୍ତି ଅବସରରେ ଆଜି ଆମେ ଏହାର ସ୍ମୃତିଚାରଣ କରୁଛୁ । ଏହା ସ୍ୱାଧୀନତା ପୂର୍ବରୁ ୧୮୧୭ ମସିହାରେ ସଂଗଠିତ ପାଇକମାନଙ୍କ ଏକ ବୀରତ୍ୱପୂର୍ଣ୍ଣ ବିଦ୍ରୋହ ଥିଲା । ଐତିହାସିକ ପ୍ରାମାଣିକ ତଥ୍ୟ ସୂଚିତ କରେ କି, ଏହା ଭାରତୀୟ ସ୍ୱାଧୀନତା ଦିଗରେ ପ୍ରଥମ ସଂଗ୍ରାମ ଥିଲା । ପାଇକ ବିଦ୍ରୋହକୁ ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଭାବେ ଘୋଷଣା କରିବାକୁ ମୋ ସରକାର ପର୍ଯ୍ୟାପ୍ତ ଐତିହାସିକ ପ୍ରମାଣ ସହ ଭାରତ ସରକାରଙ୍କ ନିକଟରେ ଆବେଦନ କରିଛନ୍ତି । ଏଥିସହିତ ଏହି ମାଟି ଏବଂ ଏହାର ଜନସାଧାରଣଙ୍କ ବୀରତ୍ୱପୂର୍ଣ୍ଣ ଇତିହାସ ସମ୍ବନ୍ଧିତ କାର୍ଯ୍ୟକ୍ରମମାନ ଆୟୋଜନପୂର୍ବକ ଆମେ ପାଇକ ବିଦ୍ରୋହର ୨୦୦ ବର୍ଷ ପୂର୍ତ୍ତି ପାଳନ କରୁଛୁ ଏବଂ ଏହି ପାଇକ ବିଦ୍ରୋହ ଉପରେ ଆଧାରିତ ସ୍ମାରକୀ ମୁଦ୍ରା ଓ ଡାକଟିକଟ ପ୍ରଚଳନ କରିବା ପାଇଁ ପ୍ରସ୍ତାବ ରଖିଛୁ ।

୩. ଆନ୍ତଃରାଜ୍ୟ ନଦୀ ବିବାଦ ଅଧିନିୟମ, ୧୯୫୬ ଅନୁଯାୟୀ ବର୍ତ୍ତମାନ କେନ୍ଦ୍ର କ୍ୟାବିନେଟ୍ ଏକ ଟ୍ରିବୁନାଲ୍ ଗଠନ କରିଛନ୍ତି, ଯାହାଦ୍ୱାରା ଓଡ଼ିଶାବାସୀ ନ୍ୟାୟସଂଗତ ଭାବେ ମହାନଦୀରୁ ସେମାନଙ୍କ ଜଳର ନ୍ୟାଯ୍ୟ ଭାଗ ପାଇବା ଦିଗରେ ଆଶ୍ୱସ୍ତ ହୋଇଛନ୍ତି । ମୁଁ ନିଃସନ୍ଦେହରେ କହିପାରେ ଯେ, ଏହି ପ୍ରସଙ୍ଗରେ ଓଡିଶାର ଜନସାଧାରଣଙ୍କ ସହ ମୋ ସରକାର ସର୍ବଦା ଦୃଢ ଭାବରେ ରହିଆସିଛନ୍ତି । ସମ୍ବିଧାନର ଧାରା ୨୫୬ ଅନୁଯାୟୀ ମହାନଦୀ ଉପରେ ନିର୍ମାଣାଧୀନ ପ୍ରକଳ୍ପ ବିଶେଷକରି ୬ଗୋଟି ବ୍ୟାରେଜ୍‌ର ନିର୍ମାଣ କାର୍ଯ୍ୟ ତୁରନ୍ତ ବନ୍ଦ କରିବା ପାଇଁ ଛତିଶଗଡ ସରକାରଙ୍କୁ ଆବଶ୍ୟକୀୟ ପ୍ରଶାସନିକ ନିର୍ଦ୍ଦେଶ ଦେବା ପାଇଁ ମୋ ସରକାର ମାନ୍ୟବର ପ୍ରଧାନମନ୍ତ୍ରୀଙ୍କୁ ଅନୁରୋଧ କରିଛନ୍ତି । ମହାନଦୀ ପ୍ରସଙ୍ଗରେ ଓଡିଶାବାସୀଙ୍କ ସ୍ୱାର୍ଥରକ୍ଷା କରିବାକୁ ମୋ ସରକାର ଯେକୌଣସି ଉଦ୍ୟମରୁ ବିରତ ହେବେ ନାହିଁ । ସେହିପରି, ପୋଲାଭରମ୍ ପ୍ରକଳ୍ପ ପ୍ରସଙ୍ଗରେ ଓଡିଶା ଏବଂ ଏହାର ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ମୋ ସରକାର ସଠିକ୍ ମାର୍ଗରେ ଅଗ୍ରସର ହେଉଛନ୍ତି ।

୪. ଆମ ଅଭିବୃଦ୍ଧି ରୂପକ ଇଂଜିନ୍‌ର ପ୍ରମୁଖ ଶକ୍ତି ହେଉଛି ବୈଷୟିକ ଜ୍ଞାନକୌଶଳ । ଆମର ପ୍ରଶାସନ ପରିଚାଳନା ସର୍ବଦା ସ୍ୱଚ୍ଛ ଏବଂ ଦୁର୍ନୀତିମୁକ୍ତ । ଉତ୍ତମ ପ୍ରଶାସନ ତଥା ଗରିବ ଜନସାଧାରଣଙ୍କ ହିତସାଧନ ନିମନ୍ତେ ସରକାର ସାମୂହିକ ଭାବେ ଉଦ୍ୟମ କରିବା ଆବଶ୍ୟକ । ଓଡ଼ିଶାର ଜନଜୀବନରେ ପରିବର୍ତ୍ତନ ଆଣିବା ନିମନ୍ତେ ସଂପ୍ରତି ତିନିଗୋଟି ପରଶମଣି ସଦୃଶ 'ଟି' ଯଥା– ଟିମ୍ ଓ୍ୱାର୍କ (ସାମୂହିକ କାର୍ଯ୍ୟ), ଟେକ୍‌ନୋଲୋଜି (ବୈଷୟିକ ଜ୍ଞାନକୌଶଳ) ଏବଂ ଟ୍ରାନ୍ସପାରେନ୍ସି (ସ୍ୱଚ୍ଛତା) ହେଉଛି ମୋ' ସରକାରଙ୍କ ପ୍ରଶାସନିକ ବ୍ୟବସ୍ଥାର ମୂଳମନ୍ତ୍ର । କୃଷି ନିମନ୍ତେ ବର୍ଦ୍ଧିତ ଜଳସେଚନ ସୁବିଧା, ଉଭୟ ଗ୍ରାମୀଣ ଓ ସହରାଞ୍ଚଳ ଓଡ଼ିଶାର ସର୍ବାଙ୍ଗୀନ ଅଭିବୃଦ୍ଧି ପାଇଁ ଭିତ୍ତିଭୂମିର ବିକାଶ ଏବଂ ପ୍ରଶାସନିକ ପ୍ରକ୍ରିୟାରେ ଅନୁସୂଚିତ ଜନଜାତି ଓ ଜାତି ବର୍ଗ, ମହିଳା ଓ ବଞ୍ଚିତ ଶ୍ରେଣୀର ଅନ୍ତର୍ଭୁକ୍ତି ପ୍ରତି ଯଥାଯଥ ଗୁରୁତ୍ୱାରୋପ ନିମନ୍ତେ ତିନିଗୋଟି 'ଆଇ' ଯଥା– ଇରିଗେସନ୍ (ଜଳସେଚନ), ଇନ୍‌ଫ୍ରାଷ୍ଟ୍ରକ୍‌ଚର୍ (ଭିତ୍ତିଭୂମି) ଏବଂ ଇନ୍‌କ୍ଲୁଜନ୍ (ଅନ୍ତର୍ଭୁକ୍ତି)ର ପ୍ରୟୋଗ ଦ୍ୱାରା ଏ ସମସ୍ତ କ୍ଷେତ୍ରରେ ପୋଷଣୀୟ ଅଭିବୃଦ୍ଧି ହାସଲ କରାଯାଇପାରିଛି ।

୫. ଇଂରାଜୀ 'ଓରିଶା'ରୁ ଓଡ଼ିଶା ଏବଂ 'ଓରିୟା'ରୁ ଓଡ଼ିଆକୁ ନାମାନ୍ତର ପର୍ଯ୍ୟନ୍ତ ମୋ ସରକାର ଓଡିଆ ଭାଷାର ସଂରକ୍ଷଣ, ସୁରକ୍ଷା ଓ ବିକାଶ ନିମନ୍ତେ ବହୁବିଧ ଉଦ୍ୟମ କରିଛନ୍ତି । ମୁଁ ଏହି ପବିତ୍ର ଗୃହରେ ଗର୍ବର ସହିତ କହିବାକୁ ଚାହୁଁଛି ଯେ ୪ ବର୍ଷ ପୂର୍ବେ ମୋ ସରକାରଙ୍କ ଆନ୍ତରିକ ଉଦ୍ୟମର ଫଳସ୍ୱରୂପ ଓଡିଆ ଭାଷା ଦେଶର ଷଷ୍ଠ ଭାରତୀୟ ଶାସ୍ତ୍ରୀୟ ଭାଷାର ମାନ୍ୟତା ହାସଲ କରିଥିଲା । ଅଧୁନା ଆମ ଭାଷା ସମ୍ମୁଖୀନ ହେଉଥିବା କେତେକ ଆହ୍ୱାନର ସମାଧାନ, ଓଡିଆ ଭାଷାର ବିକାଶ ପାଇଁ ବର୍ତ୍ତମାନ ସମୟର ଆବଶ୍ୟକତା ଏବଂ ଏକ ସରକାରୀ ଭାଷା ରୂପେ ଏହାର ବ୍ୟବହାର ଉପରେ ଧ୍ୟାନ ନିବେଶପୂର୍ବକ ଏହାକୁ ଏକ ନୂତନ ଦିଗ ପ୍ରଦାନ ନିମନ୍ତେ ମୋ ସରକାର ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ ନୂତନ ଭାବରେ ସୃଷ୍ଟି କରିବା ସହିତ ଓଡିଶାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ, ଭାଷା ଏବଂ ସାହିତ୍ୟର ସଂରକ୍ଷଣ ନିମନ୍ତେ ଏକ ସ୍ୱତନ୍ତ୍ର 'ଐତିହ୍ୟ କ୍ୟାବିନେଟ୍' ମଧ୍ୟ ଗଠନ କରିଛନ୍ତି । ଏଥିସହିତ ଓଡିଶା ବାହାରେ ଓଡିଆ ଭାଷା ଏବଂ ସାହିତ୍ୟ ଅଧ୍ୟୟନ, ବିଶ୍ଳେଷଣ ଏବଂ ଗବେଷଣା ନିମନ୍ତେ ଆଦିକବି ସାରଳା ଦାସ ଏବଂ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ଯଥାକ୍ରମେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଦୁଇଟି ଚେୟାର୍ ପ୍ରତିଷ୍ଠା କରାଇଛନ୍ତି ।

ଓଡିଆ ଭାଷାର ସୁରକ୍ଷା, ପ୍ରଚାର, ପ୍ରସାର ଏବଂ ବିକାଶ ଦିଗରେ କାର୍ଯ୍ୟ କରିବାକୁ ଏକ ଭାଷା ଆୟୋଗ ଗଠନ ସହ ମୋ ସରକାର ସରକାରୀ ସ୍ତରରେ ଏବଂ ଦୋକାନ ଓ ବାଣିଜ୍ୟିକ ପ୍ରତିଷ୍ଠାନଗୁଡିକର ନାମଫଳକରେ ଓଡିଆ ଭାଷା ବ୍ୟବହାରକୁ

ବାଧ୍ୟତାମୂଳକ କରିବାକୁ ତଥା ଏହାର ପରିପାଳନ ନିମନ୍ତେ ପୁରସ୍କାର ଓ ଅବମାନନା ନିମନ୍ତେ ଦଣ୍ଡ ବିଧାନ ବ୍ୟବସ୍ଥା ସହ ଓଡିଶା ସରକାରୀ ଭାଷା ଅଧିନିୟମ, ୧୯୫୪ ଏବଂ ଓଡ଼ିଶା ଦୋକାନ ଓ ବାଣିଜ୍ୟିକ ପ୍ରତିଷ୍ଠାନ ଅଧିନିୟମ, ୧୯୫୬ର ବିଧିଦୃଷ୍ଟେ ସଂଶୋଧନ ଆଗତ କରୁଛନ୍ତି ।

୬. ଏକ ସ୍ୱତନ୍ତ୍ର ରାଜ୍ୟ ଭାବରେ ଗଠିତ ହେବାର ଏକ ଶତ ବର୍ଷ ସହ ତାଳ ଦେଇ ମୋ ସରକାର ରାଜ୍ୟ ନିମନ୍ତେ 'ଭିଜନ୍ : ୨୦୩୬' ଚିଠା ପ୍ରସ୍ତୁତ କରୁଛନ୍ତି, ଯାହା ଜାତିସଂଘ ଦ୍ୱାରା ଘୋଷିତ ପୋଷଣୀୟ ବିକାଶ ଲକ୍ଷ୍ୟ ତଥା ୨୦୩୬ ସୁଦ୍ଧା ଓଡିଶାର ଜନସାଧାରଣଙ୍କର ଆବଶ୍ୟକତା ଓ ଆକାଂକ୍ଷାକୁ ପ୍ରତିବିମ୍ବିତ କରିବ ।

୭. ମୋ ସରକାର 'ଓଡିଶା ବସ୍ତିବାସିନ୍ଦା ଭୂମି ଅଧିକାର ଅଧିନିୟମ, ୨୦୧୭' କାର୍ଯ୍ୟକାରୀ କରାଇ ପୌର ପରିଷଦ ଏବଂ ବିଜ୍ଞାପିତ ଅଞ୍ଚଳ ପରିଷଦଗୁଡିକରେ ବସବାସ କରୁଥିବା ଗରିବ ବସ୍ତିବାସିନ୍ଦାଙ୍କୁ ଭୂମି ଅଧିକାର ଏବଂ 'ଓଡିଶା ପୌର ନିଗମ (ସଂଶୋଧନ) ଅଧିନିୟମ, ୨୦୧୭' ଏବଂ 'ଓଡ଼ିଶା ବସ୍ତିବାସିନ୍ଦା ଭୂମି ଅଧିକାର ନିୟମାବଳୀ, ୨୦୧୭' ଅଧୀନରେ ରାଜ୍ୟର ମହାନଗର ନିଗମଗୁଡିକରେ ବସବାସ କରୁଥିବା ଗରିବ ବସ୍ତିବାସିନ୍ଦାଙ୍କୁ ସଂପତ୍ତି ଅଧିକାର ଯୋଗାଇଦେବାକୁ ଏକ ଐତିହାସିକ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ସହରାଞ୍ଚଳ ବସ୍ତିବାସିନ୍ଦାଙ୍କ ନିମନ୍ତେ ଏପରି ନିୟାମକ ଆଣିବାରେ ଓଡ଼ିଶା ଆମ ଦେଶରେ ପ୍ରଥମ ରାଜ୍ୟ ।

୮. ୧୩ ଗୋଟି ନିର୍ଦ୍ଦିଷ୍ଟ ଆପଦଗ୍ରସ୍ତ ଜନଜାତି ଗୋଷ୍ଠୀଙ୍କ ସମେତ ୬୨ଟି ଜନଜାତି ବର୍ଗ ଏବଂ ଏସବୁ ବର୍ଗର ନିଜସ୍ୱ ଜୀବନଶୈଳୀକୁ ପ୍ରତିଫଳିତ କରୁଥିବା କାରୁକାର୍ଯ୍ୟ, ଚିତ୍ରାଙ୍କନ, ଧର୍ମୀୟ ସଂକେତ, ବାସଗୃହ ଏବଂ ସଂସ୍କୃତିର ଅପୂର୍ବ ନିଦର୍ଶନର ଆଶିଷ ଲାଭ କରିଥିବା ଅନନ୍ୟ ରାଜ୍ୟ ହେଉଛି ଆମ ଓଡ଼ିଶା । ଜନଜାତି ଅଞ୍ଚଳର ଉନ୍ନତି ଏବଂ ଏହାର ଅଧିବାସୀଙ୍କ କଲ୍ୟାଣ ସାଧନ ସହିତ ସେମାନଙ୍କର ସାଂସ୍କୃତିକ ଐତିହ୍ୟର ସଂରକ୍ଷଣ ଓ ବିକାଶ ଆମ ହୃଦୟର ନିକଟତର ଏକ ଲକ୍ଷ୍ୟ ଭାବେ ସର୍ବଦା ରହିଆସିଛି ଏବଂ ନଅ ଗୋଟି ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଯଥା– ସୁନ୍ଦରଗଡ, ଗଜପତି, ମୟୂରଭଞ୍ଜ, କେନ୍ଦୁଝର, ରାୟଗଡା, କୋରାପୁଟ, ନବରଙ୍ଗପୁର, ମାଲକାନଗିରି ଏବଂ କନ୍ଧମାଳରେ 'ସ୍ୱତନ୍ତ୍ର ଉନ୍ନୟନ ପରିଷଦ' ଗଠନ ଜରିଆରେ ଏହି ଅଭୀଷ୍ଟ ପୂରଣ କରିବାକୁ ମୋ ସରକାର ଯତ୍ନବାନ ଅଛନ୍ତି । ଏହି ପରିଷଦଗୁଡିକୁ ଜନଜାତିଙ୍କର ସଂସ୍କୃତି ଓ କ୍ରୀଡା ଏବଂ ଅନ୍ୟାନ୍ୟ ଉନ୍ନୟନ ଆବଶ୍ୟକତାସମୂହର ସଂରକ୍ଷଣ ଓ ବିକଶିତ କରିବା ନିମନ୍ତେ ପରାମର୍ଶମୂଳକ ନିଷ୍ପତ୍ତି ନେବା ପାଇଁ କ୍ଷମତାପନ୍ନ କରାଯାଇଛି । ଆମ ଜନସଂଖ୍ୟାର ୨୩ ପ୍ରତିଶତ ଏହି ଜନଜାତିଙ୍କ ସଶକ୍ତିକରଣ ସହ ସେମାନଙ୍କ ସାଂସ୍କୃତିକ ପରିଚିତି ଏବଂ ମହନୀୟତାର ସମାରୋହ ପାଳନ ନିମନ୍ତେ ଏହା ଏକ ଐତିହାସିକ ପଦକ୍ଷେପ ।

୯. ପୁରାତନ ଛାତ୍ର, ବ୍ୟକ୍ତିବିଶେଷ ଓ ସଂଗଠନ ନିଜ ସହିତ ଭାବଗତ ସଂପର୍କ ରହିଥିବା ବିଦ୍ୟାଳୟକୁ ପୁଣି ଥରେ ଆପଣାର କରିବାର ସୁଯୋଗ ପ୍ରଦାନ କରିବା ଉଦ୍ଦେଶ୍ୟରେ ମୋ ସରକାର ଏକ ଅଭିନବ ନାଗରିକ ସଂଯୋଗ ଉପକ୍ରମ କାର୍ଯ୍ୟକ୍ରମ 'ମୋ ସ୍କୁଲ' ଆରମ୍ଭ କରିଛନ୍ତି । ବିଦ୍ୟାଳୟର ବିକାଶ ନିମନ୍ତେ ଯୋଗଦାନ କରିବାକୁ ଏବଂ ସ୍ୱେଚ୍ଛାକୃତ ଭାବରେ ନିଜ ତରଫରୁ ଅବଦାନ ରଖିବାକୁ ଚାହୁଁଥିବା ବ୍ୟକ୍ତିବିଶେଷଙ୍କ ଜନହିତୈଷୀ ଇଚ୍ଛାକୁ ସମ୍ମାନ ଜଣାଇ ଏହି ଅଭିଯାନଟି ଆରମ୍ଭ କରାଯାଇଥିଲା । 'ମୋ ସ୍କୁଲ' ହେଉଛି ଏପରି ଏକ ଅଭିନବ କାର୍ଯ୍ୟକ୍ରମ, ଯାହା ଅର୍ଥରାଶି, ଶିକ୍ଷାସାଧନ କିମ୍ବା ଶିକ୍ଷାଭିତ୍ତିକ ସେବାର ଯୋଗଦାନ ରଖିବା ପାଇଁ ସୁଯୋଗ ପ୍ରଦାନ କରିଥାଏ, ଯେଉଁ ଅବଦାନର ଦୁଇଗୁଣ ଯୋଗାଇଦେବା ନିମନ୍ତେ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ।

ବିଦ୍ୟାଳୟର ବିଭିନ୍ନ ଆବଶ୍ୟକତା ପୂରଣ ନିମନ୍ତେ ବିନିଯୋଗ ହେବା ପାଇଁ ଏହା ବିଦ୍ୟାଳୟକୁ ପ୍ରତ୍ୟକ୍ଷ ଭାବରେ ହସ୍ତାନ୍ତରିତ ହେବ ।

୧୦. ୫ ମାର୍ଚ୍ଚ ପଞ୍ଚାୟତିରାଜ ଦିବସ ଅବସରରେ ମୋ ସରକାରଙ୍କ ତରଫରୁ 'ଆମ ଗାଁ, ଆମ ବିକାଶ' ନାମକ ଏକ ନୂତନ ଉପକ୍ରମ ଆରମ୍ଭ କରାଯାଇଛି । ଏହା ମୁଖ୍ୟତଃ ଗ୍ରାମାଞ୍ଚଳ ବିକାଶରେ ରହିଥିବା ଗୁରୁତର ବ୍ୟବଧାନକୁ ହ୍ରାସ କରିବା ପାଇଁ ଏକ ଉପକ୍ରମ । ଜନସାଧାରଣ ଏବଂ ସେମାନଙ୍କ ଜନପ୍ରତିନିଧି ଏବଂ ଅନ୍ୟ ଅଂଶୀଦାରମାନେ ପଞ୍ଚାୟତ ସ୍ତରରୁ ସିଧାସଳଖ କଥାବାର୍ତ୍ତା ଜରିଆରେ ତାଙ୍କର ଅତ୍ୟାବଶ୍ୟକୀୟ ପ୍ରକଳ୍ପଗୁଡ଼ିକୁ ଚିହ୍ନଟ କରିବେ, ଯାହା ଗାଁ ପାଇଁ ନିହାତି ଆବଶ୍ୟକ ଏବଂ ଅନ୍ୟ କୌଣସି ଯୋଜନାରେ ଯାହା କାର୍ଯ୍ୟକାରୀ କରାଯାଇପାରିବ ନାହିଁ । ମୁଖ୍ୟମନ୍ତ୍ରୀଙ୍କ ସହିତ ଭିଡ଼ିଓ କନ୍‌ଫରେନ୍ସିଂ ମାଧ୍ୟମରେ ସିଧା କଥାବାର୍ତ୍ତା ଜରିଆରେ ୧ ଲକ୍ଷରୁ ୧୦ ଲକ୍ଷ ଟଙ୍କା ମଧ୍ୟରେ ଥିବା ଆବଶ୍ୟକୀୟ ପ୍ରକଳ୍ପଗୁଡ଼ିକ ଆଲୋଚନା ମାଧ୍ୟମରେ ଚୂଡ଼ାନ୍ତ କରାଯାଇ ତୁରନ୍ତ ଏହାର ଅନୁମୋଦନ ଲୋକଙ୍କୁ ଜଣାଇ ଦିଆଯିବ ।

୧୧. 'ଭାରତର ଅନୁପମ ଗୋପନୀୟତା' ଓଡ଼ିଶା, ଏବେ କ୍ରମାଗତ ଭାବେ କ୍ରୀଡା ଏବଂ ଯୁବ ସେବା କ୍ଷେତ୍ରରେ ଏହାର ସାମର୍ଥ୍ୟ ପରିପ୍ରକାଶ କରିଚାଲିଛି । କ୍ରୀଡାର ବିଭିନ୍ନ ଶୃଙ୍ଖଳାରେ ଯୁବ ପ୍ରତିଭାମାନଙ୍କୁ ସହାୟତା ଯୋଗାଇଦେବା ପାଇଁ ଏହାର ଏକାଧିକ ଉଚ୍ଚାଭିଳାଷୀ ଯୋଜନା ଏବଂ ଇଣ୍ଟର୍‌ନ୍ୟାସନାଲ ଆସୋସିଏସନ୍ ଅଫ୍ ଆଥ୍‌ଲେଟିକ୍ ଫେଡ଼େରେସନ୍ ସହଭାଗିତାରେ ହାଇ ପର୍‌ଫର୍‌ମାନ୍ସ୍ ଆଥ୍‌ଲେଟିକ୍ସ ଏକାଡେମୀ ପ୍ରତିଷ୍ଠା ପାଇଁ ରାଜିନାମା ସହିତ ରାଜ୍ୟର ରାଜଧାନୀ ଭୁବନେଶ୍ୱର ମହାନଗରୀ କ୍ରମଶଃ ଦେଶର କ୍ରୀଡା ରାଜଧାନୀ ରୂପେ ଉଭା ହେଉଛି । ୯୦ ଦିନ ମଧ୍ୟରେ ବିଶ୍ୱସ୍ତରୀୟ ଭିତ୍ତିଭୂମି ସୃଷ୍ଟି କରି ୨୨ତମ ଏସିଆନ୍ ଆଥ୍‌ଲେଟିକ୍ସ ଚମ୍ପିଆନ୍‌ସିପ୍‌ସ ଭଳି ଏକ ବୃହତ୍ ଉପଲବ୍ଧି ଅତି ସଫଳତାର ସହିତ ଆୟୋଜନ କରାଯାଇଛି ।

୧୨. ଏକ ଗୌରବମୟ ଅଭିଷେକ ଭଳି ହକି ବିଶ୍ୱ ଲିଗ୍ ଫାଇନାଲ୍ ଭୁବନେଶ୍ୱରରେ ଆୟୋଜିତ ହେବା ସହିତ ଏବେ ଆଗାମୀ ୫ ବର୍ଷ ପର୍ଯ୍ୟନ୍ତ ଉଭୟ ଜାତୀୟ ପୁରୁଷ ଓ ମହିଳା ହକି ଦଳର ପ୍ରାୟୋଜକ ଭାବରେ ଓଡ଼ିଶା ଆଜି ଆଗଧାଡ଼ିରେ ଠିଆ ହୋଇଛି । ଚଳିତ ବର୍ଷ ନଭେମ୍ବର-ଡିସେମ୍ବର ମାସରେ ପୁରୁଷ ବିଶ୍ୱ କପ୍ ହକି–୨୦୧୮ର ଆୟୋଜନ ନିମନ୍ତେ ଏପଟେ କଳିଙ୍ଗ ଷ୍ଟାଡିୟମ୍ ପ୍ରସ୍ତୁତ ହେଉଥିବା ବେଳେ ଲୁକ୍କାୟିତ ଜନଜାତି ପ୍ରତିଭା ଚିହ୍ନଟ କରି ରାଜ୍ୟ ଏବଂ ଜାତୀୟ ସ୍ତରର ପ୍ରତିଯୋଗିତାରେ ସେମାନଙ୍କୁ ସାମିଲ୍ ହେବା ପାଇଁ ସୁଯୋଗ ଦେବା ନିମନ୍ତେ ରାଜ୍ୟ ଜନଜାତି କ୍ରୀଡା ଆୟୋଜନ କରିବା କ୍ଷେତ୍ରରେ ଆମ ରାଜ୍ୟ ଆଜି ଦେଶର ଏକମାତ୍ର ରାଜ୍ୟ ହୋଇପାରିଛି ।

୧୩. ମୋ ସରକାର 'ବିଜୁ ଯୁବ ବାହିନୀ' ଭଳି ଏକ ନୂତନ ଉପକ୍ରମ ମାଧ୍ୟମରେ ଉଭୟ ଗ୍ରାମୀଣ ଓ ସହରାଞ୍ଚଳ ଯୁବବର୍ଗଙ୍କ ପାଇଁ ଉଦ୍ଦିଷ୍ଟ ସାମାଜିକ ଏବଂ ଗୋଷ୍ଠୀ ସହଭାଗିତା କାର୍ଯ୍ୟକ୍ରମକୁ ଏବେ ଅଗ୍ରାଧିକାର ଦେବା ସହିତ ଏହାର ପରିସର ବୃଦ୍ଧି କରୁଛନ୍ତି ।

୧୪. ମୋ ସରକାର ରାଜ୍ୟରେ କୃଷିର ଉନ୍ନତି ଏବଂ କୃଷକମାନଙ୍କର ଆୟବୃଦ୍ଧି ନିମନ୍ତେ ଏକାଧିକ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । ୨୦୧୭-୧୮ ବର୍ଷରେ ଖାଦ୍ୟଶସ୍ୟ ଉତ୍ପାଦନ ୧୦୭ ଲକ୍ଷ ମେଟ୍ରିକ୍ ଟନ୍‌ରେ ପହଞ୍ଚିବା ଆକଳନ କରାଯାଇଛି ଏବଂ ୨୦୧୮-୧୯ ବର୍ଷରେ ଏହା ୧୨୨ ଲକ୍ଷ ମେଟ୍ରିକ୍ ଟନ୍‌ରେ ପହଞ୍ଚାଇବା ପାଇଁ ଯୋଜନା କରାଯାଇଛି ।

୧୫. ରାଜ୍ୟରେ କୃଷିର ଅଭିବୃଦ୍ଧିକୁ ପ୍ରୋତ୍ସାହନ ଦେବା ପାଇଁ ୧ ପ୍ରତିଶତ ସୁଧରେ କୃଷି ଋଣ ପ୍ରଦାନ କରାଯିବା ସହିତ ଅଗଭୀର ନଳକୂପ, ନଳକୂପ, ବୋରୱେଲ୍ ଏବଂ ନଦୀ/ଜଳଉତ୍ସରୁ ଉଠା ଜଳସେଚନ ପ୍ରକଳ୍ପ ସ୍ଥାପନ ନିମନ୍ତେ ୫୦ରୁ ୭୫ ପ୍ରତିଶତ ପର୍ଯ୍ୟନ୍ତ ରିହାତି ଦେବାର ବ୍ୟବସ୍ଥା କରାଯାଇଛି ।

୧୬. ଜନସାଧାରଣଙ୍କ ପୁଷ୍ଟି ନିରାପତ୍ତା ବୃଦ୍ଧି ନିମନ୍ତେ ୨୦୧୭–୧୮ ବର୍ଷରୁ ୭ଟି ଆଦିବାସୀବହୁଳ ଜିଲ୍ଲାରେ ବାଜରା ଜାତୀୟ ଫସଲର ଅଭିବୃଦ୍ଧି ନିମନ୍ତେ ଏକ ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ କରାଯାଇଛି । ଏଥିନିମନ୍ତେ ୨୦୧୭–୧୮ରେ ରାଜ୍ୟ ସରକାର ସ୍କଚ୍ ପୁରସ୍କାର ଲାଭ କରିଛନ୍ତି । କପାଚାଷ କ୍ରମାଗତ ଭାବରେ ବୃଦ୍ଧି ପାଇବାରେ ଲାଗିଛି ଏବଂ ୨୦୧୭–୧୮ ବର୍ଷରେ ଏହା ସର୍ବକାଳୀନ ୧.୪୫ ଲକ୍ଷ ହେକ୍ଟରରେ ପହଞ୍ଚିଛି ।

୧୭. ମୋ ସରକାର ଉନ୍ନତମାନର ଡାଲି ଜାତୀୟ ଓ ତୈଳବୀଜ ବିହନ ଉତ୍ପାଦନ ପାଇଁ ଅନ୍ତର୍ଜାତୀୟ ସଂସ୍ଥାମାନଙ୍କ ସହିତ ସହଭାଗିତା କରିଛନ୍ତି । ଏହା ଆମ କୃଷି ଅଭିବୃଦ୍ଧିର ଏକ ନୂତନ ଦିଗ ଯାହା ଏହି କ୍ଷେତ୍ରରେ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବାରେ ସହାୟକ ହେବ । ବିଭିନ୍ନ ଦେଶୀୟ ଫସଲ ଶୃଙ୍ଖଳାର ସଂରକ୍ଷଣ ନିମନ୍ତେ ଏକ ଜିନ୍ ବ୍ୟାଙ୍କ ପ୍ରତିଷ୍ଠା କରାଯାଇଛି ଏବଂ ୧୦୫୦ ପ୍ରକାରର ବିହନ (ଏକ ହଜାର ପ୍ରକାରର ଧାନ ଓ ୫୦ ପ୍ରକାରର ଅଣଧାନ) ସଂଗ୍ରହ କରାଯାଇ ଭବିଷ୍ୟତ ନିମନ୍ତେ ସଂରକ୍ଷିତ କରି ରଖାଯାଇଛି ।

୧୮. କୃଷି ଯାନ୍ତ୍ରିକୀକରଣରେ ପ୍ରଭୂତ ପ୍ରଗତି ହାସଲ କରାଯାଇଛି, ଯାହା ଫଳରେ କୃଷି କ୍ଷେତ୍ରରେ ହେକ୍ଟର ପିଛା ଶକ୍ତି ବିନିଯୋଗ ସର୍ବକାଳୀନ ୧.୬୦ କିଲୋୱାଟ୍‌କୁ ବୃଦ୍ଧି ପାଇଛି ।

୧୯. ପୋଷଣୀୟ କୃଷି ଉତ୍ପାଦନ ନିମନ୍ତେ ପ୍ରାୟ ୧୦ ହଜାର ହେକ୍ଟର ଜମିରେ ଜୈବିକ କୃଷିକୁ ପ୍ରୋତ୍ସାହିତ କରାଯାଇଛି । ସମନ୍ୱିତ କୃଷିକୁ ଲୋକପ୍ରିୟ କରିବା ପାଇଁ କୃଷି ଉଦ୍ୟୋଗୀମାନଙ୍କୁ ରିହାତି ପ୍ରଦାନ କରାଯାଇଛି । ଆଦିବାସୀ ବହୁଳ ଅଞ୍ଚଳରେ ଏହାକୁ ଲୋକପ୍ରିୟ କରିବା ପାଇଁ ସ୍ୱତନ୍ତ୍ର ଧ୍ୟାନ ଦିଆଯାଉଛି ।

୨୦. ବିଭିନ୍ନ କୃଷିଜାତ ଦ୍ରବ୍ୟର ଘରୋଇ ଉପଯୋଗ, ଏହାକୁ ପ୍ରକ୍ରିୟାକୃତ ଏବଂ ମୂଲ୍ୟଯୁକ୍ତ କରିବା, ଅମଳ ପରବର୍ତ୍ତୀ କ୍ଷତିକୁ ହ୍ରାସ ଏବଂ ଅମଳ ଶୀର୍ଷ ସମୟରେ ବଜାରରେ ଅଧିକ ପରିମାଣର ଦ୍ରବ୍ୟ ଉପଲବ୍ଧ ହେବା ଦୃଷ୍ଟିରେ ରଖି କୃଷିକୁ ଅଧିକ ଲାଭଜନକ କରିବା ଉଦ୍ଦେଶ୍ୟରେ ବାଣିଜ୍ୟିକ କୃଷି ଉଦ୍ୟୋଗ ପ୍ରତିଷ୍ଠା ନିମନ୍ତେ ବେରୋଜଗାର ଯୁବକଯୁବତୀମାନଙ୍କୁ ପୁଞ୍ଜିନିବେଶ କ୍ଷେତ୍ରରେ ରିହାତି ପ୍ରଦାନ କରାଯାଉଛି ।

୨୧. ବିଭିନ୍ନ କ୍ଷେତ୍ରରେ ସୂଚନା, ଯୋଗାଯୋଗ ଓ ପ୍ରଯୁକ୍ତିର ସଫଳ ବ୍ୟବହାର ଦିଗରେ ଆମ ରାଜ୍ୟ ପ୍ରଭୂତ ଅଗ୍ରଗତି ହାସଲ କରିଛି । ହିତାଧିକାରୀମାନଙ୍କୁ ଅନ୍‌ଲାଇନ୍ ପଞ୍ଜୀକରଣ, ବିହନ ରିହାତି ପରିଚାଳନା, କୃଷି ଯନ୍ତ୍ରପାତି, ଇନ୍‌ପୁଟ୍ ଡିଲରମାନଙ୍କ ଅନ୍‌ଲାଇନ୍ ପଞ୍ଜୀକରଣ ଏବଂ ପ୍ରମୁଖ ଯୋଜନାଗୁଡ଼ିକର ଇ–ମନିଟରିଂ ପ୍ରଭୃତି କାର୍ଯ୍ୟରେ ଏହାର ସଫଳ ଉପଯୋଗ ହୋଇପାରିଛି । ବିହନ ରିହାତି ପ୍ରଦାନ ଭଳି ସିଧାସଳଖ ରିହାତି ହସ୍ତାନ୍ତର ଯୋଜନା ସାରା ରାଜ୍ୟରେ କାର୍ଯ୍ୟକାରୀ କରାଯାଇଛି । ଏହା ଦେଶରେ ଅଦ୍ୱିତୀୟ । ଏଥିନିମନ୍ତେ ମୋ ସରକାର ଜାତୀୟ ଇ–ଗଭର୍ଣ୍ଣାନ୍ସ୍ ଯୋଜନାରେ ଦୁଇଥର ବ୍ରୋଞ୍ଜ ପଦକରେ ସମ୍ମାନିତ ହୋଇଛନ୍ତି । ପୁନଶ୍ଚ ଚଳିତ ବର୍ଷ ରାଜ୍ୟ ସିଏସ୍‌ଆଇ–ନିହିଲେଣ୍ଟ ଉତ୍ତମ ଇ–ଗଭର୍ଣ୍ଣାନ୍ସ–୨୦୧୭ ପୁରସ୍କାର ଲାଭ କରିଛି । ମୋବାଇଲ ଆପ୍ଲିକେସନ୍

ପ୍ରସ୍ତୁତ କରାଯାଇ ସମସ୍ତ ଯୋଜନାର ବାସ୍ତବ ରୂପାୟନର ତଦାରଖ ନିମନ୍ତେ ଏହାର ଉପଯୋଗ କରାଯାଇଛି । ପ୍ରତ୍ୟେକ ବ୍ଲକ୍‌ରେ କୃଷି ସୂଚନା ପରାମର୍ଶ କେନ୍ଦ୍ର ସ୍ଥାପନ କରାଯାଇ ସଂପ୍ରସାରଣ ନେଟ୍‌ୱାର୍କର ଅଭିବୃଦ୍ଧି ପାଇଁ ଉଦ୍ୟମ କରାଯାଇଛି ।

୨୨. ମୋ ସରକାର ଫସଲବୀମା, ଧାନ ସଂଗ୍ରହ, ଭଣ୍ଡାରଘରଗୁଡ଼ିକର ଦକ୍ଷ ପରିଚାଳନା, କୃଷି ବିପଣନ ସଂସ୍କାର, ଗ୍ରାମପଞ୍ଚାୟତ ସ୍ତରରେ କୃଷକମାନଙ୍କ ପାଇଁ ସାଧାରଣ ଭାବରେ ଓ ରାଜ୍ୟର ଦୁର୍ବଳ ଶ୍ରେଣୀ ଲୋକଙ୍କ ପାଇଁ ନିର୍ଦ୍ଦିଷ୍ଟ ଭାବରେ ପ୍ରାଥମିକ କୃଷି ସମବାୟ ସମିତିଗୁଡ଼ିକୁ ସମସ୍ତ କୃଷି ସମ୍ବଳର ଏକକ ଲକ୍ଷ୍ୟସ୍ଥଳ ଭାବରେ ଉନ୍ନୀତ କରିବାରେ  ବହୁବିଧ ସେବା ସମ୍ପୃକ୍ତ ସମବାୟ ସମିତିଗୁଡ଼ିକର ସାମର୍ଥ୍ୟକୁ ସ୍ୱୀକାର କରନ୍ତି । କୃଷି ସମବାୟ ସମିତିଗୁଡ଼ିକର କମ୍ପ୍ୟୁଟରୀକରଣ ଦେଶରେ ଏକ ଅଭିନବ ଓ ଅଦ୍ୱିତୀୟ ଦୃଷ୍ଟାନ୍ତ ହେବ । ଏହି ପ୍ରକ୍ରିୟା ୨୦୧୮ ମାର୍ଚ୍ଚ ସୁଦ୍ଧା ସମ୍ପୂର୍ଣ୍ଣ କରିବାକୁ ଆଶା କରାଯାଇଛି । ମୋ ସରକାର କୃଷି ସମବାୟ ସ୍ତରରେ ଗୋଦାମ ଘର ନିର୍ମାଣ ନିମନ୍ତେ ଉଦ୍ୟମ ଆରମ୍ଭ କରିଛନ୍ତି ।

୨୩. ମୋ ସରକାର ଚାଷୀମାନଙ୍କୁ ୧ ପ୍ରତିଶତ ସୁଧ ହାରରେ ଫସଲ ଋଣ ଯୋଗାଇ ଦେଉଛନ୍ତି । ଏହା ଭୂମିହୀନ, ମୌଖିକ ଲିଜ୍‌ଧାରୀ, ଭାଗଚାଷୀ, ଅନ୍ୟ ଜମିରେ ଫସଲ କରୁଥିବା ଚାଷୀ ଏବଂ ଗ୍ରାମାଞ୍ଚଳ ମହିଳାମାନଙ୍କୁ ବ୍ୟାଙ୍କରୁ ବିନା ବନ୍ଧକରେ ସହଜ ଋଣ ହାସଲ ଦିଗରେ ସହାୟତା ପ୍ରଦାନ କରୁଛି । ଫସଲ ବୀମା ଅଧୀନରେ ଅଧିକ କୃଷକମାନଙ୍କୁ ସାମିଲ କରିବା ନିମନ୍ତେ ମୋ ସରକାର ପଦକ୍ଷେପ ନେଉଛନ୍ତି । ଫସଲ ବୀମା ଯୋଜନାରେ ଅଣଋଣୀ କୃଷକମାନଙ୍କର ରେଜିଷ୍ଟ୍ରୀକରଣ ୨୦୧୬-୧୭ ବର୍ଷରେ ୩୦ ହଜାର ଥିବାବେଳେ ୨୦୧୭-୧୮ ବର୍ଷରେ ୪ ଗୁଣ ବୃଦ୍ଧି ପାଇ ୧.୩୯ ଲକ୍ଷରେ ପହଞ୍ଚିଛି । ମୋ ସରକାର ୨୦୧୭-୧୮ ବର୍ଷରେ ସମସ୍ତ କିଷାନ୍ କ୍ରେଡ଼ିଟ୍ କାର୍ଡ଼କୁ 'ରୁପେ କିଷାନ୍  କାର୍ଡ'ରେ ପରିବର୍ତ୍ତିତ କରିବା ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି, ଯଦ୍ୱାରା କୃଷକ ସଭ୍ୟମାନେ ରାଜ୍ୟରେ କାର୍ଯ୍ୟ କରୁଥିବା ପ୍ରାଥମିକ କୃଷି ସମବାୟ ସମିତି/ଲ୍ୟାମ୍ପସ୍‌ଗୁଡ଼ିକ ସମସ୍ତ ପ୍ରକାର ଏଟିଏମ୍ ଓ ପି.ଓ.ଏସ୍ ନେଟ୍‌ୱାର୍କ ମାଧ୍ୟମରେ ସେମାନଙ୍କ ପାଇଁ ମଞ୍ଜୁର ହୋଇଥିବା ଋଣ ସଂପର୍କିତ ତଥ୍ୟ ଜାଣିପାରିବେ ।

୨୪. ଅମଳ ପରବର୍ତ୍ତୀ କ୍ଷତି ହ୍ରାସ ଓ ଉତ୍ପାଦକଙ୍କୁ ଅଧିକ ଲାଭ ଓ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ଗ୍ରାମପଞ୍ଚାୟତ ସ୍ତରରେ ଗୋଷ୍ଠୀ କଂକ୍ରିଟ୍ ଖଳା ନିର୍ମାଣ କରାଯାଇଛି । ବିପଣନ ତଥ୍ୟ, ଉପଯୁକ୍ତ ଫସଲ ଯୋଜନା ଏବଂ ନିଜ ଉତ୍ପାଦର ଅଧିକ ମୂଲ୍ୟ ପାଇବା ପାଇଁ ପ୍ରାୟ ୬୦ ହଜାର ମୋବାଇଲ୍ ଫୋନ୍ ସବୁ ଜିଲ୍ଲାରେ କୃଷକମାନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । କୃଷି ବିପଣନ ସଂସ୍କାରର ଅଂଶସ୍ୱରୂପ ଇ-ଟ୍ରେଡିଙ୍ଗ୍ ସୁବିଧା ଯୋଗାଇ ଦେବା ପାଇଁ ରାଜ୍ୟର ନିୟନ୍ତ୍ରିତ ବଜାର କମିଟି ଅନ୍ତର୍ଗତ କେତେକ ନିରୂପିତ ବଜାରରେ ଅଧିକ ଇ-ପ୍ଲାଟଫର୍ମ ପ୍ରଚଳନ ନିମନ୍ତେ ମୋ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

୨୫. ମୋ ସରକାର ଅବିଳମ୍ବେ ରାଜ୍ୟରେ ଜଳସେଚିତ ଅଞ୍ଚଳ ବୃଦ୍ଧି ନିମନ୍ତେ ପ୍ରତିଶ୍ରୁତିବଦ୍ଧ । ୨୦୧୭-୧୮ ବର୍ଷରେ ୨.୯୫ ଲକ୍ଷ ହେକ୍ଟର ଅତିରିକ୍ତ ଜଳସେଚନ ସାମର୍ଥ୍ୟ ସୃଷ୍ଟି ନିମନ୍ତେ ପ୍ରକଳ୍ପଗୁଡ଼ିକ ହାତକୁ ନିଆଯାଇଛି । ଆଗାମୀ ୩ ବର୍ଷରୁ ୫ ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ହେବାକୁ ଥିବା କେତେକ ନୂତନ ମଧ୍ୟମ ଜଳସେଚନ ପ୍ରକଳ୍ପ, ବୃହତ୍ ଜଳ ପ୍ଲାବନ ଅଞ୍ଚଳ ଓ ଜଙ୍ଗଲ ଅପସାରଣ ବିନା ଆଡ଼ିବନ୍ଧ  ନିର୍ମାଣ ନିମନ୍ତେ ଯୋଜନା ପ୍ରସ୍ତୁତ ହୋଇଛି । ପ୍ରଥମ ପର୍ଯ୍ୟାୟରେ, ୨୦୧୮-୧୯ ବର୍ଷରେ କୁସୁମି ଏବଂ ବାଙ୍କତିରାଠାରେ ଦୁଇଗୋଟି ନୂତନ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ହାତକୁ ନିଆଯିବ । ଜଳବାୟୁ ପରିବର୍ତ୍ତନର ପ୍ରଭାବକୁ ଦୃଷ୍ଟିରେ ରଖି ଜଳ ଉତ୍ସଗୁଡ଼ିକର ସଂରକ୍ଷଣ ପାଇଁ ମୋ ସରକାର ପ୍ରାଧାନ୍ୟ ଦେଉଛନ୍ତି । ବର୍ତ୍ତମାନ ସୁଦ୍ଧା ୧୨,୩୭୫ଟି ଆଡ଼ିବନ୍ଧର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ୨୦୧୮-୧୯ ବର୍ଷରେ ଆଉ ଅଧିକ ୨୦୦୦ ଆଡ଼ିବନ୍ଧ ନିର୍ମାଣ କରିବାକୁ ଲକ୍ଷ୍ୟ ରହିଛି ।

୨୬. ୨୦୧୮–୧୯ ବର୍ଷରେ ଅତ୍ୟାଧୁନିକ ଜଳସେଚନ ପ୍ରଣାଳୀ, ଫସଲ–ବିବିଧକରଣ ଏବଂ ଆବର୍ତ୍ତ ଜଳସେଚନ ସଂପର୍କରେ ଅନ୍ତତଃ ୧୦,୦୦୦ କୃଷକଙ୍କୁ ପ୍ରଶିକ୍ଷଣ ପ୍ରଦାନ କରିବା କାର୍ଯ୍ୟକ୍ରମ ରହିଛି । ଗଭୀର ନଳକୂପ ଏବଂ ବୃହତ୍ ଉଠା ଜଳସେଚନ କାର୍ଯ୍ୟକ୍ରମ ଆମ କୃଷକମାନଙ୍କ ଦ୍ୱାରା ବହୁଳ ଭାବେ ଆଦୃତ ହୋଇପାରିଛି । ମୋ ସରକାର ନର୍ଦ୍ଦମା ଜଳ ନିଷ୍କାସନ ବ୍ୟବସ୍ଥାରେ ଉନ୍ନତି ଆଣିବା ନିମନ୍ତେ ଡ୍ରେନ୍ ବିକାଶ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି ଏବଂ ୨୦୧୮–୧୯ ବର୍ଷରେ ୨୫୦ କି.ମି ଡ୍ରେନେଜ୍ ଚ୍ୟାନେଲ୍‌ର ପୁନରୁଦ୍ଧାର କରିବାକୁ ଲକ୍ଷ୍ୟ ରଖିଛନ୍ତି ।

୨୭. ଆଗାମୀ ୫ ବର୍ଷରେ ରାଜ୍ୟରେ ମତ୍ସ୍ୟ ଉତ୍ପାଦନ ଦୁଇଗୁଣ ବୃଦ୍ଧି ନିମନ୍ତେ ଓଡ଼ିଶା ମତ୍ସ୍ୟ ନୀତି କାର୍ଯ୍ୟକାରୀ କରାଯାଉଛି । ରାଜ୍ୟର ସମସ୍ତ ଜିଲ୍ଲାରେ ମତ୍ସ୍ୟଚାଷର ଉନ୍ନତି ନିମନ୍ତେ ବିସ୍ତୃତ କାର୍ଯ୍ୟଖସଡ଼ା ପ୍ରସ୍ତୁତ କରାଯାଇଛି । ୨୦୧୬–୧୭ ବର୍ଷରେ ସାମୁଦ୍ରିକ ଖାଦ୍ୟ ରପ୍ତାନୀ ୨୨୦୫ କୋଟି ଟଙ୍କାକୁ ବୃଦ୍ଧି ପାଇଛି ।

୨୮. ରାଜ୍ୟରେ ଗୋଷ୍ଠୀ ଦୁର୍ଘଟଣା ବୀମା ଯୋଜନାରେ ୧୧.୫୦ ଲକ୍ଷ ମତ୍ସ୍ୟଜୀବୀମାନଙ୍କୁ ବୀମାଭୁକ୍ତ କରାଯାଇଛି । ପାଣିପାଗ ସଂପର୍କରେ ସତର୍କ ସୂଚନା, ବଜାର ଦର ଏବଂ ବୈଷୟିକ ପରାମର୍ଶ କ୍ଷେତ୍ରରେ ଉପଯୋଗୀ ମୋବାଇଲ ସିମ୍‌କାର୍ଡ ରାଜ୍ୟର ୩.୭୫ ଲକ୍ଷ ମତ୍ସ୍ୟଜୀବୀ ଏବଂ ମତ୍ସ୍ୟଚାଷୀମାନଙ୍କୁ ବିତରଣ କରାଯାଇଛି । ଲୋକସେବା ଅଧିକାର ପୋର୍ଟାଲ ମାଧ୍ୟମରେ ମତ୍ସ୍ୟଚାଷୀ ଏବଂ ମତ୍ସ୍ୟଜୀବୀମାନଙ୍କୁ ଅନ୍‌ଲାଇନ୍ ସେବା ଯୋଗାଇ ଦିଆଯାଉଛି ।

୨୯. ରାଜ୍ୟ ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବୀ ହେବା ସହିତ ବଳକା ରାଜ୍ୟ ହୋଇପାରିଛି । ୨୦୧୮–୧୯ ବର୍ଷରେ ଦୈନିକ ଦୁଗ୍ଧ ଉତ୍ପାଦନ ହାରାହାରି ୬.୫୩ ଲକ୍ଷ ଲିଟରକୁ ପହଞ୍ଚିବା ଆଶା କରାଯାଉଛି । ୨୦୧୭–୧୮ ବର୍ଷରେ ମୋ ସରକାର ବିଭିନ୍ନ ପ୍ରାଣୀଧନ ରୋଗ ନିୟନ୍ତ୍ରଣ କାର୍ଯ୍ୟକ୍ରମ ଅଧୀନରେ ପ୍ରମୁଖ ପ୍ରାଣୀଧନ ରୋଗଗୁଡ଼ିକର ନିୟନ୍ତ୍ରଣ ଦିଗରେ ଫଳପ୍ରଦ ପଦକ୍ଷେପ ନେଇପାରିଛି । ଆଘାତପ୍ରାପ୍ତ ଏବଂ ଅସୁସ୍ଥ ବୁଲା ପ୍ରାଣୀସଂପଦର ଆପଦକାଳୀନ ଚିକିତ୍ସା ସେବା ଯୋଗାଇଦେବା ନିମନ୍ତେ ଆମ ରାଜ୍ୟରେ ପ୍ରଥମ ଥର ପାଇଁ ରାଜ୍ୟର ନିଜସ୍ୱ ଯୋଜନାରେ 'ପ୍ରାଣୀସଂପଦ ସହାୟତା ଓ ପ୍ରାଣୀରୋଗ ଆମ୍ବୁଲାନ୍ସ ସେବା କାର୍ଯ୍ୟକ୍ରମ'ରେ ଗଞ୍ଜାମ ଓ କଟକ ଜିଲ୍ଲା ସହରାଞ୍ଚଳ ନିମନ୍ତେ ପରୀକ୍ଷାମୂଳକ ଭାବରେ ଦୁଇଟି ପ୍ରାଣୀଧନ ଆମ୍ବୁଲାନ୍ସ ସେବା ପ୍ରଚଳନ କରାଯାଇଛି ।

୩୦. ଗତ ୨୦୧୫ ମସିହା ନଭେମ୍ବର ମାସଠାରୁ ରାଜ୍ୟରେ ଜାତୀୟ ଖାଦ୍ୟ ନିରାପତ୍ତା ଆଇନ ସଫଳଭାବେ କାର୍ଯ୍ୟକାରୀ ହେଉଅଛି । ଏହି ଖାଦ୍ୟ ନିରାପତ୍ତା ଅଗ୍ରାଧିକାର ଭିତ୍ତିରେ ଚିହ୍ନଟ ହୋଇଥିବା ପରିବାର ଏବଂ ଅନ୍ତ୍ୟୋଦୟ ଅନ୍ନ ଯୋଜନା ବର୍ଗରେ ଚିହ୍ନଟ ହୋଇଥିବା ମୋଟ ୮୬.୫୩ ଲକ୍ଷ ପରିବାରର ୩୨୩.୯୧ ଲକ୍ଷ ହିତାଧିକାରୀଙ୍କୁ ରିହାତି ମୂଲ୍ୟରେ ମାସିକ ମୁଣ୍ଡପିଛା ୫ କି.ଗ୍ରା ଚାଉଳ କିମ୍ବା ଗହମ କିମ୍ବା ଉଭୟ ସାମଗ୍ରୀ କିଲୋ ପ୍ରତି ୧ ଟଙ୍କା ମୂଲ୍ୟରେ ପ୍ରଦାନ କରାଯାଉଛି ଏବଂ ଅନ୍ତ୍ୟୋଦୟ ଯୋଜନା ଅନ୍ତର୍ଗତ ପରିବାରମାନଙ୍କୁ କିଲୋପ୍ରତି ୧ ଟଙ୍କା ମୂଲ୍ୟରେ ମାସିକ ୩୫ କି.ଗ୍ରା ଚାଉଳ କିମ୍ବା ଗହମ ଯୋଗାଇ ଦିଆଯାଉଛି । ୨୦୧୭ ମସିହା ଜୁଲାଇ ମାସରୁ ମୋ ସରକାର ରାଜ୍ୟରେ ଇ–ପଏଣ୍ଟ ବିକ୍ରୟ ବ୍ୟବସ୍ଥା ଜରିଆରେ ୧୨,୬୦୧ ସୁଲଭ ମୂଲ୍ୟ ଦୋକାନକୁ ସ୍ୱୟଂକ୍ରିୟ କରାଇଛି, ଯାହାକି ସାଧାରଣ ବଣ୍ଟନ ଶୈଳୀରେ ପୂର୍ଣ୍ଣ ସ୍ୱଚ୍ଛତା ଆଣିପାରିଛି ।

୩୧. ଗତ ଖରିଫ୍ ବିପଣନ ବର୍ଷ ୨୦୧୬–୧୭ରେ ରାଜ୍ୟ ସରକାର ୫୪.୨୭ ଲକ୍ଷ ମେଟ୍ରିକ୍ ଟନ୍ ରେକର୍ଡ଼ ପରିମାଣର ଧାନ ସଂଗ୍ରହଣ କରିଥିଲେ । ସଂଗୃହୀତ ଧାନର ମୂଲ୍ୟ ବାବଦରେ ରାଜ୍ୟର ୮.୪୭ ଲକ୍ଷରୁ ଅଧିକ ଚାଷୀମାନଙ୍କ ବ୍ୟାଙ୍କ ଖାତାକୁ ପ୍ରାୟ ୭,୯୭୮ କୋଟି ଟଙ୍କା ସିଧାସଳଖ ହସ୍ତାନ୍ତର କରାଯାଇଥିଲା ।

୩୨. ଆମ ରାଜ୍ୟରେ ଦୀର୍ଘଦିନ ଧରି ଏକ ଚିନ୍ତାଜନକ ବିଷୟ ଥିବା ଶିଶୁ ମୃତ୍ୟୁହାର ୨୦୦୫–୦୬ରେ ୬୫ ଥିବାବେଳେ ୨୦୧୫–୧୬ରେ ଏହା ଆଶାତୀତ ଭାବରେ ୪୦କୁ ହ୍ରାସ ପାଇଛି । ଓଡ଼ିଶାର ଜନସାଧାରଣଙ୍କୁ ସୁଲଭ, ସୁଗମ, ନ୍ୟାଯ୍ୟ ତଥା ଉତ୍ତମ ମାନର ସ୍ୱାସ୍ଥ୍ୟସେବା ଏବଂ ବିଶେଷ କରି ସ୍ୱାସ୍ଥ୍ୟସେବାରୁ ବଞ୍ଚିତ କଷ୍ଟସାଧ୍ୟ ଅଞ୍ଚଳରେ ରହୁଥିବା ଲୋକମାନଙ୍କୁ ସ୍ୱାସ୍ଥ୍ୟସେବା ଉପଲବ୍ଧ କରାଇବା ଦିଗରେ ମୋ ସରକାରଙ୍କ ପ୍ରତିବଦ୍ଧତା ଯୋଗୁଁ ଏହା ସମ୍ଭବ ହୋଇପାରିଛି । ରାଜ୍ୟରେ ହ୍ରାସ ପାଉଥିବା ଶିଶୁ କନ୍ୟା ଲିଙ୍ଗଗତ ଅସମାନତା ଦୂର କରିବା ପାଇଁ ମୋ ସରକାର ଅନୁଗୁଳ, ଢ଼େଙ୍କାନାଳ ଏବଂ ଗଞ୍ଜାମ ଜିଲ୍ଲାରେ ଏକ ମିଶନ ଭାବରେ 'ବିଜୁ କନ୍ୟା ରତ୍ନ' ଯୋଜନାର ଶୁଭାରମ୍ଭ କରିଛନ୍ତି ।

୩୩. ଶିଶୁମାନଙ୍କ ସ୍ୱାସ୍ଥ୍ୟ ଓ ପୁଷ୍ଟିସାଧନ ନିମନ୍ତେ ୬ ମାସରୁ ୬ ବର୍ଷ ପର୍ଯ୍ୟନ୍ତ ଶିଶୁମାନଙ୍କୁ ଏବଂ ଗର୍ଭବତୀ ଓ ପ୍ରସୂତୀ ମହିଳାଙ୍କ ପାଇଁ ମୋ ସରକାର ଯୋଗାଇ ଦେଉଥିବା ଶୁଖିଲା ଖାଦ୍ୟସାମଗ୍ରୀ ଏବଂ ଗରମ ରନ୍ଧା ଖାଦ୍ୟର ମୁଣ୍ଡପିଛା ମୂଲ୍ୟ ଡିସେମ୍ବର ୨୦୧୭ରୁ ସଂଶୋଧନ କରିଛନ୍ତି । ମୋ ସରକାର ଅଙ୍ଗନୱାଡ଼ି କର୍ମୀ, ସହାୟିକା ଏବଂ ମିନି ଅଙ୍ଗନୱାଡି କର୍ମୀମାନଙ୍କ ପାଇଁ ଅତିରିକ୍ତ ମାସିକ ଭତ୍ତା ବୃଦ୍ଧି କରି ତାହା ନିଜସ୍ୱ ପାଣ୍ଠିରୁ ଦେବା ପାଇଁ ସ୍ଥିର କରିଛନ୍ତି ।

୩୪. ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କର ସାମର୍ଥ୍ୟ ଓ ଦକ୍ଷତା ବିକାଶ ଏବଂ ଅଧିକରୁ ଅଧିକ ମହିଳାଙ୍କୁ ମିଶନ ଶକ୍ତି ଆନ୍ଦୋଳନରେ ସାମିଲ କରିବାର ଲକ୍ଷ୍ୟ ହାସଲ ନେଇ ଏକ ସ୍ୱତନ୍ତ୍ର ମିଶନ ଶକ୍ତି ନିର୍ଦ୍ଦେଶାଳୟ ସୃଷ୍ଟି କରାଯାଇଛି । ମିଶନ ଶକ୍ତିର ମୋଟାମୋଟି ଲକ୍ଷ୍ୟ ହେଲା ମହିଳାମାନଙ୍କୁ ସାମାଜିକ, ଆର୍ଥିକ ଓ ରାଜନୈତିକ କ୍ଷେତ୍ରରେ ସଶକ୍ତ କରିବା । ଏ ପର୍ଯ୍ୟନ୍ତ ସାରା ଓଡ଼ିଶାରେ ପ୍ରାୟ ୬୦ ଲକ୍ଷ ମହିଳାଙ୍କୁ ୬ ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ସଙ୍ଗଠିତ କରାଯାଇଛି ।

ସଶକ୍ତ ଏବଂ ସୁଦୃଢ଼ ମହିଳା ଗୋଷ୍ଠୀ ଗଠନ କରିବାର ଲକ୍ଷ୍ୟ ରଖାଯାଇଛି, ଯେଉଁମାନେ କି ନିଜେ ବସବାସ କରୁଥିବା ସାମାଜିକ ପରିବେଶର ଅଭିବୃଦ୍ଧିରେ ଯୋଗଦାନ କରିବା ସହିତ ଗୋଷ୍ଠୀର ପ୍ରତ୍ୟେକ ସଦସ୍ୟାଙ୍କୁ ସଶକ୍ତ କରିବେ । ଏଥି ସହିତ ବିକଶିତ ଗୋଷ୍ଠୀ ଏବଂ ମହାସଂଘଗୁଡ଼ିକୁ ସ୍ଥାନୀୟ ଆବଶ୍ୟକତାଭିତ୍ତିକ ଆର୍ଥିକ କାର୍ଯ୍ୟକଳାପ ମାଧ୍ୟମରେ ସଶକ୍ତ କରାଯିବ, ଯଦ୍ୱାରା ଉଭୟ ଗ୍ରାମ ଓ ସହରାଞ୍ଚଳରେ ଅଣୁ ଉଦ୍ୟୋଗ ନେଟ୍ୱାର୍କର ଅଭିବୃଦ୍ଧି ହୋଇପାରିବ ।

୩୫. ନିରନ୍ତର ରୋଜଗାରକ୍ଷମ କାର୍ଯ୍ୟକଳାପରେ ଜଡ଼ିତ ଥିବା ଅଭିବୃଦ୍ଧିଯୋଗ୍ୟ ଗୋଷ୍ଠୀଗୁଡ଼ିକୁ ୧ ପ୍ରତିଶତ ସୁଧ ହାରରେ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଋଣ ମୋ ସରକାର ଯୋଗାଇ ଦେଉଛନ୍ତି । ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ମୂଳ ଆଧାର ଭାବରେ ନେଇ ମହିଳାମାନଙ୍କର ପୂର୍ଣ୍ଣ ସଶକ୍ତିକରଣ ନିମନ୍ତେ ସବୁମତେ ଉଦ୍ୟମ କରାଯିବ । ଜ୍ଞାନବର୍ଦ୍ଧକ ପରିଦର୍ଶନ, ବ୍ୟାଙ୍କ ସଂଯୋଗୀକରଣ, ଦକ୍ଷତା ବିକାଶ, ସାମର୍ଥ୍ୟ ଓ ଔଦ୍ୟୋଗିକ ଦକ୍ଷତା ବିକାଶ ଇତ୍ୟାଦି ମିଶନ ଶକ୍ତି ନିର୍ଦ୍ଦେଶାଳୟର ମୁଖ୍ୟ କାର୍ଯ୍ୟ ।

୩୬. 'ମମତା' ଯୋଜନା ସମସ୍ତ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ କାର୍ଯ୍ୟକାରୀ ହେଉଛି । ଏହାର ଲକ୍ଷ୍ୟ ହେଲା ଗର୍ଭବତୀ ଓ ପ୍ରସୂତୀମାନଙ୍କୁ ଆଂଶିକ ମଜୁରି କ୍ଷତିପୂରଣ ପ୍ରଦାନ, ଯଦ୍ୱାରା ସେମାନେ ଗର୍ଭାବସ୍ଥା ଓ ପ୍ରସବ ପରେ ବିନା ପରିଶ୍ରମରେ ଯଥେଷ୍ଟ ବିଶ୍ରାମ ପାଇବେ । ସମୁଦାୟ ୫ ହଜାର ଟଙ୍କାର ପ୍ରୋତ୍ସାହନ ରାଶି ହିତାଧିକାରୀମାନଙ୍କର ବ୍ୟାଙ୍କ ଆକାଉଣ୍ଟକୁ ସିଧାସଳଖ ହସ୍ତାନ୍ତର କରାଯାଉଛି । ଏହି ଯୋଜନା ଆରମ୍ଭ ହେବା ପରଠାରୁ ୩୦.୮୩ ଲକ୍ଷ ମା' ଏହି ଯୋଜନାରେ ଅନ୍ତର୍ଭୁକ୍ତ ହୋଇଛନ୍ତି ।

୩୭. ମହିଳାମାନଙ୍କୁ ସୁରକ୍ଷା ପ୍ରଦାନ ପାଇଁ କରାଯାଇଥିବା ସମସ୍ତ ଆଇନର କଡାକଡି ପାଳନ, ମହିଳାମାନଙ୍କ ବିରୁଦ୍ଧରେ ହେଉଥିବା ଯେକୌଣସି ରକମର ହିଂସାର ପ୍ରତିରୋଧ ଏବଂ ଏକ ଆଶୁ ନିରାକରଣ ବ୍ୟବସ୍ଥା କରିବା ପାଇଁ ମୋ ସରକାର ଏକ

୨୪ ଘଣ୍ଟିଆ ନିଃଶୁଳ୍କ ମହିଳା ହେଲ୍‌ପ ଲାଇନ୍ ନମ୍ବର ୧୮୧ ସବୁ ଜିଲ୍ଲାଗୁଡ଼ିକରେ କାର୍ଯ୍ୟକାରୀ କରାଇଛନ୍ତି । ଏହି ହେଲ୍‌ପ୍ ଲାଇନ୍ ବ୍ୟବସ୍ଥା ଦ୍ୱାରା ନିର୍ଯାତିତା ମହିଳାମାନଙ୍କୁ ପୋଲିସ୍‌ରେ ଅଭିଯୋଗ ଦାଖଲ, ଚିକିତ୍ସା, ଆଇନ୍ ସହାୟତା ଓ ପରାମର୍ଶ ସୁବିଧା ତୁରନ୍ତ ଯୋଗାଇ ଦିଆଯାଉଛି ।

୩୮. ଚଳିତ ଶିକ୍ଷାବର୍ଷଠାରୁ ସ୍ନାତକ ସ୍ତରରେ ୧୦୦ ସିଟ୍ ବିଶିଷ୍ଟ ଦୁଇଟି ନୂତନ ସରକାରୀ ମେଡିକାଲ୍ କଲେଜ୍ ପଣ୍ଡିତ ରଘୁନାଥ ମୁର୍ମୁ ମେଡ଼ିକାଲ କଲେଜ ଓ ହସ୍‌ପିଟାଲ, ବାରିପଦା ଏବଂ ଶହୀଦ୍ ଲକ୍ଷ୍ମଣ ନାଏକ ମେଡ଼ିକାଲ କଲେଜ ଓ ହସ୍‌ପିଟାଲ୍, କୋରାପୁଟ କାର୍ଯ୍ୟକ୍ଷମ ହୋଇଛି । ମୋ ସରକାର ଆଉ ଦୁଇଗୋଟି ନୂତନ ମେଡିକାଲ କଲେଜ୍ ଓ ହସ୍‌ପିଟାଲ୍, ବାଲେଶ୍ୱର ଓ ବଲାଙ୍ଗୀରଠାରେ ଆସନ୍ତା ବର୍ଷଠାରୁ ଶିକ୍ଷାରମ୍ଭ କରିବା ପାଇଁ ସମସ୍ତ ପଦକ୍ଷେପ ଗ୍ରହଣ କରିଛନ୍ତି ଏବଂ ଏହା ପରେ ଆଉ ୫ ଗୋଟି ନୂତନ ସରକାରୀ ମେଡ଼ିକାଲ କଲେଜ ରାଜ୍ୟର ବିଭିନ୍ନ ଜିଲ୍ଲାରେ ସ୍ଥାପିତ ହେବ ।

୩୯. ୭ଟି ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ସବ୍‌ଡିଭିଜନାଲ୍ ହସ୍‌ପିଟାଲ ଏବଂ ୫ଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର ରୂପେ ଉନ୍ନୀତ କରାଯାଇଛି । ୧୩ ଗୋଟି ନୂତନ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ରାଜ୍ୟର ବିଭିନ୍ନ ଜିଲ୍ଲାରେ ସ୍ଥାପନ କରିବା ପାଇଁ ମଞ୍ଜୁରୀ ପ୍ରଦାନ କରାଯାଇଛି । ଜୟପୁରସ୍ଥିତ ସବ୍‌ଡିଭିଜନାଲ ହସ୍‌ପିଟାଲ୍‌କୁ ଏକ ଜିଲ୍ଲା ସଦର ମହକୁମା ହସ୍‌ପିଟାଲ ଭାବେ ଉନ୍ନୀତ କରାଯାଇଛି । ରାଜ୍ୟରେ ଥିବା ସମସ୍ତ ଜିଲ୍ଲା ସଦର ମହକୁମା ହସ୍‌ପିଟାଲ୍‌ରେ କ୍ୟାନ୍‌ସର ରୋଗୀଙ୍କୁ ମାଗଣାରେ ଚିକିତ୍ସା ଯୋଗାଇଦେବା ନିମନ୍ତେ କେମୋ–ଥେରାପି କେନ୍ଦ୍ରମାନ ପ୍ରତିଷ୍ଠା କରାଯାଉଛି । ଜାତୀୟ ରାଜପଥ ଏବଂ ରାଜ୍ୟ ରାଜପଥରେ ୯ଟି ଟ୍ରମା କେୟାର କେନ୍ଦ୍ର ସ୍ଥାପନ କରାଯିବା ପାଇଁ ଦୃଢ଼ ପଦକ୍ଷେପ ଗ୍ରହଣ କରାଯାଇଛି, ଯାହାକି ସଂକଟ ସମୟରେ ଉପଯୁକ୍ତ ଚିକିତ୍ସା ଯୋଗାଇପାରିବ ।

୪୦. ଆମ ମହିଳାଭିମୁଖୀ ପ୍ରତିବଦ୍ଧତାର ପରିପାଳନ ସ୍ୱରୂପ ମୋ ସରକାର 'ଖୁସି' ନାମରେ ଏକ ନୂତନ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି, ଯେଉଁଥିରେ କି ଷଷ୍ଠରୁ ଆରମ୍ଭ କରି ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାୟ ୧୭ ଲକ୍ଷ ଛାତ୍ରୀଙ୍କୁ ସାନିଟାରୀ ନାପ୍‌କିନ୍ ଯୋଗାଇ ଦିଆଯିବ । ଏଥି ସହିତ ମୋ ସରକାର ଗୋଷ୍ଠୀ ସ୍ତରରେ ମହିଳା ଏବଂ ଝିଅମାନଙ୍କୁ ରିହାତି ଦରରେ ସାନିଟାରୀ ନାପ୍‌କିନ୍ ଯୋଗାଣ ପାଇଁ ସାମାଜିକ ବିପଣନ ବ୍ୟବସ୍ଥାର ପରିସର ବୃଦ୍ଧି କରାଇବେ ।

୪୧. ସ୍ୱାସ୍ଥ୍ୟସେବାକୁ ଅଧିକ ସୁଦୃଢ଼ କରିବା ଲକ୍ଷ୍ୟରେ ମୋ ସରକାର ନିକଟରେ ବିଭିନ୍ନ ନୂତନ ପଦକ୍ଷେପ ଗ୍ରହଣ କରିଛନ୍ତି । ସେଗୁଡ଼ିକ ହେଉଛି – ନିଃଶୁଳ୍କ ରୋଗ ନିରୂପଣ ପାଇଁ 'ନିଦାନ', ବିନା ମୂଲ୍ୟରେ ଡାଏଲିସିସ୍ ସେବା 'ସହାୟ', କ୍ୟାନ୍‌ସର ରୋଗୀମାନଙ୍କ ଜିଲ୍ଲାସ୍ତରୀୟ ବିନାଦେୟରେ କେମୋଥେରାପି ଏବଂ ଡେ–କେଆର, ନିଃଶୁଳ୍କ ସାର୍ବଜନୀନ ଚକ୍ଷୁସେବା, ସହରାଞ୍ଚଳରେ 'ଆମ କ୍ଲିନିକ୍' ମାଧ୍ୟମରେ ବିଶେଷଜ୍ଞ ସେବା ଉପଲବ୍ଧ କରାଇବା, ବିନାମୂଲ୍ୟରେ ରକ୍ତ ସେବା ଓ ରକ୍ତବିକାର ରୋଗୀମାନଙ୍କୁ ପରିବହନ ଭତ୍ତା, ଦୁର୍ଗମ ଅଞ୍ଚଳରୁ ଡାକ୍ତରଖାନାରେ ପ୍ରସବ କରାଇବାକୁ ଆସୁଥିବା ମା'ମାନଙ୍କୁ ୧୦୦୦ ଟଙ୍କା ପରିବହନ ଭତ୍ତା ଏବଂ ଅଗମ୍ୟ, ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଟେଲିମେଡିସିନ୍ ଯୋଗାଇଦେବା ପାଇଁ ଡିଜିଟାଲ ଡିସ୍‌ପେନ୍‌ସାରୀ । ଏହିସବୁ କାର୍ଯ୍ୟକ୍ରମଗୁଡ଼ିକ ଜରିଆରେ ମୋ ସରକାର ଓଡ଼ିଶାର ଜନସାଧାରଣଙ୍କୁ ସାର୍ବଜନୀନ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବାର ଲକ୍ଷ୍ୟ ହାସଲର ନିକଟତର ହୋଇପାରିବେ ବୋଲି ଆଶା କରାଯାଉଛି । ଆସନ୍ତା ଆର୍ଥିକ ବର୍ଷରେ ସମସ୍ତ ଫାଷ୍ଟ ରେଫରାଲ ଇଉନିଟ୍‌ରେ ଥିବା ହେଲ୍ପ ଡେସ୍କଗୁଡ଼ିକୁ କ୍ରିୟାଶୀଳ କରିବା ଏବଂ ସର୍ବସାଧାରଣ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକରେ ସଫେଇ ବ୍ୟବସ୍ଥା, ନିରାପତ୍ତା, ଲଣ୍ଡ୍ରି ଓ ଲିଫ୍ଟ ବ୍ୟବସ୍ଥା ଭଳି ସ୍ୱତନ୍ତ୍ର ସୁବିଧା ଯୋଗାଇ ଦେବା ପାଇଁ ପ୍ରସ୍ତାବ ରହିଛି ।

୪୨. ସାମାଜିକ ସୁରକ୍ଷା କାର୍ଯ୍ୟକ୍ରମ ପ୍ରତି ସ୍ୱତନ୍ତ୍ର ଭାବରେ ଧ୍ୟାନ କେନ୍ଦ୍ରୀଭୂତ କରିବା ପାଇଁ ମୋ ସରକାର 'ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ' ସୃଷ୍ଟି କରିଛନ୍ତି । ଏବେ ମୋ ସରକାର ପ୍ରତି ମାସରେ ୪୩ ଲକ୍ଷ ୪୫ ହଜାର ହିତାଧିକାରୀଙ୍କୁ ପେନ୍‌ସନ୍ ପ୍ରଦାନ କରୁଛନ୍ତି । ୨୦୧୭-୧୮ ବର୍ଷରୁ ଭିନ୍ନକ୍ଷମମାନଙ୍କ ପାଇଁ ସରକାରୀ ଏବଂ ସାଧାରଣ ଉଦ୍ୟୋଗରେ ନିଯୁକ୍ତି ପାଇଁ ସ୍ଥାନ ସଂରକ୍ଷଣ ୩ ରୁ ୪ ପ୍ରତିଶତକୁ ବୃଦ୍ଧି କରାଯାଇଛି ।

୪୩. ମୋ ସରକାର ୨୦୧୭-୧୮ ବର୍ଷରେ ୪୪ ହଜାରରୁ ଊର୍ଦ୍ଧ୍ୱ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କ ପାଇଁ ବାଣୀଶ୍ରୀ ଶିକ୍ଷାବୃତ୍ତି ମଞ୍ଜୁର କରିଛନ୍ତି । ମାନସିକ ଅନଗ୍ରସରଙ୍କ ଚିକିତ୍ସା ଓ ଥଇଥାନ ନିମନ୍ତେ କାର୍ଯ୍ୟରତ ଅନୁଷ୍ଠାନଗୁଡ଼ିକୁ ଚିହ୍ନଟ କରାଯାଇ ବର୍ତ୍ତମାନ ମାନସିକ ଅନଗ୍ରସରଙ୍କ ସାମାଜିକ-ମାନସିକ ଏବଂ ଧନ୍ଦାମୂଳକ ଅଭିବୃଦ୍ଧି କ୍ଷେତ୍ରରେ କାର୍ଯ୍ୟରତ ୪୬ଟି ଅନୁଷ୍ଠାନକୁ ସେମାନଙ୍କର ଏହି କାର୍ଯ୍ୟ ଜାରି ରଖିବା ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଛି ।

୪୪. ଓଡ଼ିଶା ରାଜ୍ୟ ବରିଷ୍ଠ ନାଗରିକ ନୀତି ଅନୁଯାୟୀ ୨୦୧୭-୧୮ ବର୍ଷରେ ବରିଷ୍ଠ ନାଗରିକଙ୍କ ନିମନ୍ତେ 'ଅବଦାନ' ନାମକ ଏକ ବ୍ୟାପକ ଯୋଜନା ଆରମ୍ଭ କରାଯାଇଛି । ବିଶ୍ୱ ବରିଷ୍ଠ ନାଗରିକ ଦିବସ ଅବସରରେ ପ୍ରଥମ ଥର ପାଇଁ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ୯ଜଣ ବରିଷ୍ଠ ନାଗରିକଙ୍କୁ ରାଜ୍ୟସ୍ତରୀୟ ପୁରସ୍କାର ପ୍ରଦାନ କରାଯାଇଛି ।

୪୫. ମୋ ସରକାର କିନ୍ନରଙ୍କୁ ବିଭିନ୍ନ ଯୋଜନାର ସୁଫଳ ପହଞ୍ଚାଇ ସେମାନଙ୍କୁ ସମାଜର ମୁଖ୍ୟସ୍ରୋତରେ ସାମିଲ କରିବା ଉପରେ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ମୋ ସରକାରଙ୍କ ଦ୍ୱାରା କିନ୍ନରଙ୍କ ଉଦ୍ଦେଶ୍ୟରେ 'ସ୍ୱୀକୃତି' ନାମକ ଏକ ନୂତନ ଯୋଜନା ଆରମ୍ଭ କରାଯାଇଛି ।

୪୬. ମୋ ସରକାର ଅଣକୁଶଳୀ, ଅର୍ଦ୍ଧକୁଶଳୀ, କୁଶଳୀ ଏବଂ ଅତି କୁଶଳୀ ବର୍ଗର ଶ୍ରମିକମାନଙ୍କ ସର୍ବନିମ୍ନ ମଜୁରି ବୃଦ୍ଧି କରିଛନ୍ତି । ସେହିଭଳି ୧୫ ଗୋଟି ନିର୍ଦ୍ଦିଷ୍ଟ କର୍ମନିଯୁକ୍ତି କ୍ଷେତ୍ରର ସର୍ବନିମ୍ନ ମଜୁରି ହାରରେ ମଧ୍ୟ ସଂଶୋଧନ କରାଯାଇଛି ।

୪୭. ଶିଶୁ ଶ୍ରମିକ ସମସ୍ୟାକୁ ପ୍ରତିହତ କରିବା ଲକ୍ଷ୍ୟରେ ମୋ ସରକାର ଓଡ଼ିଶାରେ ଶିଶୁ ଶ୍ରମିକ ପ୍ରଥାର ବିଲୋପ ନିମନ୍ତେ ଆନ୍ତରିକତାର ସହ ରାଜ୍ୟ କାର୍ଯ୍ୟାନ୍ୱୟନ ଯୋଜନା କାର୍ଯ୍ୟକାରୀ କରିଛନ୍ତି । ଆନ୍ତଃରାଜ୍ୟ ଦାଦନ ଶ୍ରମିକମାନଙ୍କ ସୁରକ୍ଷା ଓ କଲ୍ୟାଣାର୍ଥେ ମଧ୍ୟ ମୋ ସରକାର ଏକ ରାଜ୍ୟ କାର୍ଯ୍ୟାନ୍ୱୟନ ଯୋଜନା ଅନୁମୋଦନ କରିଛନ୍ତି, ଯାହା ଖୁବ୍‌ଶୀଘ୍ର କାର୍ଯ୍ୟକାରୀ ହେବ । ରାଜ୍ୟ ଶ୍ରମ ନିର୍ଦ୍ଦେଶାଳୟଠାରେ ଦାଦନ ଶ୍ରମିକମାନଙ୍କୁ ସେମାନଙ୍କ ସମସ୍ୟା ସମ୍ବନ୍ଧୀୟ ସହଯୋଗ, ସୂଚନା ଓ ସହାୟତା ପ୍ରଦାନ କରାଯିବା ପାଇଁ ଏକ ଶ୍ରମିକ ସହାୟତା ହେଲ୍ପ ଲାଇନ୍ ସ୍ଥାପନ କରାଯାଇଛି ।

୪୮. ଦୈନ୍ୟ ଦାଦନ ହ୍ରାସ ନିମନ୍ତେ ବଲାଙ୍ଗୀର ଏବଂ ନୂଆପଡ଼ା ଜିଲ୍ଲାରେ ଜୀବିକା ମଡେଲ ପ୍ରସ୍ତୁତି ପାଇଁ ଟାଟା ଟ୍ରଷ୍ଟ ସହ ଏକ ବୁଝାମଣାପତ୍ର ସ୍ୱାକ୍ଷର କରାଯାଇଛି । ଦାଦନ ଖଟିବାକୁ ପ୍ରବାସରେ ଥିବା ଶ୍ରମିକଙ୍କ ପିଲାମାନଙ୍କ ରହିବା ପାଇଁ ବରଗଡ଼, ନୂଆପଡ଼ା, କଳାହାଣ୍ଡି ଏବଂ ବଲାଙ୍ଗୀର ଜିଲ୍ଲାରେ ୧୮୯ଟି ଋତୁକାଳୀନ ହଷ୍ଟେଲ ଖୋଲାଯାଇଛି ।

୪୯. ନିର୍ମାଣ ଶ୍ରମିକ ଏବଂ ସେମାନଙ୍କ ପରିବାର ପାଇଁ ସ୍ୱାସ୍ଥ୍ୟ, ଶିକ୍ଷା, ବିବାହ ଆଦି କ୍ଷେତ୍ରରେ ସାମାଜିକ ନିରାପତ୍ତା ଯୋଗାଇ ଦେବା ସମେତ ନିର୍ମାଣ ଶ୍ରମିକମାନଙ୍କୁ ଦୁର୍ଘଟଣାଜନିତ ବୀମା ସୁବିଧା, ବାଇସାଇକେଲ ଏବଂ କର୍ମକ୍ଷେତ୍ର ପାଇଁ ନିରାପତ୍ତା ସାମଗ୍ରୀ ସହିତ ସହରାଞ୍ଚଳ ନିର୍ମାଣ ଶ୍ରମିକମାନଙ୍କ ପାଇଁ ଏକ ନୂତନ ଯୋଜନା 'ଆଶ୍ରୟ' ହାତକୁ ନିଆଯାଇଛି, ଯଦ୍ୱାରା ସେମାନେ

ସ୍ୱଳ୍ପ ମୂଲ୍ୟରେ ସମସ୍ତ ମୌଳିକ ସୁବିଧା ସହ ସହରାଞ୍ଚଳରେ ଅସ୍ଥାୟୀ ରହଣିର ସୁବିଧା ପାଇପାରିବେ । ମୋ ସରକାର ହିତାଧିକାରୀ ଚୟନରେ ପୂର୍ଣ୍ଣ ସ୍ୱଚ୍ଛତା ଆଣିବା ପାଇଁ ଏକାଧିକ ପଦକ୍ଷେପ ଗ୍ରହଣ କରିବା ସହିତ ଗୃହ ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ପ୍ରୋତ୍ସାହନ ବ୍ୟବସ୍ଥା କରିଛନ୍ତି । ନିର୍ମାଣ ଶ୍ରମିକମାନଙ୍କ ସୁବିଧା ପାଇଁ ମୋ ସରକାର 'ନିର୍ମାଣ ଶ୍ରମିକ ପକ୍କାଘର ଯୋଜନା'ରେ ଗୃହ ନିର୍ମାଣ ସହାୟତା ଏବଂ 'ନିର୍ମାଣ ଶ୍ରମିକ ପେନ୍‌ସନ୍ ଯୋଜନା'ରେ ଅକ୍ଷମ, ବୃଦ୍ଧବୃଦ୍ଧା ଏବଂ ବିଧବା ନିର୍ମାଣ ଶ୍ରମିକମାନଙ୍କୁ ସାମାଜିକ ସୁରକ୍ଷା ସହାୟତା ପ୍ରଦାନ କରୁଛନ୍ତି ।

୫୦. ମୋ ସରକାର ଗ୍ରାମାଞ୍ଚଳରେ ବସବାସ କରୁଥିବା ଜନସାଧାରଣଙ୍କୁ ସାମାଜିକ ନ୍ୟାୟ ପ୍ରଦାନ ଏବଂ ସେମାନଙ୍କର ସର୍ବାଙ୍ଗୀନ ବିକାଶ ନିମନ୍ତେ ଦୃଢ଼ ସଂକଳ୍ପବଦ୍ଧ । ୨୦୧୯ ମସିହା ସୁଦ୍ଧା ରାଜ୍ୟର ସମସ୍ତ କଚ୍ଚା ଘରକୁ ପକ୍କା ଘରରେ ପରିଣତ କରିବା ପାଇଁ ରାଜ୍ୟ ସରକାରଙ୍କ ଲକ୍ଷ୍ୟ ଓ ନିରନ୍ତର ପ୍ରଚେଷ୍ଟା ଫଳରେ ଇତିମଧ୍ୟରେ ଗ୍ରାମାଞ୍ଚଳରେ ଗରିବ ଜନସାଧାରଣଙ୍କ ନିମନ୍ତେ ୧୫ ଲକ୍ଷ ୫୦ ହଜାର ପକ୍କା ଘର ନିର୍ମାଣ କାର୍ଯ୍ୟ ସମ୍ପନ୍ନ ହୋଇଛି ଏବଂ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ସମସ୍ତଙ୍କୁ ପକ୍କା ଘର ଯୋଗାଇଦେବାକୁ ଏକ ମିଶନ ଭାବରେ ରାଜ୍ୟ ସରକାର କାର୍ଯ୍ୟକାରୀ କରୁଛନ୍ତି ।

୫୧. ରାଜ୍ୟ ଅର୍ଥ କମିଶନଙ୍କ ଅନୁଦାନକ୍ରମେ ରାଜ୍ୟର ଗ୍ରାମାଞ୍ଚଳଗୁଡ଼ିକରେ ସର୍ବନିମ୍ନ ମୌଳିକ ଆବଶ୍ୟକତା ପୂରଣ ପାଇଁ କେତେଗୁଡ଼ିଏ ସାମୂହିକ ସ୍ଥାୟୀ ସମ୍ପତ୍ତି ସୃଷ୍ଟି କରାଯାଇଛି । ରାଜ୍ୟର ସମସ୍ତ ଜିଲ୍ଲା, ବ୍ଲକ୍ ଏବଂ ଗ୍ରାମପଞ୍ଚାୟତଗୁଡ଼ିକୁ ଯୋଜନାବଦ୍ଧ ଭାବେ ବିଜୁଳି, ସଡ଼କ ଏବଂ ପାଣି ଯୋଗାଇବା ନିମନ୍ତେ ଅତିରିକ୍ତ ଅନୁଦାନର ବ୍ୟବସ୍ଥା କରାଯାଇଛି । ତୃଣମୂଳ ସ୍ତରରେ ଅର୍ଥନୈତିକ ଅଭିବୃଦ୍ଧି ଏବଂ ସାମାଜିକ ନ୍ୟାୟ ସୁନିଶ୍ଚିତ କରାଇବା ନିମନ୍ତେ କ୍ଷମତାର ବିକେନ୍ଦ୍ରୀକରଣ କରିବା ଲକ୍ଷ୍ୟରେ ୫୯୫ଟି ନୂତନ ଗ୍ରାମପଞ୍ଚାୟତ ଗଠନ କରାଯାଇଛି ।

୫୨. ପାଇପ୍ ମାଧ୍ୟମରେ ସମସ୍ତଙ୍କୁ ନିରାପଦ ପାନୀୟ ଜଳ ଯୋଗାଇଦେବା ମୋ ସରକାରଙ୍କର ଏକ ଅଗ୍ରାଧିକାର । 'ବସୁଧା' ଯୋଜନା ମାଧ୍ୟମରେ ମୋ ସରକାର ଗ୍ରାମାଞ୍ଚଳ ପାନୀୟ ଜଳ କାର୍ଯ୍ୟକ୍ରମକୁ ଏକ ମିଶନ ଭାବରେ କାର୍ଯ୍ୟକାରୀ କରୁଛନ୍ତି । ଗ୍ରାମପଞ୍ଚାୟତ ସଦରମହକୁମାରେ ଏବଂ ପଞ୍ଚାୟତର ଅନ୍ୟ ଗ୍ରାମ ଯେଉଁଠି ଜଳଉତ୍ସ ଚିହ୍ନଟ କରାଯାଇଛି, ଏହି ଭଳି ୧୦୫୧ଟି ଗ୍ରାମରେ ପାଇପ୍ ଯୋଗେ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ଆରମ୍ଭ କରାଯାଇଛି । କୋରାପୁଟ, କନ୍ଧମାଳ, ଝାରସୁଗୁଡ଼ା, ଗଞ୍ଜାମ, ପୁରୀ, କଟକ ଏବଂ ଜଗତସିଂହପୁର ଜିଲ୍ଲାରେ ୭ଟି ମେଗା ପାଇପ୍ ପାନୀୟ ଜଳ ପ୍ରକଳ୍ପ କାର୍ଯ୍ୟ ହାତକୁ ନିଆଯାଇଛି । ୩୯୧ଟି ପାଣିଟାଙ୍କି ବିଭିନ୍ନ ସ୍ଥାନରେ ନିର୍ମାଣ କରାଯାଉଛି । ନୂଆପଡ଼ା ଜିଲ୍ଲାରେ ଫ୍ଲୋରାଇଡ୍ ସଂକ୍ରମିତ ଜଳ ଉତ୍ସ ଅଞ୍ଚଳ ସହିତ ୫୯୭ କୋଟି ଟଙ୍କାର ୬୬ଟି ପ୍ରକଳ୍ପ ଗ୍ରାମାଞ୍ଚଳ ଭିତ୍ତିଭୂମି ଉନ୍ନୟନ ଫଣ୍ଡ (RIDF) ସହାୟତାରେ କରାଯାଉଛି ।

୫୩. ମଜୁରି ମାଧ୍ୟମରେ ନିଯୁକ୍ତି ସୁଯୋଗ, ଆତ୍ମ ନିଯୁକ୍ତି କାର୍ଯ୍ୟକ୍ରମ, ଗରିବଙ୍କ ପାଇଁ ଗୃହ ନିର୍ମାଣ, ଗ୍ରାମ୍ୟ ଭିତ୍ତିଭୂମି ବିକାଶ, ପ୍ରତ୍ୟେକ ଗୃହକୁ ପାନୀୟ ଜଳଯୋଗାଣ ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ଭିତ୍ତିଭୂମି ନିର୍ମାଣ ଆଦି କାର୍ଯ୍ୟକ୍ରମ ଅଭିନବ ଉପାୟରେ କାର୍ଯ୍ୟକାରୀ କରି ଗ୍ରାମାଞ୍ଚଳର ଦାରିଦ୍ର୍ୟ ଦୂରୀକରଣ ପାଇଁ ମୋ ସରକାର କାର୍ଯ୍ୟପନ୍ଥା ନିର୍ଣ୍ଣୟ କରିଛନ୍ତି । ସେବା ଯୋଗାଣ ବ୍ୟବସ୍ଥାରେ ଉନ୍ନତି ସାଧନ ଏବଂ ଅଭିଯୋଗ ନିରାକରଣ ବ୍ୟବସ୍ଥାକୁ ସମୁନ୍ନତ କରିବା ପାଇଁ ବିଭିନ୍ନ ସ୍ତରରେ ନିରନ୍ତର ଉଦ୍ୟମ ଜାରି ରହିଛି ।

୫୪. ମୋ ସରକାର ରାଜ୍ୟରେ ସମତୁଲ ଓ ସମାନୁପାତିକ ଭାବରେ ସମୁନ୍ନତ ସହରୀକରଣ ଅନୁର୍ଭୁକ୍ତି ଲକ୍ଷ୍ୟ ହାସଲ ନିମନ୍ତେ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ଆମ ରାଜ୍ୟର ସହରଗୁଡ଼ିକୁ ବାସୋପଯୋଗୀ କରିବା ସହିତ ସେଗୁଡ଼ିକୁ ଉନ୍ନତ ଓ ପୋଷଣୀୟ କରିବା ନିମନ୍ତେ ସହରାଞ୍ଚଳ ଭିତ୍ତିଭୂମି ଉନ୍ନୟନ ନିମନ୍ତେ ଉଦ୍ୟମ ଜାରି ରହିଛି । ରାଜ୍ୟର ପୌରାଞ୍ଚଳଗୁଡ଼ିକରେ ଗତାନୁଗତିକ ଆଲୋକ ପରିବର୍ତ୍ତେ ଏକ ମହତ୍ତ୍ୱାକାଂକ୍ଷୀ ଶକ୍ତି ସଞ୍ଚୟକାରୀ ରାସ୍ତା ଆଲୋକୀକରଣ ବ୍ୟବସ୍ଥା କାର୍ଯ୍ୟକାରୀ କରାଯାଉଛି

୫୫. ପାଇପ୍ ମାଧ୍ୟମରେ ସମସ୍ତଙ୍କୁ ନିରାପଦ ପାନୀୟ ଜଳ ଯୋଗାଇ ଦେବା ପାଇଁ ମୋ ସରକାର 'ବସୁଧା' ଯୋଜନା ମାଧ୍ୟମରେ ୫୮୯.୨୭ କୋଟି ଟଙ୍କା ବ୍ୟୟରେ ୫୪୬ଟି ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ପୌରାଞ୍ଚଳରେ ପ୍ରତି ଘରକୁ ସୁବିଧାରେ ପାଇପ୍ ସଂଯୋଗ କରିବା ନିମନ୍ତେ 'ଜଳ ଯୋଗାଣ ମେଳା' ପ୍ରତି ୱାର୍ଡରେ ଅନୁଷ୍ଠିତ ହେଉଛି । ୱାର୍ଡ ସ୍ତରରେ ସ୍ଥାନୀୟ ବାସିନ୍ଦାଙ୍କ ମଧ୍ୟରୁ ୱାଟର ମନିଟର ଚିହ୍ନଟ କରାଯାଇ ଜଳ ଓ ପରିମଳ ପରିଚାଳନାରେ ସ୍ଥାନୀୟ ଲୋକଙ୍କ ଭାଗୀଦାରି ସୁଗମ କରାଯାଉଛି ।

୫୬. ମୋ ସରକାର ସହରାଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ସମସ୍ତ ଯୋଜନା ଓ ପରିଯୋଜନାଗୁଡ଼ିକୁ ଏକତ୍ର କରି ଏବଂ ପାଣ୍ଠି ଯୋଗାଡ଼ର ଅସୁବିଧା ଉପଲବ୍ଧିପୂର୍ବକ ସହରାଞ୍ଚଳ ରୂପାନ୍ତରଣ ପଦକ୍ଷେପ 'ଉନ୍ନତି' ଗ୍ରହଣ କରିଛନ୍ତି । ଏହା ଅଧୀନରେ ୧୦,୩୧୬ଟି ଯୋଜନା କାର୍ଯ୍ୟକାରୀ ହେଉଛି ।

୫୭. ମୋ ସରକାର ସାରା ରାଜ୍ୟରେ ବର୍ଜ୍ୟବସ୍ତୁ ପରିଚାଳନା ବିକେନ୍ଦ୍ରୀକରଣ ସୁବିଧା ପ୍ରତିଷ୍ଠା କରିଛନ୍ତି । ଏହି କ୍ଷେତ୍ରରେ ଓଡ଼ିଶା ଦେଶରେ ଅଗ୍ରଗାମୀ ରାଜ୍ୟର ମାନ୍ୟତା ଲାଭ କରିଛି । ଏହି ଆର୍ଥିକ ବର୍ଷ ଶେଷ ସୁଦ୍ଧା 'ଅମୃତ' ଯୋଜନା ଅନ୍ତର୍ଭୁକ୍ତ ଅନ୍ୟୂନ ୫ଗୋଟି ସହରରେ ମଳମୂତ୍ର ବର୍ଜ୍ୟବସ୍ତୁ ପରିଚାଳନା ସୁବିଧା କାର୍ଯ୍ୟକାରୀ ହେବ ।

୫୮. ଗ୍ରାମାଞ୍ଚଳରେ ଉନ୍ନତ ଗମନାଗମନ ସୁବିଧା ଯୋଗାଇଦେବା ଓ ଭିତ୍ତିଭୂମି ନିର୍ମାଣ ପାଇଁ ମୋ ସରକାର ବିଭିନ୍ନ ଯୋଜନାମାନ କାର୍ଯ୍ୟକାରୀ କରୁଛନ୍ତି । ୨୦୧୭-୧୮ରେ ବିଜୁ ସେତୁ ଯୋଜନା, ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି, ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା ଓ ମୁଖ୍ୟମନ୍ତ୍ରୀ ସଡ଼କ ଯୋଜନା ମାଧ୍ୟମରେ ୮୦୦୦ କିଲୋମିଟର ଦୀର୍ଘ ଗ୍ରାମ୍ୟ ରାସ୍ତା ଓ ୧୪୫ଟି ପୋଲ ନିର୍ମାଣ କାର୍ଯ୍ୟ ସମାପ୍ତ ହେବ । ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ୨୦୧୭-୧୮ ବର୍ଷରେ କୋଠାବାଡ଼ି ନିର୍ମାଣ କ୍ଷେତ୍ରରେ ୧୭ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟ, ଏକଶତ ଶଯ୍ୟା ବିଶିଷ୍ଟ ୯୩ଟି ଛାତ୍ରୀନିବାସ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ୬୫୮ଟି କୋଠାବାଡ଼ି, ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗର ୧୨୨ଟି କୋଠାବାଡ଼ିର ନିର୍ମାଣ କାର୍ଯ୍ୟ ସମାପ୍ତ ହେବ । ୨୦୧୮-୧୯ ବର୍ଷରେ ବିଭିନ୍ନ ଯୋଜନାରେ ଅଧିକ ୧୫୦ଟି ପୋଲ ଓ ୧୪,୨୩୦ କିଲୋମିଟର ଗ୍ରାମ୍ୟ ରାସ୍ତା ଏବଂ ବିଭିନ୍ନ ବିଭାଗର ୫୪୦ଟି କୋଠାବାଡ଼ି ନିର୍ମାଣ ଲକ୍ଷ୍ୟ ରଖାଯାଇଛି ।

୫୯. ମୋ ସରକାର ରାସ୍ତା ସଂଯୋଗୀକରଣରେ ଅନେକ ମାଇଲଖୁଣ୍ଟ ହାସଲ କରିଛନ୍ତି । ପ୍ରତ୍ୟେକ ଦିନ ନିର୍ମାଣ ବିଭାଗ ହାରାହାରି ୨.୧ କିଲୋମିଟର ପରିମିତ ରାସ୍ତାର ଉନ୍ନତି କରିଛନ୍ତି ଏବଂ ବାର୍ଷିକ ୨୦ଟି ବୃହତ୍ ସେତୁର ନିର୍ମାଣକାର୍ଯ୍ୟ ପୂର୍ଣ୍ଣାଙ୍ଗ କରିଛନ୍ତି । ମୋଟାମୋଟି ଭାବରେ ୨୦୦୦ ମସିହାଠାରୁ ଏ ପର୍ଯ୍ୟନ୍ତ ୩୪୩ ଟି ସେତୁ, ୯ଟି ଓଭରବ୍ରିଜ୍, ୩ଟି ଫ୍ଲାଏ ଓଭରର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ଏବଂ ୧୩,୦୯୦ କି.ମି. ରାସ୍ତାର ଉନ୍ନତିସାଧନ କରାଯାଇଛି । ଗୁରୁପ୍ରିୟା ସେତୁର ନିର୍ମାଣ କାର୍ଯ୍ୟ ପରିବର୍ଦ୍ଧିତ ଅଟକଳ ୧୮୭.୨୫ କୋଟି ଟଙ୍କାରେ ଇ.ପି.ସି ମୋଡ୍‌ରେ ଚାଲୁଅଛି । ଏହା ଯଥାଶୀଘ୍ର ସଂପୂର୍ଣ୍ଣ ହେବ ।

୬୦. ମୋ ସରକାର ୪ ଲେନ୍ ବିଶିଷ୍ଟ ୬୫୦.୬୪ କି.ମି. ଦୈର୍ଘ୍ୟର ବିଜୁ ଏକ୍ସପ୍ରେସ୍ ୱେ ନିର୍ମାଣ କରୁଛନ୍ତି । ଏହା ରାଜ୍ୟର ପଶ୍ଚିମ ଓଡ଼ିଶା ଓ କେ.ବି.କେ ଜିଲ୍ଲାଗୁଡ଼ିକ ମଧ୍ୟ ଦେଇ ରାଉରକେଲା ଓ ଜଗଦଳପୁରକୁ ସଂଯୋଗ କରିବ । ୬୫୦ କି.ମି. ଦୈର୍ଘ୍ୟ ବିଶିଷ୍ଟ ମୋଟ୍ ରାସ୍ତା ମଧ୍ୟରୁ ୧୮୩.୨୦ କି.ମି. ଜାତୀୟ ରାଜପଥ ଅଟେ ଓ ଏହାର ଉନ୍ନତିକରଣ କରାଯାଉଛି ଏବଂ ୧୬୦ କି.ମି. ପରିମିତ ସମ୍ବଲପୁର–ରାଉରକେଲା ରାସ୍ତା ପୂର୍ଣ୍ଣାଙ୍ଗ ହୋଇ ଓଡ଼ିଶାର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ହୋଇଅଛି ।

୬୧. ରାଜ୍ୟର ବିଦ୍ୟୁତ୍ ଉପଭୋକ୍ତାମାନଙ୍କୁ ସୁଲଭ ଦରରେ ୨୪ ଘଣ୍ଟିଆ ଅବିରତ ଉନ୍ନତମାନର ବିଦ୍ୟୁତ୍ ଶକ୍ତି ଯୋଗାଇଦେବା ପାଇଁ ମୋ ସରକାର ଏକ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରି ବିଦ୍ୟୁତ୍ ଶକ୍ତି ଉତ୍ପାଦନ ବୃଦ୍ଧି ଏବଂ ବିଦ୍ୟୁତ୍ ସରବରାହ କ୍ଷମତା ବୃଦ୍ଧି ତଥା ବିଦ୍ୟୁତ୍ ଶକ୍ତି ବଣ୍ଟନ ଭିତ୍ତିଭୂମି ନିର୍ମାଣ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ସଂପନ୍ନ କରୁଛନ୍ତି ।

୬୨. ଓଡ଼ିଶା ଜଳ ବିଦ୍ୟୁତ୍ ନିଗମ ହୀରାକୁଦ, ଚିପିଲିମା ଏବଂ ବାଲିମେଳା ଜଳ ବିଦ୍ୟୁତ୍ କେନ୍ଦ୍ରର ନବୀକରଣ, ପୁନରୁଦ୍ଧାର ଏବଂ ଦକ୍ଷତା ବୃଦ୍ଧି ଦ୍ୱାରା ଜଳ ବିଦ୍ୟୁତ୍ ଉତ୍ପାଦନ ବୃଦ୍ଧି କାର୍ଯ୍ୟକ୍ରମ ହାତକୁ ନେଇଛି ।

୬୩. ମୋ ସରକାର ସବୁଜ ଶକ୍ତିର ବିକାଶ ନିମନ୍ତେ ଆଗ୍ରହୀ । ଅଣପାରମ୍ପରିକ ଉତ୍ସରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ତ୍ୱରାନ୍ୱିତ କରାଇବା ପାଇଁ ଅଣପାରମ୍ପରିକ ଶକ୍ତି ନୀତି ପ୍ରଣୟନ କରାଯାଇଅଛି । ମନମୁଣ୍ଡାଠାରେ ୨୦ ମେଗାୱାଟ୍ ବିଶିଷ୍ଟ ସୌର ପ୍ରକଳ୍ପ ସଫଳତାର ସହ କାର୍ଯ୍ୟକ୍ଷମ ହୋଇପାରିଛି ଏବଂ କଟକ ଓ ଭୁବନେଶ୍ୱର ଦ୍ୱୈତ ନଗରର ସମସ୍ତ ସରକାରୀ ଗୃହର ଛାତ ଉପରେ ୪ ମେଗାୱାଟ୍ ବିଶିଷ୍ଟ ସୌର ପ୍ରକଳ୍ପ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାକୁ ଯାଉଛି । ମୋ ସରକାର ରାଜ୍ୟର ୧୫ଟି ସହରର ସରକାରୀ ଗୃହର ଛାତ ଉପରେ ସୌର ପ୍ରକଳ୍ପ କାର୍ଯ୍ୟକାରୀ କରାଇବା ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି । ରାଜ୍ୟରେ ଶକ୍ତି ସଂରକ୍ଷଣ ତଥା ଚାହିଦା ପରିପୂରଣ କାର୍ଯ୍ୟ ସଫଳ ଭାବରେ କରାଯାଇଛି । ଓଡ଼ିଶା ଶକ୍ତି ସଂରକ୍ଷଣ କୋଠାବାଡ଼ି ଅଧିନିୟମ (OECBC) ଅଣାଯାଇ କୋଠାବାଡ଼ିରେ ଶକ୍ତି ସଂରକ୍ଷଣ ଉପକ୍ରମ କାର୍ଯ୍ୟକାରୀ କରାଯାଉଛି ।

୬୪. ବିଦ୍ୟୁତ୍ ସରବରାହରେ ଥିବା ଅସଂଗତିଗୁଡ଼ିକ ଦୀର୍ଘକାଳୀନ ଭିତ୍ତିରେ ସୁଧାରି ବିଦ୍ୟୁତ ଉତ୍ପାଦନ କେନ୍ଦ୍ରରୁ ଲୋଡ୍ ସେଣ୍ଟରଗୁଡ଼ିକୁ ଅବାଧ ବିଦ୍ୟୁତ ଯୋଗାଣ ନିଶ୍ଚିତ କରିବା ନିମନ୍ତେ ଓଡ଼ିଶା ଶକ୍ତି ସରବରାହ ନିଗମ ବିଦ୍ୟୁତ୍ ସରବରାହ ଲାଇନ୍ ଏବଂ ଗ୍ରୀଡ୍ ସବ୍‌ଷ୍ଟେସନଗୁଡ଼ିକର କ୍ଷମତାବୃଦ୍ଧି, ଉନ୍ନତିକରଣ ଏବଂ ଆଧୁନିକୀକରଣ କାର୍ଯ୍ୟ ହାତକୁ ନେଇଛନ୍ତି । ଏହାଦ୍ୱାରା ରେକର୍ଡ ୯୯.୯୮ ପ୍ରତିଶତ ଉପଲବ୍ଧ ହାସଲ କରାଯିବା ସହିତ ଏବଂ ସରବରାହ କ୍ଷତିକୁ ଶତକଡ଼ା ୩.୫୮ରୁ ଶତକଡ଼ା ୩.୪୦କୁ ହ୍ରାସ କରାଯାଇପାରିଛି । ପୁନଶ୍ଚ, ୪୭୩ ପ୍ରାଇମେରୀ ସବ୍‌ଷ୍ଟେସନ୍ ନିର୍ମାଣାଧୀନ ଅବସ୍ଥାରେ ଅଛି । ବିଦ୍ୟୁତ୍ ପରିବହନ ବ୍ୟବସ୍ଥାର ଦୃଢ଼ୀକରଣ ସହିତ ଏହି ୩୩/୧୧ କେ.ଭି. ସବ୍‌ଷ୍ଟେସନ୍‌ଗୁଡ଼ିକ କାର୍ଯ୍ୟକ୍ଷମ ହେଲେ ଆମେ ରାଜ୍ୟର ସମସ୍ତ ବିଦ୍ୟୁତ୍ ଉପଭୋକ୍ତାମାନଙ୍କୁ ଉନ୍ନତମାନର ନିରବଚ୍ଛିନ୍ନ ଶକ୍ତି ଯୋଗାଇଦେବାରେ ସକ୍ଷମ ହେବୁ ।

୬୫. କଟକ ଓ ଭୁବନେଶ୍ୱର ସହରର ବିଦ୍ୟୁତ୍ ବଣ୍ଟନ ବ୍ୟବସ୍ଥାର ସୁଦୃଢ଼ୀକରଣ ନିମନ୍ତେ ସ୍କ୍ରିପ୍ସ (State Capital Region Improvement of Power System) ଯୋଜନା ମାଧ୍ୟମରେ ଦୁଇଗୋଟି ପର୍ଯ୍ୟାୟରେ ଏଚ୍‌ଟି ଓ ଇଏଚ୍‌ଟି ଭୂତଳ କେବୁଲ୍ ଦ୍ୱାରା ବିଦ୍ୟୁତ୍ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଅଛି । ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ ୨୦୧୯–୨୦ ସୁଦ୍ଧା ସମ୍ପୂର୍ଣ୍ଣ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

୬୬. ଗ୍ରାମାଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷାର ସୁଯୋଗ ପ୍ରଦାନ ନିମନ୍ତେ ପ୍ରତ୍ୟେକ ବ୍ଲକ୍‌ରେ ଗୋଟିଏ ଓଡ଼ିଶା ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିବାକୁ ମୋ ସରକାର ଅତ୍ୟନ୍ତ ଆଗ୍ରହୀ । ବର୍ତ୍ତମାନ ସୁଦ୍ଧା, ୨୧ଟି ଜିଲ୍ଲାରେ ୧୬୦ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଖୋଲାଯାଇଛି ଏବଂ ଏସବୁ ବିଦ୍ୟାଳୟଗୁଡ଼ିକରେ ୪୦,୪୦୯ ପିଲା ଗୁଣାତ୍ମକ ଶିକ୍ଷା ଆହରଣ କରୁଛନ୍ତି । ଅଧାରୁ ସ୍କୁଲ୍ ଛାଡୁଥିବା ପିଲାଙ୍କୁ ପୁନଃ ବିଦ୍ୟାଳୟ ପ୍ରତ୍ୟାବର୍ତ୍ତନ ନିମନ୍ତେ ଉତ୍ସାହିତ କରିବାକୁ ଏବଂ ଏହି ଧରଣର ପିଲା ଯେଉଁମାନେ ବିଦ୍ୟାଳୟ ଛାଡିଛନ୍ତି ବା ଆନୁଷ୍ଠାନିକ ଶିକ୍ଷାଲାଭରୁ ବଂଚିତ ହୋଇଛନ୍ତି, ସେମାନଙ୍କୁ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ ଉତ୍ତୀର୍ଣ୍ଣ କରାଇବାରେ ସକ୍ଷମ କରିବାକୁ ତଥା ସେମାନଙ୍କୁ ଜୀବିକା ନିର୍ବାହ ସୁଯୋଗ ଦେବାକୁ ଓଡିଶାର ୩୦ଗୋଟି ଜିଲ୍ଲାର ୩୪୪ଟି କେନ୍ଦ୍ରରେ ରାଜ୍ୟ ମୁକ୍ତ ଶିକ୍ଷା ପ୍ରତିଷ୍ଠାନ (ଷ୍ଟେଟ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଓପନ୍ ସ୍କୁଲିଙ୍ଗ୍) ଆରମ୍ଭ କରାଯାଇଛି । ଏ ପର୍ଯ୍ୟନ୍ତ ୪୯,୧୬୫ ପିଲା ଏଗୁଡିକରେ ନାମ ଲେଖାଇଛନ୍ତି ଏବଂ ୨୮,୬୮୭ ଜଣ ପିଲାଙ୍କୁ ମାଟ୍ରିକ୍ ପାସ୍ ପ୍ରମାଣପତ୍ର ପ୍ରଦାନ କରାଯାଇଛି ।

୬୭. ମୋ ସରକାର ୨୦୧୭–୧୮ ବର୍ଷରେ ୧୪୭.୫୩ କୋଟି ଟଙ୍କା ବ୍ୟୟରେ ନବମ ଶ୍ରେଣୀର ୫,୬୭,୪୨୩ ଜଣ ପିଲାଙ୍କୁ ସାଇକେଲ୍ ଯୋଗାଇ ଦେଇଛନ୍ତି ଏବଂ ପ୍ରଥମରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପଢୁଥିବା ୪୪,୦୪,୫୪୧ ଜଣ ପିଲାଙ୍କୁ ବିନା ମୂଲ୍ୟରେ ସ୍କୁଲ୍ ପୋଷାକ ପ୍ରଦାନ କରିଛନ୍ତି । ବିଦ୍ୟାଳୟରେ ଉପସ୍ଥାନ ବୃଦ୍ଧି, ପାଠପଢା ଜାରି ରଖିବା ଏବଂ ପିଲାମାନଙ୍କୁ ପଠନ ଅଭ୍ୟାସ ପ୍ରତି ଉତ୍ସାହିତ କରିବା ଲକ୍ଷ୍ୟରେ ପ୍ରଥମରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢୁଥିବା ପିଲାମାନଙ୍କୁ ଶିକ୍ଷା ସାମଗ୍ରୀ ରହିଥିବା କିଟ୍ ପ୍ରଦାନ କରାଯାଉଛି ।

୬୮. ୨୦୧୮–୧୯ ବର୍ଷରେ, ଓଡିଆ ଭାଷା ଅଧ୍ୟୟନ ପ୍ରତି ପିଲାମାନଙ୍କୁ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ଦଶମ ପରୀକ୍ଷାରେ ଓଡିଆ ବିଷୟବସ୍ତୁରେ ସର୍ବାଧିକ ନମ୍ବର ରଖିଥିବା ପ୍ରତି ବ୍ଲକ୍‌ର ୧୦ ଜଣ, ପ୍ରତି ବିଜ୍ଞାପିତ ଅଞ୍ଚଳ ପରିଷଦର ୫ଜଣ, ପୌର ପରିଷଦ ଅଞ୍ଚଳର ୧୦ ଜଣ ଏବଂ ମହାନଗର ନିଗମର ୨୦ ଜଣ ଲେଖାଏଁ କୃତୀ ଛାତ୍ରଛାତ୍ରୀଙ୍କୁ ଏକକାଳୀନ ୫୦୦୦ ଟଙ୍କାର ଓଡିଆ ଭାଷା ବୃତ୍ତି ପୁରସ୍କାର ଦିଆଯିବାକୁ ସ୍ଥିର ହୋଇଛି । ସେହିପରି, ରାଜ୍ୟରେ ପ୍ରତି ବ୍ଲକ୍ ଏବଂ ମହାନଗର ନିଗମରୁ ୧୦୦, ପୌର ପରିଷଦରୁ ୫୦ ଏବଂ ବିଜ୍ଞାପିତ ଅଞ୍ଚଳ ପରିଷଦରୁ ୨୦ଜଣ ଲେଖାଏଁ ଦଶମ ଶ୍ରେଣୀ ପରୀକ୍ଷାରେ ସର୍ବାଧିକ ନମ୍ବର ରଖିଥିବା ୪୦,୦୦୦ କୃତୀ ଛାତ୍ରଛାତ୍ରୀମାନଙ୍କୁ ଏକକାଳୀନ ୫୦୦୦ ଟଙ୍କାର ମୁଖ୍ୟମନ୍ତ୍ରୀ ମେଧାବୃତ୍ତି ପ୍ରଦାନ କରାଯିବ ।

୬୯. ଓଡ଼ିଶାକୁ ଦେଶର ଏକ ପ୍ରମୁଖ ଜ୍ଞାନ କେନ୍ଦ୍ର ରୂପେ ଗଢ଼ି ତୋଳିବା ସହିତ ଗୁଣାତ୍ମକ ଶିକ୍ଷା ପ୍ରବର୍ତ୍ତନ ନିମନ୍ତେ ଓଡ଼ିଆ ବିଶ୍ୱବିଦ୍ୟାଳୟ ବିଲ୍ ଏବଂ ଓଡ଼ିଶା ରାଜ୍ୟ ଉଚ୍ଚଶିକ୍ଷା ପରିଷଦ ଗଠନ କରି ମୋ ସରକାର ପ୍ରମୁଖ ପ୍ରଶାସନିକ ଓ ଶିକ୍ଷା ସଂସ୍କାରଗୁଡ଼ିକୁ ହାତକୁ ନେଇଛନ୍ତି । ସମସ୍ତ ବର୍ଗର ଛାତ୍ରଛାତ୍ରୀ ବିଶେଷ କରି ଅସୁବିଧାରେ ରହୁଥିବା ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଉଚ୍ଚଶିକ୍ଷାର ସୁଯୋଗ ଦେବା ପାଇଁ ଓଡ଼ିଶା ଉଚ୍ଚଶିକ୍ଷା କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରାଯାଇଛି । ନିମ୍ନ ସ୍ନାତକ +୨ ସ୍ତରରେ ପସନ୍ଦ ଆଧାରିତ କ୍ରେଡ଼ିଟ୍ ବ୍ୟବସ୍ଥା ପ୍ରଚଳନ ଯୋଗୁଁ ରାଜ୍ୟର ସୁଦୂର ଏବଂ ଜନଜାତି ଅଞ୍ଚଳରେ ଅବସ୍ଥିତ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଟିଉଟୋରିଆଲ ସହାୟତା ଯୋଗାଇ ଦିଆଯିବ ।

୭୦. ଛାତ୍ରଛାତ୍ରୀମାନଙ୍କ ନମନୀୟ ଦକ୍ଷତା ବୃଦ୍ଧି ନିମନ୍ତେ ମୋ ସରକାର ସରକାରୀ ଓ ବେସରକାରୀ ମହାବିଦ୍ୟାଳୟମାନଙ୍କରେ ୧୦୮ଟି 'ଭାଷା–ତଥା–ଯୋଗାଯୋଗ ପରୀକ୍ଷାଗାର' ପ୍ରତିଷ୍ଠା କରିଛନ୍ତି । ''ବିଜୁ ଯୁବ ସଶକ୍ତିକରଣ ଯୋଜନା''ରେ +୨ ପରୀକ୍ଷାରେ

ଉତ୍ତୀର୍ଣ୍ଣ ହୋଇଥିବା ଗରିବ ତଥା ମେଧାବୀ ଛାତ୍ରଛାତ୍ରୀମାନଙ୍କୁ ୭୦,୦୦୦ରୁ ଊର୍ଦ୍ଧ୍ୱ ଲାପ୍‌ଟପ୍ ଯୋଗାଇ ଦିଆଯାଇଛି । ଓଡ଼ିଶା ରାଜ୍ୟ ଯୁବନୀତି –୨୦୧୩ ଅନୁଯାୟୀ ମହାବିଦ୍ୟାଳୟ ଛାତ୍ରୀମାନଙ୍କ ନିମନ୍ତେ ବହୁବିଧ ଆତ୍ମରକ୍ଷା କୌଶଳ କାର୍ଯ୍ୟକ୍ରମ ମୋ ସରକାର ଆରମ୍ଭ କରିଛନ୍ତି ।

୭୧. ମୋ ସରକାର ଉଚ୍ଚ ଶିକ୍ଷାନୁଷ୍ଠାନରେ ଓଡ଼ିଆ ଭାଷାର ପ୍ରସାର ଏବଂ ସଂରକ୍ଷଣ ପାଇଁ ଏକାଧିକ ପଦକ୍ଷେପ ଗ୍ରହଣ କରିଛନ୍ତି । ଯଥା ଓଡ଼ିଆରେ ସ୍ନାତକ ଏବଂ ସ୍ନାତକୋତ୍ତର ଶିକ୍ଷା ଗ୍ରହଣ ପାଇଁ ଫିସ୍ ଛାଡ଼, ଓଡ଼ିଆରେ ବ୍ୟାସକବି ଫକୀର ମୋହନ ଛାତ୍ରବୃତ୍ତି, ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ୟୁଜିସି ଧାରାରେ ଗବେଷଣା, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଓଡ଼ିଆ ଭାଷା ଓ ସାହିତ୍ୟ ଉପରେ ନିୟମିତ କର୍ମଶାଳା ଓ ତହିଁର ନିଷ୍କର୍ଷ ପ୍ରକାଶନ ଏବଂ ପିଏଚ୍‌ଡ଼ି ସିଟ୍ ବୃଦ୍ଧି । ଉଚ୍ଚଶିକ୍ଷା ବିଭାଗର ରାଜ୍ୟ ଏନ୍‌ଏସ୍‌ଏସ୍ ସେଲ୍ ସାମାଜିକ ସେବା କ୍ଷେତ୍ରରେ ଅତ୍ୟନ୍ତ ଉତ୍ତମ ପ୍ରଦର୍ଶନ ପରିପ୍ରେକ୍ଷୀରେ ୨୦୧୬–୧୭ ମସିହା ପାଇଁ ୩ଟି ମର୍ଯ୍ୟାଦାସମ୍ପନ୍ନ ପୁରସ୍କାର ଗ୍ରହଣ କରିଛି ।

୭୨. ମୋ ସରକାର ସଂପ୍ରତି ରାଜ୍ୟରେ ଦ୍ରୁତ ଶିଳ୍ପାୟନ ପରିପ୍ରେକ୍ଷୀରେ ନିଯୁକ୍ତି ସୁଯୋଗ ସୃଷ୍ଟି ନିମନ୍ତେ ବୈଷୟିକ ଶିକ୍ଷା ଓ ଦକ୍ଷତା ତାଲିମ କ୍ଷେତ୍ରର ବିକାଶ ଓ ସଂପ୍ରସାରଣ ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି । ଡିପ୍ଲୋମା ଓ ଆଇଟିଆଇ ଛାତ୍ରଛାତ୍ରୀମାନଙ୍କୁ ନିଯୁକ୍ତି ପ୍ରଦାନ କରିବା ନିମନ୍ତେ ଏକ କେନ୍ଦ୍ରୀୟ ନିଯୁକ୍ତି ସେଲ୍ ପ୍ରତିଷ୍ଠା କରାଯାଇଛି । ବିଭିନ୍ନ ଛାତ୍ରହିତୈଷୀ ଯୋଜନା ଯଥା, କୋଠା ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକମାନଙ୍କ ସନ୍ତାନ ସନ୍ତତିଙ୍କୁ ବର୍ଦ୍ଧିତ ହାରରେ ବୃତ୍ତି, ସରକାରୀ ଆଇଟିଆଇରେ ଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ନିମନ୍ତେ 'ସୁଦକ୍ଷା', ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀଙ୍କ ପାଇଁ ଟ୍ୟୁସନ ଫି ଛାଡ, ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନରେ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କ ପାଇଁ ଦେୟମୁକ୍ତ ତାଲିମ ପ୍ରଦାନ କରାଯାଇ ଅବହେଳିତ ବର୍ଗର ଛାତ୍ରଛାତ୍ରୀମାନଙ୍କ ଅନ୍ତର୍ଭୁକ୍ତିକରଣ ପାଇଁ ଉଦ୍ୟମ କରାଯାଉଛି ।

୭୩. ୨୦୧୬ ମସିହାରୁ ଓଡ଼ିଶା ଦକ୍ଷତା ମିଶନ ଅଧୀନରେ ଓଡ଼ିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷ ଗଠନ କରାଯାଇଛି । ସ୍କିଲ୍‌ଡ–ଇନ୍–ଓଡ଼ିଶାକୁ ବାସ୍ତବ ରୂପ ଦେବା ପାଇଁ ଏହି କର୍ତ୍ତୃପକ୍ଷ ଦକ୍ଷତା ବିକାଶ ନୀତି ଓ କାର୍ଯ୍ୟକ୍ରମର ପରାମର୍ଶ, ସମନ୍ୱୟ ଓ ତଦାରଖ କରୁଛନ୍ତି । ମୋ ସରକାର ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନା ମାଧ୍ୟମରେ ବିଭିନ୍ନ ବିଭାଗର ଦକ୍ଷତା ବିକାଶ କାର୍ଯ୍ୟକ୍ରମକୁ ସମ୍ମିଳିତ କରି ଏକ ଦକ୍ଷତା ବିକାଶ ଉପକ୍ରମ ଆରମ୍ଭ କରିଛନ୍ତି । ଏଥିରେ ପ୍ରତି ଗ୍ରାମପଞ୍ଚାୟତରୁ ୧୫୦ ଜଣ ଯୁବକଙ୍କୁ ତାଲିମ ଦିଆଯାଇ ନିଯୁକ୍ତି ସୁଯୋଗ ଦିଆଯିବ । ଆଗାମୀ ୫ ବର୍ଷ ମଧ୍ୟରେ ୧୦ ଲକ୍ଷ ୧୦ ହଜାର ଯୁବକଙ୍କୁ ତାଲିମ ପ୍ରଦାନ ନିମନ୍ତେ ଲକ୍ଷ୍ୟଧାର୍ଯ୍ୟ ହୋଇଛି ।

୭୪. ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗର ପ୍ରଗତିକୁ ତ୍ୱରାନ୍ୱିତ କରିବା ପାଇଁ ମୋ ସରକାର ଷ୍ଟାର୍ଟଅପ୍ ଓଡ଼ିଶା ଉଦ୍ୟମ ଆରମ୍ଭ ସହ ଷ୍ଟାର୍ଟଅପ୍ ଓଡ଼ିଶା ନୀତି ଓ ଷ୍ଟାର୍ଟଅପ୍ ଓଡ଼ିଶା ପୋର୍ଟାଲ୍‌ର ଶୁଭାରମ୍ଭ କରିଛନ୍ତି । ଏହି ଉଦ୍ୟମରେ ୧୬୨ଟି ଷ୍ଟାର୍ଟଅପ୍ ପଞ୍ଜୀକୃତ ହୋଇଛି ଓ ତନ୍ମଧ୍ୟରୁ ୨୩ଟିକୁ ଏହି ନୀତିରେ ସହାୟତା ପ୍ରଦାନ କରାଯାଇଛି । ଏତଦ୍‌ବ୍ୟତୀତ ୫ଟି ପଞ୍ଜୀକୃତ ଏବଂ ୨୦ଟି ଅନ୍ୟ ଇନ୍‌କୁବେଟର ଏହି ଉଦ୍ୟମ ଅଧୀନରେ କାର୍ଯ୍ୟରତ ଅଛନ୍ତି । ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗୀମାନେ ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକର ସମାଧାନ ସେହି ସ୍ଥାନରେ ହିଁ କରିବାକୁ ମୋ ସରକାର ଜିଲ୍ଲା ସ୍ତରରେ 'ଉଦ୍ୟୋଗ ସମାଧାନ ଶିବିର' ଆରମ୍ଭ କରିଛନ୍ତି ।

୭୫. ନ୍ୟାସନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜି, ରାଉରକେଲା, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଆଇଆଇଟି, ଭୁବନେଶ୍ୱର ଏବଂ ବୀର ସୁରେନ୍ଦ୍ର ସାଏ ବୈଷୟିକ ବିଶ୍ୱବିଦ୍ୟାଳୟ ସହିତ ରାଜ୍ୟରେ ଇନୋଭେସନ୍-କମ୍-ଇନ୍‌କ୍ୟୁବେସନ ସେଣ୍ଟର ସ୍ଥାପନ ପାଇଁ ମୋ ସରକାର ସହଭାଗିତା କରିଛନ୍ତି । ଫେସ୍‌ବୁକ୍ ସହିତ ଏକ ଉଦ୍ଭାବୀ ଅଂଶୀଦାରୀରେ, ୩,୩୦୦ ଅଣୁ ଉଦ୍ୟୋଗୀ ଓ ସ୍ୱୟଂ ସହାୟକ ଦଳର ସଭ୍ୟାଙ୍କୁ 'ସି ମିନ୍ସ୍ ବିଜିନେସ୍' ଓ 'ବୁଷ୍ଟ ୟୋର୍ ବିଜିନେସ୍' କାର୍ଯ୍ୟକ୍ରମରେ ଡିଜିଟାଲ ମାର୍କେଟିଂ ଟ୍ରେନିଂ ପ୍ରଦାନ କରାଯାଇଛି ।

୭୬. ରାଜ୍ୟର ରପ୍ତାନୀ କାରବାର ୨୦୧୫-୧୬ ବର୍ଷରେ ୧୯,୦୮୨ କୋଟି ଟଙ୍କା ଥିବାବେଳେ ୨୦୧୬-୧୭ ବର୍ଷରେ ଏହା ଦୁଇଗୁଣରୁ ଅଧିକ ବୃଦ୍ଧି ପାଇ ୪୦,୮୭୦ କୋଟି ଟଙ୍କାରେ ପହଞ୍ଚିଛି । ଏଣୁ ଓଡ଼ିଶା ଭାରତର ଅନ୍ୟ ସମସ୍ତ ରାଜ୍ୟମାନଙ୍କ ମଧ୍ୟରେ ୧୧୪ ପ୍ରତିଶତ ସର୍ବୋଚ୍ଚ ଅଭିବୃଦ୍ଧି ହାର ହାସଲ କରିଛି । ୨୦୧୬-୧୭ ବର୍ଷରେ ରପ୍ତାନୀ ଅଭିବୃଦ୍ଧି ହାସଲ କରିଥିବାରୁ ଭାରତ ସରକାର ଓଡ଼ିଶାକୁ 'ଚମ୍ପିଆନ୍ ଷ୍ଟେଟ୍' ଭାବେ ସ୍ୱୀକୃତି ପ୍ରଦାନ କରିଛନ୍ତି ।

୭୭. ଆମ ରାଜ୍ୟ ବିଗତ କିଛି ବର୍ଷ ମଧ୍ୟରେ ଶିଳ୍ପ ବିକାଶ କ୍ଷେତ୍ରରେ ଦ୍ରୁତ ଅଭିବୃଦ୍ଧି ହାସଲ କରିଛି । ଭାରତରେ ଇଜ୍ ଅଫ୍ ଡୁଇଂଗ୍ ବିଜିନେସ୍ କ୍ଷେତ୍ରରେ ଏହା ଏକ ପ୍ରମୁଖ ଭୂମିକା ନିର୍ବାହ କରିଛି । ଦେଶରେ ଜୀବନ୍ତ ଉତ୍ପାଦନ ପୁଂଜି ଆକୃଷ୍ଟ କରିବାରେ ଦେଶର ତିନୋଟି ପ୍ରମୁଖ ରାଜ୍ୟ ମଧ୍ୟରୁ ଓଡ଼ିଶା ଗୋଟିଏ ହେବାର ଗୌରବ ଅର୍ଜନ କରିଛି । ଶିଳ୍ପଭିତ୍ତିକ ପ୍ରକଳ୍ପ କାର୍ଯ୍ୟକାରିତାରେ ଆମ ରାଜ୍ୟ ସାରା ଭାରତବର୍ଷରେ ପ୍ରଥମ ।

୭୮. ଶିଳ୍ପ ଅନୁକୂଳ ନୀତି ପ୍ରଣୟନ ଅନ୍ତର୍ଭୁକ୍ତ ପାଇଁ ନିୟାମକ ପ୍ରସ୍ତୁତି, ନବ ଉଦ୍ଭବ ପାଇଁ ପ୍ରୋତ୍ସାହନ ଏବଂ ସହଣୀୟ ଶିଳ୍ପ ବିକାଶ ଦିଗରେ ମୋ ସରକାର ଏକାଧିକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଛନ୍ତି । ମୋ ସରକାରଙ୍କ ଦ୍ୱାରା ଶିଳ୍ପନୀତି-୨୦୧୫, ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ଶିଳ୍ପ ନୀତି-୨୦୧୬, ଷ୍ଟାର୍ଟଅପ୍ ନୀତି-୨୦୧୬ ଏବଂ ସଂଖ୍ୟାଧିକ କ୍ଷେତ୍ର ନିର୍ଦ୍ଦିଷ୍ଟ ନୀତି ପ୍ରଣୟନ ପୁଞ୍ଜି ଲଗାଣକାରୀ ଓ ଉଦ୍ୟୋଗକାରୀମାନଙ୍କୁ ଆକର୍ଷିତ କରିପାରିଛି ।

୭୯. ପୁଂଜି ନିବେଶ ପରିଚାଳନାରେ ସୂଚନା ଓ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ କ୍ଷେତ୍ରରେ ଓଡ଼ିଶା ଏକ ଆଗୁଆ ରାଜ୍ୟ, ଯାହା ବିଭିନ୍ନ ଶିଳ୍ପାନୁଷ୍ଠାନଗୁଡ଼ିକୁ ରାଜ୍ୟରେ ଶିଳ୍ପ ପ୍ରତିଷ୍ଠା ଏବଂ ପରିଚାଳନାକୁ ସୁଗମ କରିଛି । ଶିଳ୍ପ ନିବେଶକାରୀଙ୍କ ପାଇଁ ଏବେ Go SWIFT (Government of Odisha single window Investor Facilitation and Tracking) ପୋର୍ଟାଲ୍ ଆରମ୍ଭ କରାଯାଇଛି । ଏହି ବୈପ୍ଳବିକ ଅନନ୍ୟ ଉପକ୍ରମ ପୁଞ୍ଜି ଲଗାଣକାରୀଙ୍କୁ ଏକ ପ୍ରକଳ୍ପ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମଗ୍ର ପୁଂଜି ଲଗାଣ ପ୍ରକ୍ରିୟାକୁ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ସ୍ୱଚ୍ଛନ୍ଦରେ, ବିନା କାଗଜପତ୍ରରେ କରାଯିବା ପାଇଁ ଆବଶ୍ୟକୀୟ ସମସ୍ତ ସେବା ଓ ସହାୟତା ଯୋଗାଇ ଦେବ ।

୮୦. ମୋ ସରକାର ରାଜ୍ୟରେ ଶିଳ୍ପ ବିକାଶ, ୨.୫ ଲକ୍ଷ କୋଟିର ପୁଂଜିନିବେଶ ଏବଂ ୬ଟି ନିର୍ଦ୍ଦିଷ୍ଟ କ୍ଷେତ୍ରରେ ୩୦ ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ଲକ୍ଷ୍ୟରେ 'ଭିଜନ ୨୦୨୫' ଡକୁମେଣ୍ଟ ପ୍ରସ୍ତୁତ କରିଛନ୍ତି । ଏହି ଲକ୍ଷ୍ୟ ହାସଲ ପାଇଁ ୨୦୧୮ ମସିହା ନଭେମ୍ବର ମାସରେ ମୋ ସରକାର ନିଜର ପ୍ରମୁଖ କାର୍ଯ୍ୟକ୍ରମ 'ମେକ୍ ଇନ୍ ଓଡ଼ିଶା'ର ପରବର୍ତ୍ତୀ ସଂସ୍କରଣ ଆରମ୍ଭ କରିବେ । ଏହା ପୁଞ୍ଜିଲଗାଣକାରୀମାନଙ୍କର ଅନ୍ୟ ଏକ ସମ୍ମିଳନୀ ପରିବର୍ତ୍ତେ ରାଜ୍ୟରେ ପୁଞ୍ଜି ନିବେଶ, ଶିଳ୍ପ ଅଭିବୃଦ୍ଧି ଏବଂ ଭବିଷ୍ୟତ କାର୍ଯ୍ୟପନ୍ଥା ସମ୍ବନ୍ଧୀୟ ବିଶ୍ୱସ୍ତରୀୟ ଭାବ ଆଦାନ ପ୍ରଦାନ ପାଇଁ ସୁଯୋଗ ସୃଷ୍ଟି କରିବ । ବିଶ୍ୱ ଦରବାରରେ ଆମ ପୁଂଜି

ନିବେଶ ସୁଯୋଗ ସହିତ ଆମ ସଂସ୍କୃତି ଓ ଐତିହ୍ୟକୁ ସାରା ବିଶ୍ୱରୁ ପ୍ରତିନିଧିମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାର ମଧ୍ୟ ସୁଯୋଗ ମିଳିବ ।

୮୧. ସାଧାରଣ କ୍ଷେତ୍ର ଉଦ୍ୟୋଗଗୁଡ଼ିକ ଅର୍ଥନୀତିରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଅଂଶଗ୍ରହଣ ଦ୍ୱାରା ବିପୁଳ ସାମର୍ଥ୍ୟ ଯୋଗାଇ ସରକାରଙ୍କୁ ଇପ୍‌ସିତ ସାମାଜିକ ଓ ଅର୍ଥନୈତିକ ଲକ୍ଷ୍ୟ ହାସଲ ଦିଗରେ ସହାୟକ ହୋଇଥାଆନ୍ତି । ରାଜ୍ୟର ସାଧାରଣ କ୍ଷେତ୍ର ଉଦ୍ୟୋଗଗୁଡ଼ିକର ଅଭିବୃଦ୍ଧି ପାଇଁ ମୋ ସରକାର ଅତୀତରେ ବହୁବିଧ ପଦକ୍ଷେପ ଗ୍ରହଣ କରିଛନ୍ତି । ମୋ ସରକାର ରାଜ୍ୟର ସାଧାରଣ କ୍ଷେତ୍ର ଉଦ୍ୟୋଗଗୁଡ଼ିକର ପଦସ୍ଥ ଅଧିକାରୀମାନଙ୍କର ଦକ୍ଷତା ବୃଦ୍ଧି ଜରିଆରେ ସେମାନଙ୍କର ପରିଚାଳନାଗତ ଦକ୍ଷତା ଏବଂ କାର୍ଯ୍ୟଦକ୍ଷତା ବୃଦ୍ଧି କରିଥାନ୍ତି । ଏହାଛଡ଼ା ବିଭିନ୍ନ ସାଧାରଣ କ୍ଷେତ୍ର ଉଦ୍ୟୋଗଗୁଡ଼ିକର ସୁଗମ ଓ ଫଳପ୍ରଦ ପରିଚାଳନା ନିମନ୍ତେ ବର୍ତ୍ତମାନ ଖାଲିଥିବା ଅନୁମୋଦିତ ପଦବୀଗୁଡ଼ିକୁ ପୂରଣ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି

୮୨. ମୋ ସରକାର ବିଜ୍ଞାନଭିତ୍ତିକ ଶିକ୍ଷା, ଗବେଷଣା ଏବଂ ଯୋଗାଯୋଗକୁ ଲୋକାଭିମୁଖୀ କରିବା ଲକ୍ଷ୍ୟ ନେଇ ରାଜ୍ୟରେ ବିବିଧ ଅଭିନବ ଯୋଜନା ପ୍ରଣୟନ କରିଛନ୍ତି । ମୋ ସରକାର ରାଜ୍ୟର ସମସ୍ତ ଜିଲ୍ଲାରେ ବିଜ୍ଞାନ କେନ୍ଦ୍ର ଓ ବିଜ୍ଞାନ ପାର୍କ ଖୋଲାଯିବା ନିମନ୍ତେ ନିଷ୍ପତ୍ତି ନେଇଛନ୍ତି । ମୋ ସରକାର ରାୟଗଡ଼ା, ବାରିପଦା ଓ ଗୋପାଳପୁରଠାରେ ୩ଟି ପ୍ଲାନେଟାରିୟମ୍ ସ୍ଥାପନ ନିମନ୍ତେ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

୮୩. ରାଜ୍ୟରେ ଦୂରସଂଚାର ସେବାର ସହଜ ଉପଲବ୍ଧି ତଥା ପରିଚାଳନା ଅନୁକୂଳ ବାତାବରଣ ସୃଷ୍ଟି ପାଇଁ ମୋ ସରକାର 'ଓଡ଼ିଶା ମୋବାଇଲ ଟାୱାର୍‌ସ', ଅପ୍ଟିକାଲ୍ ଫାଇବର କେବଲ୍ ଆଣ୍ଡ ରିଲେଟେଡ ଟେଲିକମ୍ ଇନ୍‌ଫ୍ରାଷ୍ଟ୍ରକ୍ଚର ନୀତି ୨୦୧୭' ପ୍ରସ୍ତୁତ କରିଛନ୍ତି । ସୋସିଆଲ ମିଡ଼ିଆ ମାଧ୍ୟମରେ ପ୍ରାପ୍ତ ଜନସାଧାରଣଙ୍କ ଅଭିଯୋଗର ତ୍ୱରିତ ନିରାକରଣ ନିମନ୍ତେ ଏକ ଉତ୍ସର୍ଗୀକୃତ ସୋସିଆଲ ମିଡ଼ିଆ ସେଲ୍ ସ୍ଥାପନ କରାଯାଇଛି ।

୮୪. ଇଲେକ୍‌ଟ୍ରୋନିକ୍‌ସ, ସୂଚନା ପ୍ରଯୁକ୍ତି ବିଭାଗ ରାଜ୍ୟରେ ଆଧାର ପଞ୍ଜୀକରଣର ନୋଡାଲ ବିଭାଗ ରୂପେ ୪୧୪.୦୭ ଲକ୍ଷ ନାଗରିକଙ୍କ ଆଧାର ପଞ୍ଜୀକରଣ କରିଛନ୍ତି, ଯାହା ସର୍ବମୋଟ ପଂଜୀକୃତ ହେବାକୁ ଥିବା ୪୪୯.୪୧ ଲକ୍ଷ ଜନସଂଖ୍ୟାର ୯୪.୫୦ ପ୍ରତିଶତ ।

୮୫. ସଂଖ୍ୟାଧିକ ଆର୍ଥିକ ସଂସ୍କାର ପଦକ୍ଷେପ ଦ୍ୱାରା ରାଜ୍ୟ ଅତ୍ୟାବଶ୍ୟକୀୟ ଆର୍ଥିକ ଦୃଶ୍ୟପଟ୍ଟରେ ପରିଦୃଶ୍ୟ ପରିବର୍ତ୍ତନ ହାସଲ କରିଛି ଓ ରାଜ୍ୟର ଆର୍ଥିକ ସ୍ଥିତିରେ ଉଲ୍ଲେଖନୀୟ ଅଗ୍ରଗତି ଘଟିଛି । ଋଣଭାରକୁ ଏକ ପୋଷଣୀୟ ସ୍ତରକୁ ଆଣିବାରେ ମୋ ସରକାରଙ୍କ ଉଦ୍ୟମ ଉଲ୍ଲେଖନୀୟ । ଦୂରଦୃଷ୍ଟିସଂପନ୍ନ ଋଣସ୍ତର ହେତୁ ବିକାଶଧାରାକୁ ତ୍ୱରାନ୍ୱିତ କରିବା ନିମନ୍ତେ ଋଣ ଆହରଣ ମାଧ୍ୟମରେ ଅଧିକ ପୁଂଜି ବିନିଯୋଗ ପାଇଁ ରାଜ୍ୟକୁ ସୁଯୋଗ ମିଳିଛି । ରାଜ୍ୟ ସରକାର ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ବର୍ଦ୍ଧିତ ପୁଂଜିବିନିଯୋଗ ଅବ୍ୟାହତ ରଖିବା ନିମନ୍ତେ ଆଠବର୍ଷ ବ୍ୟବଧାନ ପରେ ୨୦୧୪-୧୫ ବର୍ଷଠାରୁ କେନ୍ଦ୍ର ସରକାରଙ୍କ ଦ୍ୱାରା ନିର୍ଦ୍ଧାରଣ କରାଯାଇଥିବା ଋଣ ଆହରଣ ସୀମା ମଧ୍ୟରେ ଖୋଲାବଜାରରୁ ଋଣ ଉଠାଣ କରିଛନ୍ତି । ୨୦୦୫-୦୬ ବର୍ଷଠାରୁ ରାଜ୍ୟ ସରକାର ଲଗାତାର ଭାବେ ରାଜସ୍ୱ ବଳକା ସୃଷ୍ଟି କରିଚାଲିଛନ୍ତି । ସୁତରାଂ, ସମୁଦାୟ ଋଣ ପାଣ୍ଠି ଉପରୋକ୍ତ ବର୍ଷଗୁଡ଼ିକରେ ଉପାର୍ଜନ ସୃଷ୍ଟିକାରୀ ପୁଂଜି ଖର୍ଚ୍ଚ ପାଇଁ ସଂପୂର୍ଣ୍ଣ ଭାବରେ ବିନିଯୋଗ କରାଯାଇଛି ।

୮୬. ରାଜ୍ୟରେ ଦ୍ରବ୍ୟ ଓ ସେବା ଶୁଳ୍କ(ଜିଏସ୍‌ଟି) କାର୍ଯ୍ୟକାରୀ କରିବା ନିମନ୍ତେ କେନ୍ଦ୍ର ସରକାରଙ୍କ ସହିତ ଆବଶ୍ୟକୀୟ ଅନେକ ବୈଧାନିକ ଓ ପ୍ରଶାସନିକ କାର୍ଯ୍ୟ ତଥା ବ୍ୟାପକ ଜନସଚେତନତା କାର୍ଯ୍ୟକ୍ରମକୁ ଅର୍ଥ ବିଭାଗ ଓ ବାଣିଜ୍ୟକର କମିଶନରଙ୍କ ଦ୍ୱାରା ପରିବ୍ୟାପ୍ତ କରାଯାଇଛି । କ୍ରମାଗତ ଉଦ୍ୟମ ଫଳରେ ୨୦୧୭ ଜୁଲାଇ ପହିଲାଠାରୁ ଦ୍ରବ୍ୟ ଓ ସେବାକର କାର୍ଯ୍ୟାନ୍ୱୟନରେ ଓଡ଼ିଶା ସମର୍ଥ ହୋଇପାରିଛି ।

୮୭. ବଜେଟ୍ ପ୍ରସ୍ତୁତି ପ୍ରକ୍ରିୟାକୁ ଅଧିକ ପରାମର୍ଶଭିତ୍ତିକ କରିବା ପାଇଁ ମୋ ସରକାର ବିଗତ ଛଅ ବର୍ଷ ଧରି ବିଭିନ୍ନ ଅଂଶୀଦାରଙ୍କ ସହିତ ପ୍ରାକ୍-ବଜେଟ୍ ଆଲୋଚନା କରିଆସୁଛନ୍ତି । ମିଳିଥିବା ପରାମର୍ଶଗୁଡ଼ିକ ଗୁରୁତ୍ୱର ସହିତ ବିଶ୍ଳେଷଣ କରାଯାଏ ଓ ବଜେଟ୍ ପ୍ରସ୍ତୁତି ସମୟରେ କେତେକ ନିର୍ଦ୍ଦିଷ୍ଟ ଉପଯୋଗୀ ପରାମର୍ଶକୁ ଗ୍ରହଣ କରାଯାଇଥାଏ । ଏକ ପୋଷଣୀୟ, ଅର୍ଥନୈତିକ ଅନ୍ତର୍ଭୁକ୍ତି, ଆଞ୍ଚଳିକ, ସାମାଜିକ ଓ ଲିଙ୍ଗଗତ ବୈଷମ୍ୟବିହୀନ ଅଗ୍ରଗତି, ଦ୍ରୁତ ଦାରିଦ୍ର୍ୟ ହ୍ରାସ, ଯୋଜନାବଦ୍ଧ ବିକାଶ ପାଇଁ ଅଧିକ ପାଣ୍ଠି ଓ ଅଧିକ ସମ୍ବଳ ମଞ୍ଜୁରୀ ଓ ରାଜ୍ୟର ତ୍ୱରିତ ସର୍ବାଙ୍ଗୀନ ଉନ୍ନତି ଆମର ସର୍ବାଧିକ ଅଗ୍ରାଧିକାର । ମୋ ସରକାର ନିରବଚ୍ଛିନ୍ନ ଭାବେ ଏଗୁଡ଼ିକ ହାସଲ କରିବା ପାଇଁ ପ୍ରଚେଷ୍ଟାରତ ।

୮୮. ସରକାରୀ ବ୍ୟୟରେ ଦକ୍ଷତା ଓ ଗୁଣବତ୍ତାକୁ ମୋ ସରକାର ପ୍ରାଥମିକତା ପ୍ରଦାନ କରିଛନ୍ତି । ସରକାରୀ ଅର୍ଥ ବ୍ୟୟରେ ଗୁଣାତ୍ମକ ଉନ୍ନତି ନିମନ୍ତେ ରାଜ୍ୟ ସରକାର ବଜେଟ୍ ଓ ବ୍ୟୟ ପରିଚାଳନା, ପ୍ରକଳ୍ପ ପ୍ରସ୍ତୁତି ଓ ଆର୍ଥିକ ଉତ୍ତରଦାୟିତ୍ୱ କ୍ଷେତ୍ରରେ ଅନେକଗୁଡ଼ିଏ ସଂସ୍କାରମୂଳକ ପଦକ୍ଷେପ ଗ୍ରହଣ କରିଛନ୍ତି । ନିକଟରେ ଗ୍ରହଣ କରାଯାଇଥିବା ପଦକ୍ଷେପଗୁଡ଼ିକ ମଧ୍ୟରେ ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥା, ଭାରତୀୟ ଷ୍ଟେଟ୍ ବ୍ୟାଙ୍କଇ-ପେ ଓ ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥାର ସଂଯୋଗୀକରଣ, ସରକାରୀ ଆର୍ଥିକ ପରିଚାଳନା ପଦ୍ଧତି, ପେନ୍‌ସନ୍ ଅନୁମୋଦନରେ ଇଲେକ୍‌ଟ୍ରୋନିକ୍ ମାଧ୍ୟମର ଉପଯୋଗ, ଇ-ପରିଚାଳନା ପଦ୍ଧତିରେ ବେସରକାରୀ ଅନୁଦାନପ୍ରାପ୍ତ ଶିକ୍ଷାନୁଷ୍ଠାନ କର୍ମଚାରୀମାନଙ୍କର ଅନ୍ତିମ ଦେୟ ପ୍ରଦାନରେ ତ୍ୱରିତ ସମାଧାନ ପଦ୍ଧତି ଇତ୍ୟାଦି ଗୁରୁତ୍ୱପୂର୍ଣ୍ଣ ।

୮୯. ଯୋଜନା ପ୍ରକ୍ରିୟାରେ ଜନସାଧାରଣ ଓ ସ୍ଥାନୀୟ ଲୋକ ପ୍ରତିନିଧିମାନଙ୍କ ଅଂଶଗ୍ରହଣକୁ ଅଧିକରୁ ଅଧିକ ବୃଦ୍ଧି କରିବା ଓ ସ୍ଥାନୀୟ ଲୋକଙ୍କର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଅତ୍ୟାବଶ୍ୟକ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟରେ ବିଧାୟକ ଆଞ୍ଚଳିକ ଉନ୍ନୟନ ପାଣ୍ଠି ଓ ସ୍ୱତନ୍ତ୍ର ଉନ୍ନୟନ କାର୍ଯ୍ୟକ୍ରମ ଯୋଜନା ପ୍ରବର୍ତ୍ତନ କରାଯାଇଛି । ରାଜ୍ୟରେ ଅଭିବୃଦ୍ଧି ଓ ବିକାଶ ପ୍ରକ୍ରିୟାରେ ସହଭାଗିତାକୁ ପ୍ରମୁଖ ଭୂମିକା ଦିଆଯାଇଛି । ବିଭିନ୍ନ କ୍ଷେତ୍ରୀୟ ବିଭାଗଗୁଡ଼ିକ ଦ୍ୱାରା ଭିତ୍ତିଭୂମିର ବିକାଶ ତଥା ଜନସାଧାରଣଙ୍କୁ କାର୍ଯ୍ୟଦକ୍ଷ ସେବା ପ୍ରଦାନ କ୍ଷେତ୍ରରେ ସରକାରୀ-ବେସରକାରୀ ଭାଗୀଦାରି ପ୍ରକଳ୍ପଗୁଡ଼ିକର ଭୂମିକା କ୍ରମଶଃ ଅଧିକରୁ ଅଧିକ ହେଉଛି । ଓଡ଼ିଶା ଭିତ୍ତିଭୂମି ଉନ୍ନୟନ ପାଣ୍ଠି ଏବଂ ଓଡ଼ିଶା ପରିପୂରକ ପାଣ୍ଠିରେ ଆବଶ୍ୟକୀୟ ଅର୍ଥ ବରାଦ କରାଯାଇ ସରକାରୀ-ବେସରକାରୀ ସହଭାଗିତାକୁ ପ୍ରୋତ୍ସାହିତ କରାଯାଉଛି ।

୯୦. ନିର୍ଦ୍ଦିଷ୍ଟ ଅବଧି ମଧ୍ୟରେ ସମସ୍ତ ବିଜ୍ଞାପିତ ସେବାଗୁଡ଼ିକୁ ନାଗରିକମାନଙ୍କୁ ଯୋଗାଇଦେବା ନିମନ୍ତେ ମୋ ସରକାର ଓଡ଼ିଶା ସାଧାରଣ ସେବା ଅଧିକାର ଅଧିନିୟମ ପ୍ରବର୍ତ୍ତନ କରିଛନ୍ତି । ଏହି ଅଧିନିୟମ ଅନ୍ତର୍ଗତ ୨୪ଟି ବିଭାଗ ସମ୍ପର୍କିତ ୩୩୩ଟି ସାଧାରଣ ସେବା ଏ ପର୍ଯ୍ୟନ୍ତ ବିଜ୍ଞପିତ ହୋଇଛି । ସମସ୍ତ ସାଧାରଣ ସେବାଗୁଡ଼ିକର ସଠିକ୍ ଏବଂ ଫଳପ୍ରଦ ତଦାରଖ ନିମନ୍ତେ ସରକାର ୱେବ୍‌ଭିତ୍ତିକ କେନ୍ଦ୍ରୀୟ ତଦାରଖ ବ୍ୟବସ୍ଥା ପ୍ରଚଳନ କରିଛନ୍ତି । ସାରା ଓଡ଼ିଶାରେ ଗେଜେଟେଡ୍ ଅଧିକାରୀମାନଙ୍କ ଦ୍ୱାରା

କରାଯାଉଥିବା ଅନୁପ୍ରମାଣନ ବ୍ୟବସ୍ଥା ପ୍ରତିବଦଳରେ ପ୍ରମାଣ ବ୍ୟବସ୍ଥା ପ୍ରଚଳନ କରିଛନ୍ତି । ସ୍ୱତନ୍ତ୍ର ସେବା କ୍ଷେତ୍ର ଆଫିଡ଼େଭିଟ ବ୍ୟବସ୍ଥା ଉଚ୍ଛେଦ କରିବା ପାଇଁ ଆରମ୍ଭ କରାଯାଇଛି । ନୂତନ ଗବେଷଣା, ଜ୍ଞାନ ଓ ଦକ୍ଷତା ବିକାଶକୁ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ୨୦୧୭ ଅପ୍ରେଲ ୩ ତାରିଖ ଦିନ ଓଡ଼ିଶା ସରକାର ଓ ଚିକାଗୋ ବିଶ୍ୱବିଦ୍ୟାଳୟ ନ୍ୟାସ ଓ ଚିକାଗୋ ବିଶ୍ୱବିଦ୍ୟାଳୟ ମଧ୍ୟରେ ଏକ ଅଭିଳାଷ ବିବରଣ ଗ୍ରହଣ କରାଯାଇଛି । ରାଜ୍ୟର ସେବା ଅଧିକାରୀଙ୍କ ଦ୍ୱାରା କରାଯାଉଥିବା ଉତ୍କୃଷ୍ଟ ଅଭିନବ କାର୍ଯ୍ୟକୁ ସ୍ୱୀକୃତି ଦେବା ନିମନ୍ତେ ମୋ ସରକାର ''ପ୍ରଶାସନ ଏବଂ ସାଧାରଣ ସେବା ପ୍ରଦାନରେ ଉତ୍କର୍ଷ ଏବଂ ଅଭିନବ ଚିନ୍ତାଧାରା ପ୍ରୟୋଗ ନିମନ୍ତେ ମୁଖ୍ୟମନ୍ତ୍ରୀ ପୁରସ୍କାର'' ପ୍ରଚଳନ କରିଛନ୍ତି ।

୯୧. ମୁଁ ଆନନ୍ଦିତ ଯେ ୨୦୧୭ ବର୍ଷରେ ରାଜ୍ୟରେ ଆଇନ ଶୃଙ୍ଖଳା ପରିସ୍ଥିତି ମୋଟାମୋଟି ଭାବେ ଶାନ୍ତିପୂର୍ଣ୍ଣ ରହିଛି । ୨୦୧୭ ବର୍ଷରେ କୌଣସି ସାମ୍ପ୍ରଦାୟିକ ଦଙ୍ଗା ଘଟିନଥିବା ବେଳେ, ବାମପନ୍ଥୀ ଉଗ୍ରବାଦ ହ୍ରାସ ପାଇଛି । ଗଜପତି, ଯାଜପୁର, ଢ଼େଙ୍କାନାଳ, ମୟୂରଭଞ୍ଜ ଏବଂ ନବରଙ୍ଗପୁର ଜିଲ୍ଲାରେ ମାଓବାଦୀ କାର୍ଯ୍ୟକଳାପ ଦୃଷ୍ଟିଗୋଚର ହୋଇନାହିଁ, ଯଦିଓ ନୂଆପଡ଼ା, ବୌଦ୍ଧ, ନୟାଗଡ଼, କେଉଁଝର, ସମ୍ବଲପୁର, ଦେଓଗଡ଼ ଓ ସୁନ୍ଦରଗଡ଼ ଜିଲ୍ଲାରେ ଏହା ନିୟନ୍ତ୍ରଣରେ ରହିଛି, ମାଲକାନଗିରି, କୋରାପୁଟ, କଳାହାଣ୍ଡି, ରାୟଗଡ଼ା, କନ୍ଧମାଳ, ଅନୁଗୋଳ, ବଲାଙ୍ଗିର ଓ ବରଗଡ଼ ଜିଲ୍ଲାରେ ଏହା ଆମ ପାଇଁ ଚିନ୍ତାଜନକ ହୋଇ ରହିଛି ।

୯୨. ମୋ ସରକାର ମାଓ ଦମନ ସମୟରେ ଆହତ ସୁରକ୍ଷା କର୍ମୀଙ୍କ ଉଦ୍ଦେଶ୍ୟରେ 'ସୁରକ୍ଷା କର୍ମୀଙ୍କ ଚିକିତ୍ସା ସହାୟତା' ନାମକ ଏକ ନୂତନ ଯୋଜନାର ପ୍ରଣୟନ କରିଛନ୍ତି । ସାଧାରଣ ନାଗରିକଙ୍କ କ୍ଷେତ୍ରରେ ମୃତ୍ୟୁ ପରବର୍ତ୍ତୀ ଅନୁକମ୍ପାମୂଳକ ସହାୟତା ରାଶି ୧ ଲକ୍ଷରୁ ୩ ଲକ୍ଷକୁ ବୃଦ୍ଧି କରାଯାଇଛି । ମାଓ ହିଂସାରେ ସୁରକ୍ଷା କର୍ମୀଙ୍କ କ୍ଷେତ୍ରରେ ଅନୁକମ୍ପାମୂଳକ ସହାୟତା ରାଶିକୁ ୨ ଲକ୍ଷ ଟଙ୍କାରୁ ୪ ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି । ସରକାର ଦ୍ୱିତୀୟ ବିଶ୍ୱଯୁଦ୍ଧ ବରିଷ୍ଠ ସୈନିକଙ୍କ ପେନ୍‌ସନ୍ ବୃଦ୍ଧି କରିଛନ୍ତି ।

୯୩. ମୋ ସରକାର ରାଜ୍ୟରେ ମହିଳା ଓ ଶିଶୁମାନଙ୍କ ଉପରେ ହେଉଥିବା ଅତ୍ୟାଚାରକୁ ରୋକିବା ଏବଂ ଏହାର ଅନୁସନ୍ଧାନ ପାଇଁ ୨୯ଟି ଇଣ୍ଟିଗ୍ରେଟେଡ଼ ୟୁନିଟ୍ ସ୍ଥାପନ କରିଛନ୍ତି, ଯାହାକି ଏଭଳି ସମ୍ବେଦନଶୀଳ ଘଟଣାଗୁଡ଼ିକୁ ପରିଚାଳନା କରିବାରେ ସହାୟକ ହୋଇପାରିବ । ପରିବର୍ତ୍ତିତ ପୀଡ଼ିତ କ୍ଷତିପୂରଣ ପ୍ରଦାନ ଯୋଜନା ପ୍ରକାଶ ପାଇଛି । ନିଖୋଜ/ନିରୁଦ୍ଦିଷ୍ଟ ପିଲାମାନଙ୍କୁ ଉଦ୍ଧାର କରିବା ପାଇଁ ସରକାର 'ଅପରେସନ ମୁସ୍କାନ–୩' ନାମରେ ଏକ ଉତ୍ସର୍ଗୀକୃତ ଅଭିଯାନ ଆରମ୍ଭ କରିଥିଲେ । ୨୦୧୭ରେ ଦୁଇଟି ପର୍ଯ୍ୟାୟରେ ୩.୧୩୧ ବାଳକ ଓ ୬୧୭ଜଣ ବାଳିକାଙ୍କୁ ରାଜ୍ୟ ଓ ରାଜ୍ୟ ବାହାରରୁ ଉଦ୍ଧାର କରାଯାଇଛି । ୩୦ଟି ରାଜସ୍ୱ ଜିଲ୍ଲାର ୩୦ଟି ଅତିରିକ୍ତ ଜିଲ୍ଲା ଦୌରା ଜଜ୍ କୋର୍ଟ ଶିଶୁ କୋର୍ଟ ଭାବେ ଘୋଷିତ ହୋଇଛି ।

୯୪. ରାଜ୍ୟ ଫୋରେନ୍‌ସିକ ସାଇନ୍‌ସ ଲାବୋରୋଟାରୀଠାରେ ସାଇବର କ୍ରାଇମ ସମ୍ପର୍କିତ ମାମଲାଗୁଡ଼ିକର ଅନୁସନ୍ଧାନ ପାଇଁ ଏକ ସାଇବର ଫୋରେନସିକ ଡ଼ିଭିଜନ ଗଠନ କରାଯାଇଛି । ସୂଚନା ଓ ପ୍ରଯୁକ୍ତି ଆଇନ–୨୦୦୦ ଅନୁଯାୟୀ ଏ କ୍ଷେତ୍ରରେ ଅନୁସନ୍ଧାନ ଓ ଦଣ୍ଡବିଧାନ ପାଇଁ ସରକାର ସମ୍ବଲପୁର, ରାଉରକେଲା ଓ ବ୍ରହ୍ମପୁରଠାରେ ତିନୋଟି ସାଇବର ପୋଲିସ ଷ୍ଟେସନ ପ୍ରତିଷ୍ଠା କରିଛନ୍ତି ।

୯୫. ମୋ ସରକାର ପୁରୀ ଜିଲ୍ଲା କାରାଗାରକୁ ଗୋପ ତହସିଲ ଅନ୍ତର୍ଗତ ବଙ୍ଗୋରାକୁ ସ୍ଥାନାନ୍ତରିତ କରିଛନ୍ତି । ସୁନ୍ଦରଗଡ଼ ଓ ଆଠଗଡ଼ଠାରେ ୫୦୦ କଏଦୀ ରହିବା ଭଳି ବ୍ୟବସ୍ଥା ସହ ଦୁଇଟି ମଡ଼େଲ ଅଭିଯୁକ୍ତ ଜେଲ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି ।

ଉଚ୍ଚ ଅଟ୍ଟାଳିକା, କ୍ଲିନିକ୍, ସିନେମା ହଲ ଓ ମଲ୍‌ଗୁଡ଼ିକରେ ଅଗ୍ନି ନିର୍ବାପକ ବ୍ୟବସ୍ଥା କଡ଼ାକଡ଼ି ଭାବେ ଅନୁସୃତ ହେବା ପାଇଁ ସରକାର ନୂଆ କରି ଓଡ଼ିଶା ଅଗ୍ନି ନିରୋଧକ ଓ ଅଗ୍ନି ସୁରକ୍ଷା ନିୟମ ପ୍ରଣୟନ କରିଛନ୍ତି ଓ ଏହାକୁ ତୁରନ୍ତ ଲାଗୁ କରାଯାଇଛି । ୨୦୧୭-୧୮ରେ ୬ଟି ନୂଆ ଅଗ୍ନିଶମ କେନ୍ଦ୍ରକୁ କାର୍ଯ୍ୟକ୍ଷମ କରାଯାଇଛି ।

୯୬. ମୋ ସରକାର ସଦାସର୍ବଦା ବିଶ୍ୱପ୍ରସିଦ୍ଧ ଶ୍ରୀଜଗନ୍ନାଥ ମନ୍ଦିରର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ପ୍ରୟାସ ଜାରି ରଖିଛନ୍ତି । ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ ଉନ୍ନତ ଭିତ୍ତିଭୂମି ସୁବିଧା ତଥା ପୁରୀ ସହରର ସର୍ବାଙ୍ଗୀନ ଭିତ୍ତିଭୂମି ଉନ୍ନୟନ ପାଇଁ ମୋ ସରକାର 'ଅବଢ଼ା' ଯୋଜନା ଆରମ୍ଭ କରିଛନ୍ତି । ଶ୍ରୀମନ୍ଦିରର ଜଗମୋହନ (ନାଟ୍ୟମଣ୍ଡପ)ର ମରାମତି ଏବଂ ସଂରକ୍ଷଣ କାର୍ଯ୍ୟ ଇତିମଧ୍ୟରେ ସମ୍ପୂର୍ଣ୍ଣ ହୋଇଛି । ଏତଦ୍‌ବ୍ୟତୀତ, ବେହରଣ ଦ୍ୱାରରେ ଦେଖାଯାଇଥିବା ଫାଟର ମରାମତି କାର୍ଯ୍ୟ ଚାଲୁରହିଛି । ଏହା କିଛିଦିନ ମଧ୍ୟରେ ସଂପୂର୍ଣ୍ଣ ହୋଇଯିବ । ଶ୍ରୀମନ୍ଦିର ସେବାୟତମାନଙ୍କ କଲ୍ୟାଣ ସାଧନ ନିମନ୍ତେ ସାମାଜିକ ସୁରକ୍ଷା, ସ୍ୱାସ୍ଥ୍ୟ, ଗୃହ ନିର୍ମାଣ ଓ ଶିକ୍ଷା ଆଦି କ୍ଷେତ୍ରରେ ବିବିଧ ପଦକ୍ଷେପ ଗ୍ରହଣ କରାଯିବା ସହ ବହୁବିଧ କଲ୍ୟାଣକାରୀ ଯୋଜନା ଆଇନ୍ ବିଭାଗ ପ୍ରଣୟନ କରିଛନ୍ତି ।

୯୭. ବିଭିନ୍ନ ବିବାଦୀୟ ମାମଲାଗୁଡ଼ିକର ତୁରନ୍ତ ଫଏସଲା ନିମନ୍ତେ ମୋ ସରକାର ୨୦୧୭ ବର୍ଷରେ ୪୮ଗୋଟି ବିଭିନ୍ନ ବର୍ଗର ଅଦାଲତ ପ୍ରତିଷ୍ଠା ପାଇଁ ଅଧିସୂଚନା ଜାରି କରିଛନ୍ତି । ମୋ ସରକାର ୨୦୧୭ ବର୍ଷରେ ୭୧ଜଣ ବିଚାର ବିଭାଗୀୟ ଅଧିକାରୀଙ୍କୁ ଓଡ଼ିଶା ଜୁଡିସିଆଲ ସର୍ଭିସ୍‌ରେ ନିଯୁକ୍ତି ଦେଇଛନ୍ତି ଏବଂ ୨୦୧୮ ବର୍ଷରେ ଅନ୍ୟ ୧୧୦ ଜଣ ବିଚାର ବିଭାଗୀୟ ଅଧିକାରୀଙ୍କୁ (ଓ.ଜେ.ଏସ୍) ନିଯୁକ୍ତି ଦେବା ନିମନ୍ତେ ପଦକ୍ଷେପ ଗ୍ରହଣ କରୁଛନ୍ତି । ଅନ୍ୟୁନ ୮୩୪ଟି ଲୋକ ଅଦାଲତ ଆୟୋଜନ ମାଧ୍ୟମରେ ମୋଟ ୨,୯୭,୯୭୫ ମାମଲାର ଫଏସଲା କରାଯାଇଛି । ରାଜ୍ୟବାସୀଙ୍କୁ ନ୍ୟାୟ ପ୍ରଦାନ ଓ ଆଇନ ସେବା ସୁବିଧା ସହଜଲଭ୍ୟ କରିବା ନିମନ୍ତେ ମୋ ସରକାର ପ୍ରତି ଗ୍ରାମପଞ୍ଚାୟତରେ 'ମଧୁବାବୁ ଆଇନ ସହାୟତା ଶିବିର' ପ୍ରତିଷ୍ଠା ନିମନ୍ତେ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

୯୮. ମୋ ସରକାର ଖଣିଜ ପ୍ରଶାସନରେ ସ୍ୱଚ୍ଛତା ଆଣିବା ପାଇଁ ସମନ୍ୱିତ ଖଣି ଓ ଖଣିଜ ଦ୍ରବ୍ୟ ପରିଚାଳନାରେ ଇ-ଗଭର୍ଣ୍ଣାନ୍‌ସ ପ୍ରଣାଳୀ ଲାଗୁ କରିଛନ୍ତି । ଏଥିରେ ବାସ୍ତବିକ ସମୟ ଆଧାରରେ ଖଣିଜ ପଦାର୍ଥର ଉତ୍ପାଦନ, ପ୍ରେରଣ ଓ ବିକ୍ରି ମୂଲ୍ୟ ନିର୍ଦ୍ଧାରଣ ପାଇଁ ରାଷ୍ଟ୍ରୀୟ ଖଣିଜ ପରିସଂଖ୍ୟାନ ନାମରେ ଏକ ମୋବାଇଲ ଆପ୍ଲିକେସନ ସହିତ ଇ-ପର୍ମିଟ୍, ଇ-ପାସ୍, ଇ-ଫାଇଲିଙ୍ଗ ଓ ଇ-ପେମେଣ୍ଟ ସାମିଲ ଅଛି । ଏହି ପ୍ରଯୁକ୍ତି ପ୍ରୟୋଗକୁ କେନ୍ଦ୍ର ସରକାର ମାନ୍ୟତା ପ୍ରଦାନ କରିବା ସହିତ ଉଚ୍ଚ ପ୍ରଶଂସା କରିଛନ୍ତି ଏବଂ ଅନ୍ୟ ଖଣିଜ ସଂପଦ ଗଚ୍ଛିତ ଥିବା ରାଜ୍ୟଙ୍କୁ ଏହା ବ୍ୟବହାର କରିବା ପାଇଁ ସବିଶେଷ ତଥ୍ୟ ପ୍ରଦାନ ନିମନ୍ତେ ମୋ ସରକାରଙ୍କୁ ଅନୁରୋଧ କରିଛନ୍ତି । ମୋ ସରକାର ଲଘୁ ଖଣିଜ ଦ୍ରବ୍ୟର ସମସ୍ତ ସଇରାତ ଉତ୍ସଗୁଡ଼ିକରେ ଅବୈଧ ଉତ୍ତୋଳନକୁ ବନ୍ଦ କରିବା ପାଇଁ ଡ଼ିଜିପିଏସ୍ ସର୍ବେକ୍ଷଣ ଦ୍ୱାରା ଖଣିର ସୀମା ନିରୂପଣ କରିବା ପାଇଁ ସ୍ଥିର କରିଛନ୍ତି । ଉକ୍ତ ପାଇଲଟ ପ୍ରୋଜେକ୍ଟର ସଫଳ ରୂପାୟନ ପରେ ରାଜ୍ୟର ସମସ୍ତ ଉତ୍ସ ଡ଼ିଜିପିଏସ୍ ସର୍ବେକ୍ଷଣରେ ଅନ୍ତର୍ଭୁକ୍ତ କରିବା ପାଇଁ କାର୍ଯ୍ୟ ଆରମ୍ଭ ହୋଇସାରିଛି ।

୯୯. ଅବୈଧ ଖଣି ଉତ୍ତୋଳନ ଓ ପରିବହନର ଯାଞ୍ଚ ଏବଂ ସୁରକ୍ଷାକୁ ଅଧିକ ମଜବୁତ କରିବା ପାଇଁ, ସବୁ ଖଣିଜ ବହନକାରୀ ଯାନରେ ଜିପିଏସ୍‌କୁ ଉପଯୋଗ କରିବାରେ ଓଡ଼ିଶା ସରକାର ଦେଶରେ ପ୍ରଥମ ଓ ଏକମାତ୍ର ରାଜ୍ୟ । ପରିଣାମସ୍ୱରୂପ, ଯେଉଁ ଯାନରେ ଜିପିଏସ୍ ବ୍ୟବହାର ହୋଇଛି, କେବଳ ସେହି ଯାନକୁ ହିଁ ଖଣିଜ ପରିବହନ ପାଇଁ ଅନୁମତି ମିଳିବ । ମୋ

ସରକାର ପ୍ରଚଳିତ ଆଇନ୍ ଉଲ୍ଲଂଘନ କରି ଲୁହା ଓ ମାଙ୍ଗାନିଜ ଉତ୍ତୋଳନ ହେତୁ ହୋଇଥିବା କ୍ଷତିପୂରଣ ମାନ୍ୟବର ସୁପ୍ରିମକୋର୍ଟଙ୍କ ଆଦେଶ ଅନୁଯାୟୀ ଧାର୍ଯ୍ୟ କରିଥିଲେ । ଉକ୍ତ ଧନ ରାଶି ଖଣି ପ୍ରଭାବିତ ଜିଲ୍ଲାର ସାମାଜିକ ଓ ଅର୍ଥନୈତିକ ବିକାଶ ପାଇଁ ବ୍ୟବହାର କରାଯିବ ।

୧୦୦. ଓଡ଼ିଶା ଖଣି ନିଗମ ଲିଃ. ପର୍ଯ୍ୟାବରଣ ସଂରକ୍ଷଣ, ଶକ୍ତି ସଂରକ୍ଷଣ, ସ୍ୱଚ୍ଛ ପାନୀୟ ଜଳ ଓ ପରିମଳ, କୌଶଳ ବିକାଶ ଓ ପ୍ରଶିକ୍ଷଣ, ଶିକ୍ଷା ଓ ପ୍ରତିଭା ବିକାଶ, ଜୀବିକା ସୁଯୋଗ, ଭିତ୍ତିଭୂମି ବିକାଶ, କ୍ଷୁଧା ନିବାରଣ ଓ ଅନ୍ୟାନ୍ୟ ସାମାଜିକ ବିକାଶ କାର୍ଯ୍ୟକ୍ରମ ହାତକୁ ନେଇଛି । ସେହିପରି ଗରିବ ଓ ଆର୍ଥିକ ପଛୁଆ ବର୍ଗ ଛାତ୍ରଛାତ୍ରୀମାନଙ୍କ ପାଇଁ ଏକ ବିଶେଷ ଛାତ୍ର ହିତୈଷୀ କାର୍ଯ୍ୟକ୍ରମ 'ଓଏମ୍‌ସି ସୁପର ୧୦୦' ଆରମ୍ଭ କରାଯାଇଛି ।

୧୦୧. ରାଜ୍ୟ ଗ୍ରାମାଞ୍ଚଳରେ ଘରଡିହଶୂନ୍ୟ ଏବଂ ଭୂମିହୀନ ପରିବାରଙ୍କୁ ପ୍ରଦତ୍ତ ଘରଡିହ ଓ ଜମିର ସୁପରିଚାଳନା ନିମନ୍ତେ ମୋ ସରକାର ଦାୟିତ୍ୱସଂପନ୍ନ ଭାବରେ କାର୍ଯ୍ୟ କରୁଛନ୍ତି । ରାଜ୍ୟର ୩୧୭ଟି ତହସିଲ ମଧ୍ୟରୁ ୨୭୯ଟି ତହସିଲରେ ଆଧୁନିକ ରେକର୍ଡ ରୁମ୍ କାର୍ଯ୍ୟକ୍ଷମ କରାଯାଇଛି । ଏଥିସହିତ ମୁଖ୍ୟ ଗୃହ ନିର୍ମାଣ କାର୍ଯ୍ୟ, ନୂତନ ରେକର୍ଡରୁମ୍ ନିର୍ମାଣ, ନୂତନ ତହସିଲ୍ କାର୍ଯ୍ୟାଳୟ ନିର୍ମାଣ କାର୍ଯ୍ୟ ଚାଲୁ ରହିଛି । ଭୂଲେଖରେ ଉଲ୍ଲିଖିତ ୫୧,୬୭୫ଟି ଗ୍ରାମ ମଧ୍ୟରୁ ୫୧,୬୧୨ ଗ୍ରାମର ମ୍ୟାପ ଡିଜିଟାଇଜେସନ୍ ଏବଂ ସ୍ୱତ୍ୱଲିପି ତଥ୍ୟର ସଂଯୋଗୀକରଣ କରାଯାଇଛି ।

୧୦୨. ମୋ ସରକାର ରାଜ୍ୟର ୧୦ଟି ଜିଲ୍ଲାରେ କ୍ରମଶଃ ହ୍ରାସ ପାଇଯାଉଥିବା ଜଙ୍ଗଲର ପୁନରୁଦ୍ଧାର ପାଇଁ ଏବଂ ଜୀବନଜୀବିକା ନିର୍ବାହ ନିମନ୍ତେ ଜଙ୍ଗଲ ଉପରେ ନିର୍ଭର କରୁଥିବା ଗ୍ରାମବାସୀମାନଙ୍କର ଉନ୍ନତି ସକାଶେ 'ଓଡ଼ିଶା ଜଙ୍ଗଲ ସେକ୍ଟର ଉନ୍ନୟନ ପ୍ରକଳ୍ପ'ର ଦ୍ୱିତୀୟ ପର୍ଯ୍ୟାୟ 'ବନାୟନ' କାର୍ଯ୍ୟକାରୀ କରୁଛନ୍ତି । ୧୨ଟି ଜଙ୍ଗଲ ଡିଭିଜନର ୧୨୦୦ଟି ଗ୍ରାମକୁ ନେଇ ଗଠିତ ହୋଇଥିବା ବନ ସୁରକ୍ଷା ସମିତି ମାଧ୍ୟମରେ ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେବ । ଅଧିକନ୍ତୁ ରାଜ୍ୟର ଦୁଇଟି ବନ୍ୟପ୍ରାଣୀ ଡିଭିଜନର ଜୈବ ବିବିଧତା ସଂରକ୍ଷଣ ଓଡ଼ିଶା ଜଙ୍ଗଲ ସେକ୍ଟର ଉନ୍ନୟନ ପ୍ରକଳ୍ପ – ଦ୍ୱିତୀୟ ପର୍ଯ୍ୟାୟ ଅଧୀନରେ କାର୍ଯ୍ୟକାରୀ ହେବ । ଆମ ଜଙ୍ଗଲ ଯୋଜନା ଯାହାକି ୧୭ଟି ଜିଲ୍ଲାରେ ୭୦୦୦ ବନ ସୁରକ୍ଷା ସମିତିକୁ ନେଇ ଗଠିତ ହୋଇଛି ତାହା ପର୍ଯ୍ୟାୟ କ୍ରମେ ୨୦୧୬–୧୭ ବର୍ଷରୁ ଆରମ୍ଭ ହୋଇ ଛଅ ବର୍ଷ ମଧ୍ୟରେ କାର୍ଯ୍ୟକାରୀ ହେବ ।

୧୦୩. ସବୁଜ ଓଡ଼ିଶା ମିଶନ ମାଧ୍ୟମରେ ୪୨ କୋଟି ଚାରା ରୋପଣ କରାଯାଇଛି । ୨୦୧୮–୧୯ ବର୍ଷରେ ୧୦ କୋଟି ୮୭ ଲକ୍ଷ ଚାରା ରୋପଣ ଲକ୍ଷ୍ୟ ରଖାଯାଇଛି । ଚଳିତ ବର୍ଷ ସହରାଞ୍ଚଳ ବୃକ୍ଷରୋପଣ କାର୍ଯ୍ୟକ୍ରମରେ ୧୧ ଲକ୍ଷ ୫ ହଜାର ଚାରାରୋପଣ କରାଯାଇଛି ଏବଂ ୨୦୧୮–୧୯ ବର୍ଷରେ ୩ ଲକ୍ଷ ୬୦ ହଜାର ଚାରାରୋପଣ କରାଯିବ । ସେହିପରି, ଲଣ୍ଡା ପାହାଡ଼ଗୁଡ଼ିକରେ ସବୁଜିମା ବୃଦ୍ଧି ପାଇଁ ୨୦୧୮–୧୯ରେ ୨୦୦୦ ହେକ୍ଟର ଲଣ୍ଡା ପାହାଡ଼ରେ ବୃକ୍ଷରୋପଣ କରାଯିବ । ଗତ ଚାରିବର୍ଷ ମଧ୍ୟରେ ୧୫.୮୧୦ ହେକ୍ଟର ଜମିରେ ବାଉଁଶ ରୋପଣ କରାଯାଇଛି । ପୁରୀ ରଥଯାତ୍ରା ସମୟରେ ରଥ ପାଇଁ ଆବଶ୍ୟକ ହେଉଥିବା କାଠ ଯୋଗାଇବା ନିମନ୍ତେ 'ଜଗନ୍ନାଥ ବନ ପ୍ରକଳ୍ପ' ମାଧ୍ୟମରେ ଚିହ୍ନିତ ଜାତିର ବୃକ୍ଷରୋପଣ କରାଯାଇଛି । ପରିବେଶ ସୁରକ୍ଷା ଏବଂ ସଂରକ୍ଷଣକୁ ଉତ୍ସାହିତ କରିବା ପାଇଁ ରାଜ୍ୟ ସରକାରଙ୍କ ଦ୍ୱାରା ୧୮୧ ଅନୁଷ୍ଠାନକୁ 'ପ୍ରକୃତି ମିତ୍ର' ଏବଂ ୧୯୫ ଜଣ ବ୍ୟକ୍ତିବିଶେଷଙ୍କୁ 'ପ୍ରକୃତି ବନ୍ଧୁ' ପୁରସ୍କାର ୨୦୧୭ ବିଶ୍ୱ ପରିବେଶ ଦିବସ ଅବସରରେ ପ୍ରଦାନ କରାଯାଇଛି ।

୧୦୪. ରାଜ୍ୟବାସୀଙ୍କର ସୁବିଧା ଓ ଚିରସ୍ରୋତା ମହାନଦୀର ସୁରକ୍ଷା ସୁନିଶ୍ଚିତ କରିବା ପାଇଁ ମୋ ସରକାର ଖୁବ୍‌ଶୀଘ୍ର 'ସବୁଜ ମହାନଦୀ ମିଶନ' ଆରମ୍ଭ କରିବାକୁ ଯାଉଛନ୍ତି । ସେଥିପାଇଁ ପାଞ୍ଚ ବର୍ଷରେ ୭୫ କୋଟି ୩୩ ଲକ୍ଷ ଟଙ୍କାର ବ୍ୟୟ

ଅଟକଳ କରାଯାଇଛି । ଏହି ମିଶନ ଅଧୀନରେ ମହାନଦୀ, ତେଲ ଏବଂ ଇବ୍ ନଦୀର ଦୁଇ ପାର୍ଶ୍ୱରେ ଏକ କିଲୋମିଟର ବ୍ୟାପୀ ସବୁଜବଳୟ ସୃଷ୍ଟି କରାଯିବ । ଏଥିପାଇଁ ୨୦୧୮–୧୯ ବର୍ଷରେ ୧୬ ହଜାର ୫୦୦ ହେକ୍ଟର ନୂଆ ବୃକ୍ଷରୋପଣ, ୫୦୦ କିଲୋମିଟର ପଥପାର୍ଶ୍ୱ ବୃକ୍ଷରୋପଣ ଏବଂ ଚାଷୀମାନଙ୍କୁ ୬୩ ଲକ୍ଷ ଚାରା ବଣ୍ଟନ କରାଯିବ ।

୧୦୫. ମୋ ସରକାର ଉତ୍କେଳା ଏବଂ ଜୟପୁର ଏୟାରଷ୍ଟ୍ରିପ୍‌ରେ ଆରସିଏସ୍–ଉଡାନ୍ ଯୋଜନା ଆରମ୍ଭ କରିବା ପାଇଁ ଆଗୁଆ ପଦକ୍ଷେପ ଗ୍ରହଣ କରିଛନ୍ତି । ୨୦୧୭–୧୮ ବର୍ଷରେ ରାଜ୍ୟ ପାଣ୍ଠିରୁ ୩୦ କୋଟି ଟଙ୍କା ବରାଦ କରାଯାଇ ଝାରସୁଗୁଡ଼ା ଏୟାରପୋର୍ଟକୁ ପୂର୍ଣ୍ଣ କାର୍ଯ୍ୟକ୍ଷମ କରାଇବା ନିମନ୍ତେ ଏୟାରପୋର୍ଟ ଅଥରିଟି ଅଫ୍ ଇଣ୍ଡିଆଙ୍କ ସହିତ ପରାମର୍ଶ ଜାରି ରହିଛି ।

୧୦୬. ରାଜ୍ୟରେ ରେଳପଥର ବିସ୍ତାର ପାଇଁ ମୋ ସରକାର ପ୍ରତିବଦ୍ଧ । ପ୍ରଥମ ଥର ପାଇଁ ନବରଙ୍ଗପୁର ଜିଲ୍ଲାକୁ ରେଳପଥ ଦ୍ୱାରା ସଂଯୋଗ କରିବା ନିମନ୍ତେ ଦୁଇଟି ନୂତନ ରେଳପଥ ଯୋଜନା ୧୩୦ କି.ମି. ଦୀର୍ଘ ଜୟପୁର–ମାଲକାନଗିରି ଓ ୩୮ କି.ମି. ଦୀର୍ଘ ନବରଙ୍ଗପୁର–ଜୟପୁର ରେଳପଥ ବିସ୍ତାର ପାଇଁ ରେଳ ମନ୍ତ୍ରାଳୟ ସହ ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି । ମୋ ସରକାର ରାଜ୍ୟରେ ରେଳପଥର ବିସ୍ତାର ପାଇଁ ନିଜର ପ୍ରତିବଦ୍ଧତା ସ୍ୱରୂପ ପୁରୀ–କୋଣାର୍କ ୩୨ କି.ମି. ଦୀର୍ଘ ରେଳପଥ ନିମନ୍ତେ ଉଭୟ ଜମି ଓ ନିର୍ମାଣ ବ୍ୟୟର ୫୦ ପ୍ରତିଶତ ଖର୍ଚ୍ଚ ବହନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

୧୦୭. ରାଜ୍ୟରେ ଦୁର୍ଗମ ଓ ଅପହଞ୍ଚ ଗ୍ରାମପଞ୍ଚାୟତଗୁଡ଼ିକୁ ପରିବହନ ସେବା ଯୋଗାଇ ଦେବା ପାଇଁ ଆରମ୍ଭ ହୋଇଥିବା ''ବିଜୁ ଗାଁ ଗାଡ଼ି ଯୋଜନା'' ରେ ୫୬୦ଟି ଗାଡ଼ି ଚଳାଚଳ କରୁଛି ।

୧୦୮. ରାଜ୍ୟରେ ସମ୍ଭାବ୍ୟ ୧୪ଟି ବନ୍ଦର ପ୍ରତିଷ୍ଠା ନିମନ୍ତେ ସ୍ଥାନ ନିରୂପଣ କରାଯାଇଛି, ଯାହା ଘରୋଇ ଓ ସରକାରୀ ସହଭାଗିତାରେ ସମ୍ପୂର୍ଣ୍ଣ ହେବ । ମୋ ସରକାର ବାଲେଶ୍ୱର ଜିଲ୍ଲାର ସୁବର୍ଣ୍ଣରେଖା ମୁହାଣ କୀର୍ତ୍ତନିଆଠାରେ ବନ୍ଦର ପ୍ରତିଷ୍ଠା ଚେନ୍ନାଇର କ୍ରିଏଟିଭ ପୋର୍ଟ ଡ଼େଭେଲପମେଣ୍ଟ ପ୍ରାଇଭେଟ ଲିଃ. ସହ ଚୁକ୍ତିନାମା ସ୍ୱାକ୍ଷରିତ କରିଛି । ସେହିପରି ପୁରୀ ଜିଲ୍ଲାର ଅସ୍ତରଙ୍ଗଠାରେ ଅନ୍ୟ ଏକ ବନ୍ଦରର ବିକାଶ ପାଇଁ ହାଇଦ୍ରାବାଦର ନବଯୁଗ ଇଞ୍ଜିନିୟରିଂ କମ୍ପାନୀ ଲିଃ. ସହ ଚୁକ୍ତିନାମା ସ୍ୱାକ୍ଷର କରାଯାଇଛି । ରାଜ୍ୟର ବନ୍ଦରଗୁଡ଼ିକର ସୁପରିଚାଳନା ପାଇଁ 'ଓଡ଼ିଶା ମେରିଟାଇମ୍ ବୋର୍ଡ' ଗଠନ କରିବା ପାଇଁ ସମସ୍ତ ଉଦ୍ୟମ କରାଯାଉଛି, ଯାହା ରାଜ୍ୟର ବନ୍ଦରଗୁଡ଼ିକର ଅଗ୍ରଗତି ପାଇଁ ସିଙ୍ଗଲ ୱିଣ୍ଡୋ ବ୍ୟବସ୍ଥା ପ୍ରଚଳନ କରାଇବାରେ ସହାୟକ ହେବ । ନୌଯାତ୍ରୀମାନଙ୍କର ସୁରକ୍ଷାକୁ ଧ୍ୟାନରେ ରଖି ''ସହିଦ୍ ବାଜିରାଉତ୍ ନୌଯାତ୍ରା ସୁରକ୍ଷା ଯୋଜନା'' ପ୍ରଣୟନ କରାଯାଇଛି । ଏଥିରେ ଡ଼ଙ୍ଗାଚାଳକମାନଙ୍କୁ ଶତକଡ଼ା ୯୫ ପ୍ରତିଶତ ରିହାତି ମୂଲ୍ୟରେ ନୌଯାତ୍ରା ସମୟରେ ନୌଯାତ୍ରୀମାନଙ୍କୁ ଆବଶ୍ୟକ ସୁରକ୍ଷା ସାମଗ୍ରୀ ଯୋଗାଇ ଦିଆଯିବ । ଏଥିରେ ଲାଇଫ୍ ଜ୍ୟାକେଟ୍, ଲାଇଫ ବୟ ଓ ନିଆଁଲିଭା ଯନ୍ତ୍ର ଇତ୍ୟାଦି ଅନ୍ତର୍ଭୁକ୍ତ ଅଟେ ।

୧୦୯. ତତ୍କାଳୀନ ବିହାର ଓ ଓଡ଼ିଶା ପାଇଁ କାର୍ଯ୍ୟକାରୀ ହେଉଥିବା ବିହାର ଓ ଓଡ଼ିଶା ଅବକାରୀ ଆଇନ–୧୯୧୫କୁ ରଦ୍ଦ କରାଯାଇ ଓଡ଼ିଶା ଅବକାରୀ ଆଇନ–୨୦୦୮ ପ୍ରଣୟନ କରାଯାଇଛି । ଏହି ଆଇନ ରାଜ୍ୟରେ ଅପ୍ରେଲ ୧ ତାରିଖ ୨୦୧୭ ଠାରୁ ଲାଗୁ କରାଯାଇଛି । ନୂତନ ଆଇନରେ ଅବକାରୀ ଥାନା ସ୍ଥାପନ, ସ୍ୱତନ୍ତ୍ର ଅଦାଲତ ଦ୍ୱାରା ବିଚାର ବ୍ୟବସ୍ଥା, ବେଆଇନ ମଦ ବ୍ୟବସାୟୀ ଓ ଚୋରା ମଦ ବେପାରୀଙ୍କ ସମ୍ପତ୍ତି ବାଜ୍ୟାପ୍ତି ନିମନ୍ତେ କଠୋର ବ୍ୟବସ୍ଥା ରହିଛି ।

୧୧୦. ମୋ ସରକାର ରାଜ୍ୟର ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି, ପଛୁଆ ବର୍ଗ ଓ ସଂଖ୍ୟାଲଘୁଙ୍କ ବିକାଶ ପାଇଁ ସାମଗ୍ରିକ ଓ ସମନ୍ୱିତ ପଦକ୍ଷେପ ଗ୍ରହଣ କରିବା ସହିତ ସେମାନଙ୍କ ସାମାଜିକ, ଆର୍ଥିକ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଜୀବିକା ନିର୍ବାହ

କ୍ଷେତ୍ରରେ ଉନ୍ନତି ସାଧନ ନିମନ୍ତେ ଅଗ୍ରାଧିକାର ଦେଇଛନ୍ତି । ମୋ ସରକାର ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କ ଗୁଣାତ୍ମକ ଶିକ୍ଷା ନିମନ୍ତେ ସଂଖ୍ୟାଧିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି, ଯହିଁରେ ୭୬୬ଟି ଆଶ୍ରମ ସ୍କୁଲ, ୫୦୫ଟି ସେବାଶ୍ରମ, ୩୩୭ଗୋଟି ବାଳକ ଓ ବାଳିକା ଉଚ୍ଚ ବିଦ୍ୟାଳୟ, ଆପଦଗ୍ରସ୍ତ ଜନଜାତିଙ୍କ ପାଇଁ ୧୯ଟି ଏଜୁକେସନାଲ କମ୍ପ୍ଲେକ୍ସ, ୫ଟି ଆବାସିକ ସେବାଶ୍ରମ ଓ ଗୁଣାତ୍ମକ ଶିକ୍ଷା ନିମନ୍ତେ ୧୩ଟି ଏକଲବ୍ୟ ଆଦର୍ଶ ଆବାସିକ ବିଦ୍ୟାଳୟ ଅନ୍ତର୍ଭୁକ୍ତ । ୪ ଲକ୍ଷ ୬୧ ହଜାର ଅନୁସୂଚିତ ଜନଜାତି ଓ ଜାତିର ବିଦ୍ୟାର୍ଥୀ ଏହି ଅନୁଷ୍ଠାନଗୁଡ଼ିକରେ ଶିକ୍ଷାଲାଭ କରୁଛନ୍ତି । ସେମାନଙ୍କ ମଧ୍ୟରୁ ୨ଲକ୍ଷ ୭୩ ହଜାରରୁ ଅଧିକ ଛାତ୍ରୀ ଅଛନ୍ତି ।

୧୧୧. ମୋ ସରକାର ଅନୁସୂଚିତ ଜନଜାତି ଓ ଜାତି ଛାତ୍ରଛାତ୍ରୀଙ୍କୁ ଉନ୍ନତମାନର ଶିକ୍ଷା ସୁଯୋଗ ଯୋଗାଇଦେବା ଉଦ୍ଦେଶ୍ୟରେ 'ଅନ୍ୱେଷା' ନାମରେ ଏକ ଯୁଗାନ୍ତକାରୀ ଯୋଜନାର ଶୁଭାରମ୍ଭ କରିଛନ୍ତି । ଏହାଦ୍ୱାରା ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଛାତ୍ରଛାତ୍ରୀମାନେ ରାଜ୍ୟର ଶ୍ରେଷ୍ଠ ବେସରକାରୀ ବିଦ୍ୟାଳୟଗୁଡ଼ିକରେ ଗୁଣାତ୍ମକ ଶିକ୍ଷାଲାଭ କରିପାରିବେ । ଏହି ବିଦ୍ୟାଳୟଗୁଡ଼ିକରେ ୧୩,୪୩୭ ଛାତ୍ରଛାତ୍ରୀ ନାମ ଲେଖାଇଛନ୍ତି । ସେମାନଙ୍କୁ ମାଗଣାରେ ଛାତ୍ରାବାସ, ଖାଦ୍ୟ ଓ ଅନ୍ୟାନ୍ୟ ସୁବିଧା ଯୋଗାଇ ଦିଆଯାଉଛି । ମୋ ସରକାର ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ଯୁବକମାନଙ୍କୁ ଆତ୍ମନିଯୁକ୍ତି ଦେବା ପାଇଁ ସରକାରୀ ଓ ବେସରକାରୀ ସ୍ୱୀକୃତିପ୍ରାପ୍ତ ଆଇଟିଆଇଗୁଡ଼ିକରେ ବିଭିନ୍ନ ଟ୍ରେଡ୍‌ରେ ନିଯୁକ୍ତିଭିତ୍ତିକ ପ୍ରଶିକ୍ଷଣ, ପ୍ରାକ୍-ନିଯୁକ୍ତି ପ୍ରଶିକ୍ଷଣ ଏବଂ ଦକ୍ଷତା ବିକାଶ ପ୍ରଶିକ୍ଷଣ ଯୋଗାଇ ଦେଉଛନ୍ତି ।

୧୧୨. ମୋ ସରକାର ଜଙ୍ଗଲ ଅଧିକାର ଆଇନକୁ ଏକ ମିଶନ୍ ଭାବରେ କାର୍ଯ୍ୟକାରୀ କରୁଛନ୍ତି । ଜଙ୍ଗଲ ଅଧିକାର ସ୍ୱତ୍ତ୍ୱ ପ୍ରଦାନରେ ଓଡ଼ିଶା ଦେଶରେ ସର୍ବପ୍ରଥମ । ବିଭିନ୍ନ ସରକାରୀ ଯୋଜନା ସହିତ ସଂଯୋଗ କରାଯାଇ ୪ ଲକ୍ଷ ୧୧ ହଜାରରୁ ଅଧିକ ଅନୁସୂଚିତ ଜନଜାତିଙ୍କୁ ବ୍ୟକ୍ତିଗତ ସ୍ୱତ୍ତ୍ୱ ଓ ୫୯୬୪ ଗୋଷ୍ଠୀଗତ ଜଙ୍ଗଲ ଅଧିକାର ସ୍ୱତ୍ତ୍ୱ ସହିତ ଆପଦଗ୍ରସ୍ତ ଜନଜାତି ପରିବାରଙ୍କୁ ୧୮,୪୮୦ଟି ବ୍ୟକ୍ତିଗତ ସ୍ୱତ୍ତ୍ୱ ପ୍ରଦାନ କରାଯାଇଛି ।

୧୧୩. ମୋ ସରକାର ଓଡ଼ିଶାର ସମୃଦ୍ଧ ହସ୍ତତନ୍ତ ପରମ୍ପରା ସମ୍ପର୍କରେ ସଚେତନ ଏବଂ ଏହି କ୍ଷେତ୍ରର ସାମଗ୍ରିକ ବିକାଶ ପାଇଁ ଅନେକ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରୁଛନ୍ତି । ୨୦୧୭-୧୮ ବର୍ଷରେ ମୋ ସରକାର ରାଜ୍ୟରେ ବୁଣାକାରମାନଙ୍କ ପାଇଁ ୬୮୪ଟି ତନ୍ତଶାଳା ନିର୍ମାଣ ନିମନ୍ତେ ୪୭୮.୮୦ ଲକ୍ଷ ଟଙ୍କା ପ୍ରଦାନ କରିଛନ୍ତି । ସେହିପରି ୧୫୪୦ ଜଣ ହିତାଧିକାରୀଙ୍କ ଦକ୍ଷତା ବିକାଶ ତାଲିମ ବାବଦକୁ ୩୮୯.୮୦ ଲକ୍ଷ ଟଙ୍କା ପ୍ରଦାନ କରାଯାଇଛି । ଅତି ଉତ୍ତମ ଗୁଣବତ୍ତାସମ୍ପନ୍ନ ବିଭିନ୍ନ ଡିଜାଇନ୍‌ର ରେଶମ ଏବଂ ଟସର ବସ୍ତ୍ର ଉତ୍ପାଦନ ନିମନ୍ତେ ଗୋପାଳପୁର, ଫକୀରପୁର, ମାକିଡିଆଠାରେ ତିନୋଟି ବ୍ଲକ୍ ପ୍ରିଣ୍ଟିଂ ୟୁନିଟ୍ ସ୍ଥାପନ କରାଯାଇଛି । 'ଭାରତ ହ୍ୟାଣ୍ଡଲୁମ୍ ବ୍ରାଣ୍ଡ୍' ଅଧୀନରେ ୨୪ଟି ସଂସ୍ଥା ରେଜିଷ୍ଟ୍ରିଭୁକ୍ତ ହୋଇଛନ୍ତି । ବୟସ୍କ ବୁଣାକାରମାନଙ୍କୁ ସାମାଜିକ ନିରାପତ୍ତା ଯୋଗାଇ ଦେବା ଲକ୍ଷ୍ୟରେ 'ବରିଷ୍ଠ ବୁଣାକାର ସହାୟତା ଯୋଜନା' ନାମରେ ଏକ ମାସିକିଆ ଆର୍ଥିକ ସହାୟତା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ୧୬,୯୯୦ ଜଣ ରେଶମ ଚାଷୀଙ୍କୁ 'ଆମ୍ ଆଦ୍‌ମୀ ବୀମା ଯୋଜନା'ରେ ଅନ୍ତର୍ଭୁକ୍ତ କରାଯାଇଛି ।

୧୧୪. ଚଳିତ ଆର୍ଥିକ ବର୍ଷରେ ୪,୪୨୪ ଜଣ ହସ୍ତଶିଳ୍ପ କାରିଗରଙ୍କୁ ବିଭିନ୍ନ ପ୍ରଶିକ୍ଷଣ ପ୍ରଦାନ କରାଯାଉଛି ଏବଂ ୭୫୦ ଜଣ ହସ୍ତଶିଳ୍ପ କାରିଗରଙ୍କୁ ବଜାର ସହାୟତା ଯୋଗାଇ ଦିଆଯାଇଛି । ଏହାବ୍ୟତୀତ କାରିଗରମାନଙ୍କୁ ନିଜସ୍ୱ ଉଦ୍ୟୋଗ ପ୍ରତିଷ୍ଠା ପାଇଁ ସ୍ୱଳ୍ପ ଆର୍ଥିକ ସହାୟତା, ତନ୍ତଶାଳା-ଗୃହ ନିର୍ମାଣ, ଡିଜାଇନ୍ ବିକାଶ ସହାୟତା ଏବଂ ଅଭିଜ୍ଞତା ହାସଲ ପରିଦର୍ଶନ କାର୍ଯ୍ୟକ୍ରମରେ

ରାଜ୍ୟ ବାହାରକୁ ପଠାଯାଇଛି । ମୋ ସରକାର ହସ୍ତତନ୍ତ ଓ ହସ୍ତଶିଳ୍ପର ବିକାଶ ଏବଂ ହସ୍ତଶିଳ୍ପୀମାନଙ୍କ ସଶକ୍ତିକରଣ ପାଇଁ ଯଥାଶୀଘ୍ର ଏକ ପରିଷଦ ଗଠନ କରୁଛନ୍ତି ।

୧୧୫. ମୋ ସରକାର ଉଦୀୟମାନ ଯୁବ କ୍ରୀଡ଼ାବିତ୍‌ମାନଙ୍କୁ ବିଭିନ୍ନ କ୍ରୀଡ଼ା ଶୃଙ୍ଖଳାରେ ପ୍ରଶିକ୍ଷଣ ଦେବା ସହ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ କ୍ରୀଡ଼ା ଏକାଡ଼େମୀ ପ୍ରତିଷ୍ଠା ନିମନ୍ତେ ଏକ ମହତ୍ତ୍ୱାକାଂକ୍ଷୀ ଯୋଜନା ରଖିଛନ୍ତି । ହାଇ ପରଫର୍‌ମାନ୍ସ ଆଥ୍‌ଲେଟିକ୍ସ ଏକାଡେମୀ ପ୍ରତିଷ୍ଠା ନିମନ୍ତେ ଭାରତୀୟ ଦୌଡ଼କୁଦ ମହାସଂଘ ଏବଂ ଅନ୍ତର୍ଜାତୀୟ ଦୌଡ଼କୁଦ ମହାସଂଘ ସହ ଚୁକ୍ତି ସ୍ୱାକ୍ଷର କରାଯାଇଛି । ବ୍ଲକ୍ ଏବଂ ସହରାଞ୍ଚଳରେ କ୍ରୀଡ଼ା ଓ କ୍ରୀଡ଼ା ଭିତ୍ତିଭୂମିର ସୁବିଧା ଉପଲବ୍ଧ କରାଇବା ନିମନ୍ତେ ରାଜ୍ୟର ସମସ୍ତ ୩୧୪ ବ୍ଲକ୍ ଏବଂ ୧୧୨ ସହରାଞ୍ଚଳକୁ 'କ୍ଷୁଦ୍ର କ୍ରୀଡ଼ାଙ୍ଗନ' ଯୋଜନାରେ ସାମିଲ କରାଯାଇଛି । ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ୨୦୧୬ ମସିହାରୁ ବଚେନ୍ଦ୍ରି ପାଲ୍‌ଙ୍କ ନେତୃତ୍ୱରେ ଟାଟା ଷ୍ଟିଲ୍ ଆଡ୍‌ଭେନ୍‌ଚର୍ ଫାଉଣ୍ଡେସନ୍‌ର ସହଯୋଗିତାକ୍ରମେ ଏକ ବାର୍ଷିକ କାର୍ଯ୍ୟକ୍ରମ ଭାବରେ 'ବିଜୁ ପଟ୍ଟନାୟକ ହିମାଳୟ ଅଭିଯାନ' ଆରମ୍ଭ ହୋଇଛି ।

୧୧୬. ଭାରତର ପର୍ଯ୍ୟଟନ ଦୃଶ୍ୟପଟରେ ଆମ ରାଜ୍ୟ ଏକ ଅନନ୍ୟ ସ୍ଥାନ ଅଧିକାର କରିଛି । ଓଡ଼ିଶାକୁ ପର୍ଯ୍ୟଟକଙ୍କ ସର୍ବାଧିକ ଆକର୍ଷଣୀୟ ଲକ୍ଷ୍ୟସ୍ଥଳ ଭାବରେ ବିକଶିତ କରିବା ଏବଂ ଏହାକୁ ଦେଶର ତଥା ବିଶ୍ୱର ପର୍ଯ୍ୟଟନ ମାନଚିତ୍ରରେ ପ୍ରମୁଖ ସ୍ଥାନ ପ୍ରଦାନ କରିବା ଉଦ୍ଦେଶ୍ୟରେ ପର୍ଯ୍ୟଟନ ସମ୍ପଦର ପରିବର୍ଦ୍ଧନ ନିମନ୍ତେ ମୋ ସରକାର ନୂତନ ପର୍ଯ୍ୟଟନ ନୀତି–୨୦୧୬ ପ୍ରଣୟନ କରିଛନ୍ତି । ଧଉଳି ଓ କୋଣାର୍କଠାରେ 'ଆଲୋକ ଓ ଧ୍ୱନି' ପ୍ରକଳ୍ପ କାର୍ଯ୍ୟ କରୁଛି । ନରେନ୍ଦ୍ର ପୋଖରୀଠାରେ ମଲ୍‌ଟିମିଡିଆ ପ୍ରଦର୍ଶନ ବ୍ୟବସ୍ଥା ସମ୍ପନ୍ନ ହୋଇଛି ଓ ବିନ୍ଦୁସାଗରଠାରେ କାର୍ଯ୍ୟ ଚାଲୁ ରହିଛି । ଖଣ୍ଡଗିରି ଓ ଉଦୟଗିରିରେ 'ଆଲୋକ ଓ ଧ୍ୱନି' ବ୍ୟବସ୍ଥା କାର୍ଯ୍ୟକାରୀ ହେବାକୁ ଯାଉଛି ।

୧୧୭. ଭାରତୀୟ ସଂସ୍କୃତିରେ ତୀର୍ଥଯାତ୍ରାର ତାତ୍ପର୍ଯ୍ୟ ରହିଛି ଓ ଏହାକୁ ଏକ ଆଧ୍ୟାତ୍ମିକ ଏବଂ ଦିବ୍ୟ ଅଭିଜ୍ଞତା ଭାବରେ ବିଚାର କରାଯାଏ । ଏହାକୁ ଦୃଷ୍ଟିରେ ରଖି ପର୍ଯ୍ୟଟନ ବିଭାଗ 'ବରିଷ୍ଠ ନାଗରିକ ତୀର୍ଥଯାତ୍ରା' ଯୋଜନା ସଫଳତାର ସହିତ ଆୟୋଜନ କରି ଆସୁଛି ଏବଂ ୨୦୧୭–୧୮ ବର୍ଷରେ ୩ ହଜାର ବରିଷ୍ଠ ନାଗରିକ ଏହି ଯୋଜନାର ସୁଫଳ ଲାଭ କରୁଛନ୍ତି ।

୧୧୮. ଓଡ଼ିଶାର ଅନନ୍ୟ ସାଂସ୍କୃତିକ ଐତିହ୍ୟର ପ୍ରୋତ୍ସାହନ, ସଂରକ୍ଷଣ ଓ ପ୍ରସାର ନିମନ୍ତେ ମୋ ସରକାର ନିରନ୍ତର ଉଦ୍ୟମ କରୁଛନ୍ତି । କଳାକାରମାନଙ୍କୁ କଳାକାର ମହାସଂଘଗୁଡ଼ିକ ମାଧ୍ୟମରେ ଜୀବିକାର୍ଜନ ନିମନ୍ତେ ସମର୍ଥନ ଯୋଗାଇଦେବାରେ ଓଡ଼ିଶା ପ୍ରଥମ ରାଜ୍ୟ । ମୁଁ ଆନନ୍ଦିତ ଯେ ମୋ ସରକାର ଓଡ଼ିଆ ଭାଷାର ବିକାଶ, ପ୍ରସାର ଓ ବ୍ୟାପକ ଆଦୃତି ନିମନ୍ତେ 'ଓଡ଼ିଆ ଭର୍ଚୁଆଲ ଏକାଡେମୀ' ପ୍ରତିଷ୍ଠା କରିଛନ୍ତି । ଏହି ଏକାଡେମୀରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ସଂପର୍କିତ ଦଲିଲ ଦସ୍ତାବିଜ୍, ପୋଥି, ବିଭିନ୍ନ ସାମଗ୍ରୀ ଓ ସ୍ମାରକ ଇଲେକ୍‌ଟ୍ରୋନିକ୍ ପଦ୍ଧତିରେ ଗଚ୍ଛିତ ରହିବ । ଓଡ଼ିଆ ଭାଷାର ବିଭିନ୍ନ କାଳଜୟୀ ପୁସ୍ତକ, ପୁରସ୍କୃତ ତଥା ଅନୁଦିତ ପୁସ୍ତକମାନ ଉପଲବ୍ଧ କରାଇବା ପାଇଁ ପ୍ରତି ଜିଲ୍ଲାରେ ସର୍ବସାଧାରଣ ପୁସ୍ତକାଗାର ସ୍ଥାପନ କରାଯିବ । ଜିଲ୍ଲାସ୍ତରରେ ପୂର୍ବରୁ ରହିଥିବା ପୁସ୍ତକାଗାରଗୁଡ଼ିକୁ ଇ–ଲାଇବ୍ରେରୀ ଓ ସ୍ମାର୍ଟ ଲାଇବ୍ରେରୀ ଭାବରେ ଉନ୍ନୀତ କରାଯିବ ।

୧୧୯. ଗଣତନ୍ତ୍ରର ସଫଳ କାର୍ଯ୍ୟକାରିତାରେ ଏକ ସୂଚନାସମୃଦ୍ଧ ସମାଜର ଭୂମିକା ଅନସ୍ୱୀକାର୍ଯ୍ୟ । ଏଣୁ ବିଭିନ୍ନ ଯୋଜନା ଏବଂ କାର୍ଯ୍ୟକ୍ରମ ସମ୍ପର୍କରେ ଜନସାଧାରଣଙ୍କୁ ସୂଚନା ପ୍ରଦାନ ଓ ସେମାନଙ୍କୁ ସଚେତନ କରିବା ଲକ୍ଷ୍ୟରେ ତଥା ବିକାଶ ପ୍ରକ୍ରିୟାରେ ଜନସାଧାରଣଙ୍କ ସକ୍ରିୟ ଅଂଶଗ୍ରହଣ ନିମନ୍ତେ ମୋ ସରକାର ସୂଚନା ଓ ଲୋକସମ୍ପର୍କ ବିଭାଗ ମାଧ୍ୟମରେ ବହୁବିଧ କାର୍ଯ୍ୟକ୍ରମ

ଗ୍ରହଣ କରିଛନ୍ତି । ସୂଚନା ଅଧିକାର ଆଇନ୍‌କୁ ବ୍ୟବହାର ଉପଯୋଗୀ ସୂଚନା ପ୍ରଯୁକ୍ତି କୌଶଳ ପ୍ରୟୋଗ ଦ୍ୱାରା କାର୍ଯ୍ୟକାରୀ କରାଯାଇଛି, ଯେଉଁଥିପାଇଁ ରାଜ୍ୟକୁ ସର୍ବଶ୍ରେଷ୍ଠ ସରକାରୀ ପୋର୍ଟାଲ୍ ବର୍ଗରେ ସମ୍ମାନଜନକ ଇ-ଗଭର୍ଣ୍ଣାନ୍ସ ପୁରସ୍କାର ମିଳିଛି । ମୋ ସରକାର ନୂତନ ସାମାଜିକ ଗଣମାଧ୍ୟମ ପ୍ଲାଟ୍‌ଫର୍ମକୁ ଆବଶ୍ୟକୀୟ ସହାୟତା ଯୋଗାଇଦେବା ନିମନ୍ତେ ନିକଟରେ ''ରାଜ୍ୟ ୱେବ୍ ମିଡ଼ିଆ ନୀତି'' ପ୍ରଣୟନ କରିଛନ୍ତି ।

୧୨୦. ଓଡ଼ିଶାର କଳା, ସଂସ୍କୃତି ଏବଂ ପରମ୍ପରାର ଆଲେଖ୍ୟ ଓଡ଼ିଆ ମାସିକ ପତ୍ରିକା 'ଉତ୍କଳ ପ୍ରସଙ୍ଗ' ଏବଂ ଇଂରାଜୀରେ ପ୍ରକାଶିତ 'ଓଡ଼ିଶା ରିଭ୍ୟୁ' ସହ ଏହାର ଇ-ସଂସ୍କରଣ ଏବଂ ସାମାଜିକ, ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଓ ସାହିତ୍ୟିକ ଦିଗକୁ ପ୍ରସାରିତ କରୁଥିବା ଏକ ସୂଚନାଧର୍ମୀ ଦ୍ୱିବାର୍ଷିକୀ ପୁସ୍ତକ ''ଓଡ଼ିଶା ରେଫରେନ୍ସ୍ ଆନୁଆଲ୍''ର ପ୍ରକାଶ ଦ୍ୱାରା ନାଗରିକମାନଙ୍କୁ ସମୃଦ୍ଧ, ସଶକ୍ତ ଓ ଉଦ୍‌ବୁଦ୍ଧ କରାଯାଇପାରୁଛି ।

୧୨୧. ପ୍ରବାଦପୁରୁଷ, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ସମ୍ମାନାର୍ଥେ ଏକ ସ୍ମାରକୀ ଡାକଟିକଟ ମାର୍ଚ୍ଚ ୫ ତାରିଖ ଦିନ ତାଙ୍କର ୧୦୨ତମ ଜନ୍ମତିଥି ଅବସରରେ ଆୟୋଜିତ ଏକ ରାଜ୍ୟସ୍ତରୀୟ ଉତ୍ସବରେ ଉନ୍ମୋଚିତ ହୋଇଛି ।

୧୨୨. ଓଡ଼ିଶା ଆଜି ଦ୍ରୁତ ବୈଷମ୍ୟବିହୀନ, ସାମୂହିକ ସାମାଜିକ-ଅର୍ଥନୈତିକ ବିକାଶର ଉନ୍ମୁକ୍ତ ପଥରେ ଅଗ୍ରସର । ଦାରିଦ୍ର୍ୟ ଦୂରୀକରଣ ଯୋଜନା, ବିକାଶ ପ୍ରକ୍ରିୟାରେ ଜନଜାତି ଏବଂ ମହିଳାମାନଙ୍କ ଅନ୍ତର୍ଭୁକ୍ତି, ଦୁର୍ନୀତିବିରୋଧୀ କାର୍ଯ୍ୟକ୍ରମ ଏବଂ ରାଜ୍ୟର ସବୁ ବର୍ଗର ଜନସାଧାରଣଙ୍କ ସଶକ୍ତିକରଣ ନିମନ୍ତେ ମୋ ସରକାରଙ୍କ ପ୍ରୟାସ ଆଜି ଜାତୀୟ ସ୍ତରରେ ସଂଖ୍ୟାଧିକ କୀର୍ତ୍ତିମାନ ସ୍ଥାପନ କରିଛି । ଏକଦା, ଖାଦ୍ୟଶସ୍ୟରେ ଏକ ନିଅଣ୍ଟିଆ ରାଜ୍ୟ ଓଡ଼ିଶା ବର୍ତ୍ତମାନ ବଳକା ରାଜ୍ୟ ଭାବେ ପରିଗଣିତ ହୋଇ ଦେଶର ସାଧାରଣ ବଣ୍ଟନ ବ୍ୟବସ୍ଥାରେ ତୃତୀୟ ବୃହତ୍ତମ ଯୋଗଦାନକାରୀ ରାଜ୍ୟ ଭାବେ ଉଭା ହୋଇଛି । କୃଷି ଉତ୍ପାଦନ ଓ କୃଷକମାନଙ୍କ ଆୟ ଦ୍ୱିଗୁଣିତ କରାଯାଇଛି ଏବଂ ୮ ନିୟୁତରୁ ଅଧିକ ଲୋକଙ୍କୁ ଦାରିଦ୍ର୍ୟ ସୀମାରେଖାରୁ ଊର୍ଦ୍ଧ୍ୱକୁ ଅଣାଯାଇପାରିଛି । ମୋ ସରକାର ଗ୍ରାମ୍ୟ ଗୃହ ନିର୍ମାଣ କାର୍ଯ୍ୟକ୍ରମ ଏବଂ ସହରାଞ୍ଚଳ ବସ୍ତିବାସିନ୍ଦାଙ୍କୁ ଜମି/ସମ୍ପତ୍ତି ଅଧିକାର ପ୍ରଦାନ କ୍ଷେତ୍ରରେ ଦେଶରେ ସର୍ବାଗ୍ରେ ରହିଛନ୍ତି । ରାଜ୍ୟରେ ଶିଶୁ ମୃତ୍ୟୁହାର ଉଲ୍ଲେଖନୀୟ ଭାବେ ହ୍ରାସ କରାଯାଇପାରିଛି ଓ ଏହା ଜାତୀୟ ହାର ତୁଳନାରେ ବେଶ୍ ନିମ୍ନରେ ରହିଛି । ମୋ ସରକାରଙ୍କ ବିପର୍ଯ୍ୟୟ ପରିଚାଳନା ମଡେଲ ବିଶ୍ୱସ୍ତରୀୟ ସାବ୍ୟସ୍ତ ହେବା ସହ ଆର୍ନ୍ତଜାତିକ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଛି । ଆମେ ଏବେ ଏକ ସୁଦୃଢ଼ ପଥରେ ଲୋକାଭିମୁଖୀ ସୁଶାସନ ସହିତ ଅଗ୍ରସର ହେଉଛେ ।

ଆଜିର ଓଡ଼ିଶା ନିଜର କର୍ତ୍ତବ୍ୟନିଷ୍ଠା ବଳରେ ଉତ୍କର୍ଷ ହାସଲ କରି ଆଗାମୀ କାଲିର ଓଡ଼ିଶାକୁ ଅଧିକ ସରସ ଏବଂ ସୁନ୍ଦର କରି ଗଢ଼ିତୋଳିବ ।

ମୁଁ ବର୍ତ୍ତମାନ ଆଲୋଚନା ଜାରି ରଖିବା ପାଇଁ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଏହି ଅଧିବେଶନର ସଫଳତା କାମନା କରୁଛି ।

**ବନ୍ଦେ ଉତ୍କଳ ଜନନୀ ।**

❖ ❖ ❖

# ଓଡ଼ିଆର ଶୌର୍ଯ୍ୟଗାଥା ଓ ଶୁଭଦ୍ରଷ୍ଟା ସକାଳ

ଡକ୍ଟର ଦେବାଶିଷ ପାତ୍ର

ଶୁଭଦ୍ରଷ୍ଟା ଅପ୍ରେଲର ପ୍ରଥମ ସକାଳ କହିଦିଏ ଓଡ଼ିଆ ଜାତିର ଏକ ପ୍ରଣମ୍ୟ ଅତୀତ ଅଛି, ଯେଉଁ ଅତୀତ ଓଡ଼ିଆର ଶୌର୍ଯ୍ୟଗାଥାରେ ମୁଖରିତ । ପରମ୍ପରାର ମହମହ ବାସ୍ନାରେ ମହକିତ । ସେହି ଓଡ଼ିଆ ଜାତିର ଓଡ଼ିଆତ୍ୱ ସମ୍ପର୍କରେ ଚର୍ଚ୍ଚା କଲାବେଳେ ଆମର କାହିଁକି ମନେହୁଏ, ଓଡ଼ିଆର ରହିଛି ଗଭୀର ଆତ୍ମ ସମୀକ୍ଷଣ ଦୃଷ୍ଟି ଓ ଆତ୍ମବୋଧ । ଯାହା ତା'ର ଅସ୍ତିତ୍ୱ ଓ ଅସ୍ମିତାର ପରିଚୟ ବହନ କରେ । ଅତୀତର କାଳଖଣ୍ଡରେ ନିଜକୁ ପରିଭାଷିତ କରିପାରିଥିବା ମଧୁବର୍ଷୀ 'ଉତ୍କଳ' ଯେ ଦିନେ 'ଓଡ଼ିଶା' ନାଁରେ ପରିଚିତ ହେବ, ଆଉ ବିବିଧ ଅନୁଭବ ନେଇ ସାଂସ୍କୃତିକ ସାମ ସଂଗୀତ ଗାଇ ଉଠିବ, ଏହା କଳ୍ପନାତୀତ ଥିଲା । ଅଥଚ କତିପୟ ମନୀଷୀଙ୍କ ସ୍ୱପ୍ନାବିଷ୍ଟ ମନ ଓ ଗଢ଼ିବା ପଣ ଗଢ଼ି ଦେଇଗଲା ଓଡ଼ିଶା ଭୂଗୋଳର ନୂଆ ନକ୍ସା ଆଉ ଶୁଣେଇଲା ଭୂମିରୁ ଭୂମାକୁ ସଞ୍ଚରି ଯାଉଥିବା 'ବନ୍ଦେ ଉତ୍କଳ ଜନନୀ'ର ଅନୁପମ ଶବ୍ଦ ସଂଚାର ।

ଅତୀତରେ କଳିଙ୍ଗ, ଉତ୍କଳ, ଉଡ୍ର ନାମରେ ପରିଚିତ ଥିବା ଏହି ଐତିହ୍ୟଭରା ଭୂଖଣ୍ଡ ସମ୍ପର୍କରେ 'କପିଳ ସଂହିତା'ରେ କୁହାଯାଇଥିଲା, 'ରାଷ୍ଟ୍ରମାନଙ୍କ ମଧ୍ୟରେ ଭାରତ ଶ୍ରେଷ୍ଠ ଓ ଭାରତ ମଧ୍ୟସ୍ଥ ପ୍ରଦେଶମାନଙ୍କ ମଧ୍ୟରେ ଉତ୍କଳ ଶ୍ରେଷ୍ଠ' । ପ୍ରକୃତରେ ନିଜର ସାମର୍ଥ୍ୟ ଓ ବିପୁଳ ଉତ୍ସାହ ଫଳରେ ଏହି ପ୍ରଦେଶ ଏକଦା ପରମ୍ପରା ଓ ପୁରୋଦୃଷ୍ଟିର ଭୂଖଣ୍ଡ ଭାବରେ ପରିଚୟ ତିଆରି କରିପାରିଥିଲା । ପ୍ରକୃତରେ ଆଜିର ଏହି ଶୁଭ ଲଗ୍ନରେ ଏ ଜାତିର ଉତ୍ତରପିଢ଼ି ନିକଟରେ ସେହି ସାମର୍ଥ୍ୟ ଓ ସଫଳତାର ସ୍ମୃତି ପରଖିବାର ସମୟ ଆସିଛି ।

ପ୍ରାଚୀନ ସମୟରେ ରଚିତ 'ଐତ୍ରେୟ ବ୍ରାହ୍ମଣ'ରେ ପ୍ରଥମେ କଳିଙ୍ଗ ରାଜ୍ୟର ନାମୋଲ୍ଲେଖ ରହିଥିବାର ଦେଖିବାକୁ ମିଳେ । ପରବର୍ତ୍ତୀ ସମୟରେ ରଚିତ ସଂସ୍କୃତ 'ରାମାୟଣ' ଓ ମହାଭାରତ' ବେଳକୁ ଉତ୍କଳ ଯେ ଖ୍ୟାତ, ତାହାର ବୀରତ୍ୱ ପାଇଁ ତାହା ପ୍ରମାଣିତ କରିଛନ୍ତି ବାଲ୍ମିକୀ ଓ ବ୍ୟାସଙ୍କ ପରି ଅନେକ କବି ।

ତତୋ ଗୋଦାବରୀଂ ନଦ୍ୟାଂ କୃଷ୍ଣ ବେଣ୍ୟାଂ ମହାନଦୀଂ
ମେକଳାନୁକୂଳଂ ଶୈବ ଦଶାର୍ଣ୍ଣ ନଗାରାଣ୍ୟପି ।
ତଥା ମତ୍ସ୍ୟ କଳିଙ୍ଗାଶ୍ଚ କୌଶିକାଶ୍ଚ ସମନ୍ତତଃ
ଖସ୍ୱୀକ୍ଷ୍ୟ ଦଣ୍ଡକାରଣ୍ୟ ସପର୍ବତ ନଦୀଗୁହାଂ ।

(କିଷ୍କିନ୍ଧ୍ୟାକାଣ୍ଡ– ରାମାୟଣ)

ପ୍ରକୃତରେ ଭୃଗୁମାନ ପର୍ବତମାଳା, ଅବଗୁଣ୍ଠନବତୀ ଅରଣ୍ୟାନୀ, ଅନୁରାଗ ମଣ୍ଡିତ ଶିଳାରାଜ, ନୀଳମେଘୀ ମହାନଦୀ ଯେ ଦିନେ ଉତ୍କଳର ଗରିମାକୁ ପରିପୂର୍ଣ୍ଣତାରେ ଭରିଦେଇଥିଲା ତାହା ବିସ୍ମୟକର ମନେହୁଏ । ପୁନଶ୍ଚ ମହାଭାରତର 'ଦ୍ରୋଣପର୍ବ'ରେ ବର୍ଣ୍ଣିତ ଅଛି, 'ଉତ୍କଳା ମେଖଳାଃ ପୌଣ୍ଡ୍ରାଃ କଳିଙ୍ଗାଶ୍ୟଶ୍ଚ ସଂଯୁଗେ', 'କପିଳ ସଂହିତା'ରେ 'ଉତ୍କଳସ୍ୟ ସମୋଦେଶଃ ଦେଶନାସ୍ତି ମହୀତଳେ', ସ୍କନ୍ଦପୁରାଣରେ 'ଓଡ୍ରଦେଶ ଇତିଖ୍ୟାତୋ ବର୍ଷେ ଭାରତ ସଂଜ୍ଞିତଂ' ହିଁ ଆମର ଗୌରବରେ ରହିଥିବା ସିକ୍ତ ମଧୁର ଗନ୍ଧ । ଇଂରାଜୀ ଗ୍ରନ୍ଥ 'Castes in India' ଗ୍ରନ୍ଥରେ ଭାରତର ଜାତିମାନଙ୍କ ସମ୍ପର୍କରେ ଆଲୋଚନା କରି ଲେଖାଯାଇଛି, 'ଉଡ୍ର' ଜାତି ଅତ୍ୟନ୍ତ ଉନ୍ନତ ଥିଲେ ଏବଂ ଅନ୍ତଃବାଣିଜ୍ୟ ଓ ବହିର୍ବାଣିଜ୍ୟରେ ଥିଲେ ବିଶେଷ

ବିଚକ୍ଷଣ । ଐତିହାସିକମାନଙ୍କ ମତରେ ଉତ୍କଳୀୟ ଭୂଖଣ୍ଡରେ କେଉଁ କାଳରୁ 'ଓକ୍‌କଲ' ଏବଂ 'ଓଡିସୁ'ମାନେ ବାସ କରୁଥିଲେ । ଦ୍ରାବିଡ ଭାଷାରେ ଯାହାର ଅର୍ଥ ଚଷା, ଏହି ଦୁଇ ଶବ୍ଦରୁ 'ଉତ୍କଳ' ଓ 'ଉଡ୍ର' ଶବ୍ଦର ସୃଷ୍ଟି । ତେଣୁ ଓଡ଼ିଆ ଜାତି ଯେ କ୍ଷେତର ହରିତ୍ ସ୍ରୋତ ଭିତରେ ନିଜକୁ ସମାହିତ କରିବା ସହ ପାଳଗଦାର ସିକ୍ତ ମଧୁର ବାସ୍ନାରେ ବିମୋହିତ ହୋଇ ଶ୍ରେଷ୍ଠ କୃଷକ ଭାବରେ ନିଜକୁ ପ୍ରମାଣିତ କରିପାରିଥିଲେ । ଧାନର ଉଦ୍ଭାବନ ଏହି ମାଟିର ଅନ୍ୟ ଏକ ଆବେଗର ଝର୍ଝର ।

ଉତ୍କଳର ରାଜାମାନେ ଗଙ୍ଗାଠାରୁ ଗୋଦାବରୀ ଯାଏଁ ନିଜ ଭୌଗୋଳିକ ଭୂଖଣ୍ଡକୁ ବିସ୍ତାର କରିବା ସହିତ ସ୍ୱଧର୍ମନିରତ, ପ୍ରଜାପାଳନ ତତ୍ପର, ଶିଳ୍ପକଳା ନିପୁଣ, ବାଣିଜ୍ୟ ପ୍ରୋତ୍ସାହନରେ ନିପୁଣ ଥିଲେ । ବିଭିନ୍ନ ଶିଳାଲେଖର ଭାଷା, ମନ୍ଦିର ନିର୍ମାଣର ଅପୂର୍ବ ସ୍ଥାପତ୍ୟ, ଜଗନ୍ନାଥକୈନ୍ଦ୍ରିକ ବିଶ୍ୱଭ୍ରାତୃତ୍ୱ ସେହି ସଫଳଗାଥାର ନମୁନା ମାତ୍ର । ଏପରିକି ପ୍ରାଚୀନ ସମୟରେ ଇଣ୍ଡୋନେସିଆ, ଶ୍ୟାମ, ବ୍ରହ୍ମଦେଶ, କାମ୍ବୋଡିଆରେ ମଧ୍ୟ ବାଣିଜ୍ୟ ମାଧ୍ୟମରେ ଉତ୍କଳୀୟମାନେ ଯଶସ୍ୱୀ ହୋଇଥିଲେ । ପ୍ରକୃତରେ କଳିଙ୍ଗ ଶାସକମାନଙ୍କ କାହାଣୀ ଅତ୍ୟନ୍ତ ବିସ୍ମୟକର ଏବଂ ସେମାନଙ୍କର ସ୍ୱଦେଶପ୍ରାଣତା ଅବିସମ୍ବାଦିତ । ଐର ସମ୍ରାଟ ଖାରବେଳ ଦକ୍ଷିଣରେ କୃଷ୍ଣାନଦୀ ଏବଂ ଉତ୍ତରରେ ମଥୁରା ପର୍ଯ୍ୟନ୍ତ ନିଜ ରାଜ୍ୟର ସୀମା ବୃଦ୍ଧି କରିଥିଲା ବେଳେ କପିଳେନ୍ଦ୍ରଙ୍କ ସମୟରେ ମଧ୍ୟ ଓଡ଼ିଆ ଜାତିର ଶୌର୍ଯ୍ୟବୃଦ୍ଧି ହୋଇଥିଲା, ଯାହା ଆଭ୍ୟୁଦୟିକ ଐକତାନରେ ଭରା ।

ସେହିପରି ଓଡ଼ିଶାର ଧର୍ମ ବିବର୍ତ୍ତନ, ଭାଷା ବିବର୍ତ୍ତନ ଓ ସାହିତ୍ୟର ଅଧୁନାତନ ସମୟ ପର୍ଯ୍ୟନ୍ତ ସୁଦୀର୍ଘ ଆବେଗଭରା ଇତିହାସ ରହିଛି । ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ ମତବାଦ ସହିତ ଜଗନ୍ନାଥକୈନ୍ଦ୍ରିକ ଭାବସତ୍ତା ହେଉଛି ଆଧ୍ୟାତ୍ମିକ ଅଧିରୋହଣର ମାଧ୍ୟମ । ଯେଉଁଠି ପ୍ରତିଟି ଓଡ଼ିଆଙ୍କ ପାଇଁ ଶ୍ରୀଜଗନ୍ନାଥ ଇପ୍‌ସିତ ଈଶ୍ୱର । ପ୍ରକୃତରେ ସେହି ଈଶ୍ୱରୀୟ ଚେତନା ହିଁ ଅହଂକାର ନିର୍ଲିପ୍ତ ଓଡ଼ିଆ ମଣିଷର ଉଦ୍‌ଭାସ । ସେହି ଈଶ୍ୱରଙ୍କୁ ସାହିତ୍ୟରେ ଓ ଭାଷାରେ ରୂପ ଦେଉଥିବା ଏହି ଜାତିର ଭାଷାର ଇତିହାସ ଅଢେଇହଜାର ବର୍ଷରୁ ଅଧିକ ପ୍ରାଚୀନ । ପ୍ରାକୃତ ବ୍ୟାକରଣରେ 'ଉଡ୍ରିଆ' ଭାଷାର ନାମୋଲ୍ଲେଖ ସହିତ ଭରତଙ୍କ ନାଟ୍ୟଶାସ୍ତ୍ରରେ 'ଉଡ୍ରବିଭାଷା'ର କଥା ରହିଛି । ଏକଦା ସଂସ୍କୃତ, ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାକାଳୀନର ପ୍ରବାହଭିତରେ 'ଉଡ୍ର ବିଭାଷା' ଯେ ସମଦୂରତ୍ୱ ସହ ନିଜର ଅସ୍ମିତା ବଜାୟ ରଖିଥିଲା, ତାହା ଆଧୁନିକ ଓଡ଼ିଆ ଭାଷା ପାଇଁ ଗୌରବାବହ । 'ଲଳିତ ବିସ୍ତର' ଗ୍ରନ୍ଥରେ ଉଲ୍ଲେଖ ଅଛି, ଗୌତମ ବୁଦ୍ଧ ଚଉଷଠି ପ୍ରକାର ଲିପି ଶିଖିଥିଲେ, ତନ୍ମଧ୍ୟରୁ 'ଉଡ୍ରଲିପି' ଅନ୍ୟତମ । ସେହିପରି ପ୍ରାଚୀନ ଜୈନଗ୍ରନ୍ଥ 'ନନ୍ଦୀସୂତ୍ର'ରେ ଉଲ୍ଲେଖ ଥିବା ଛତିଶ ପ୍ରକାର ଲିପିରୁ 'ଉଡ୍ରଲିପି' ସମ୍ପର୍କରେ ବର୍ଣ୍ଣିତ ହେବା ଆମ ସୁଦୀର୍ଘ ପରମ୍ପରାକୁ ପ୍ରଖ୍ୟାପିତ କରୁଛି । ସାରଳା ଦାସଙ୍କ ସମେତ ପଞ୍ଚସଖାର ପଞ୍ଚଦାସେ ଓଡ଼ିଆ ଭାଷା ସାହିତ୍ୟର ଯେଉଁ କୋଣାର୍କ ଗଢିଗଲେ, ତାହା ଅତୁଳନୀୟ । ମାତ୍ର ତା'ପୂର୍ବରୁ ଆମ ଶିଳ୍ପୀକୁଳ କୋଣାର୍କ, ପୁରୀ ଶ୍ରୀମନ୍ଦିର, ଖଣ୍ଡଗିରିର ଗୁମ୍ଫାରେ ପ୍ରସ୍ତର ଦେହରେ ଯେଉଁ ଲଳିତ କାବ୍ୟ ଭାଷା ଖୋଦିତ କରିଦେଇଗଲେ, ତାହା ଏହି ଜାତିକୁ ଯେ ବିଶ୍ୱଜନୀନ କରିଛି, ତାହା ଅସ୍ୱୀକାର କରିହେବ ନାହିଁ ।

ତେବେ ଏସବୁ ଅତୀତ ଯେ ଆଧୁନିକ ଓଡ଼ିଶାର ଭିତ୍ତି ତାହା ଆମ ଯୁକ୍ତିସିଦ୍ଧତାର ପ୍ରମାଣ । ବ୍ରିଟିଶ ରାଜତ୍ୱରେ ଅବଗୁଣ୍ଠନବତୀ ଓଡ଼ିଶାକୁ ଭାଷା ବଞ୍ଚାଇବାର ଯେଉଁ ସଂଗ୍ରାମ କରିବାକୁ ପଡିଥିଲା, ତାହା ଅତ୍ୟନ୍ତ ବେଦନାଦାୟକ । ସେହି ଭାଷା ସୁରକ୍ଷାର ସୂତ୍ରଧର ଫକୀରମୋହନ, ରାଧାନାଥ, ମଧୁସୂଦନ ରାଓ, ଗୌରୀଶଙ୍କର ପ୍ରମୁଖଙ୍କୁ ଏ ଜାତି ଭୁଲିପାରିବ ନାହିଁ । ସେହିପରି ଶହେବର୍ଷ ଧରି ଚାରୋଟି ପ୍ରଶାସନିକ ଖଣ୍ଡରେ ବିକ୍ଷିପ୍ତ ହୋଇଥିବା ଓଡ଼ିଆ ଭାଷାଭାଷୀମାନଙ୍କୁ ଏକତ୍ର କରି ଓଡ଼ିଶା ପ୍ରଦେଶ ଗଠନର ସ୍ୱପ୍ନ ଦେଖିବା ଅନେକଙ୍କ ପାଇଁ ଅବାସ୍ତବ ମନେ ହେଉଥିଲେ ବି ଉତ୍କଳଗୌରବ ମଧୁସୂଦନ ଦାସଙ୍କ ପାଇଁ ତାହା ଥିଲା ବାସ୍ତବତାରେ ଭରା ଦୂରଦୃଷ୍ଟି । ୧୯୦୦ ମସିହାରେ ଲର୍ଡ କର୍ଜନଙ୍କ ଗସ୍ତ ସମୟରୁ ୧୯୨୮ର ସାଇମନ କମିଶନର ମୁଖ୍ୟ ସାର୍ ଜନ୍ ସାଇମନ୍‌ଙ୍କ ଗସ୍ତ ପର୍ଯ୍ୟନ୍ତ ଗୋଟିଏ ପ୍ରଦେଶ ଗଠନ ନିମିତ୍ତ ଓଡ଼ିଆମାନଙ୍କର ଯଥାର୍ଥ ଦାବିକୁ ମଧୁସୂଦନ ଏକୁଟିଆ ଉପସ୍ଥାପନ କରି ତାଙ୍କ ଉଦ୍ୟମ ଅବ୍ୟାହତ ରଖିଥିଲେ । ଅବଶେଷରେ ସେଇ ଇପ୍‌ସିତ ସମୟ ଆସିଲା, ଯାହାକୁ ଓଡ଼ିଆ ଭାଷାଭାଷୀମାନେ ୧୫୬୮ ମସିହାରୁ ଦୀର୍ଘ ୩୬୮ ବର୍ଷ ଧରି ଅପେକ୍ଷା କରିଥିଲେ । ୧୯୩୫ ମସିହାରେ

'ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ–୧୯୩୫' ପ୍ରଣୟନ ହେଲା । ସେହି ଆଇନ୍ ଅନୁଯାୟୀ ୧୯୩୬ ମସିହା ମାର୍ଚ୍ଚ ୩ ତାରିଖ ଦିନ ଇଂଲଣ୍ଡର ସାମ୍ରାଜ୍ଞୀ ଭାଷାଭିତ୍ତିରେ ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବ ଉପରେ ମୋହର ବସାଇଥିଲେ ଏବଂ ୧୯୩୬ ମସିହା ଅପ୍ରେଲ ପହିଲାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଜନ୍ମ ଗ୍ରହଣ କଲା ।

ଏବେ ଉତ୍କଳ ଦିବସର ଶୁଭଦୃଷ୍ଟି ପ୍ରତିଟି ଓଡ଼ିଆଙ୍କ ପାଖରେ । ଏବେ ଓଡ଼ିଶା କହିଲେ ଏକଲକ୍ଷ ପଞ୍ଚାବନ ହଜାର ସାତଶହ ସାତ ବର୍ଗ କିଲୋମିଟର ଭୌଗୋଳିକ ଭୂଖଣ୍ଡକୁ ନେଇଥିବା ସାଧାରଣ ଭୂମି ନୁହେଁ । ବରଂ ଏହି ମାଟିର ସମ୍ବଳ ଚାରିକୋଟି ଓଡ଼ିଆଙ୍କ ପ୍ରଜ୍ଞା । ସେମାନଙ୍କର ଭାଷା, ସାହିତ୍ୟ, ସଂସ୍କୃତି ସବୁକିଛି ନୂତନ ବର୍ଣ୍ଣବିଭାରେ ଭରା । ଆମ ଆଭିଜାତ୍ୟରେ ଆଭରଣ ନାହିଁ, ଅଛି ଭିଜା ମାଟିର ବାସ୍ନା । ଏଠି ମାଟି, ଆକାଶ, ଧୂଳି, ବନସ୍ପତି, କଳା, ସାହିତ୍ୟ ଯିଏ ଯାହାର ମୌଳିକତାରେ ମହାନ । ଆହରଣ ଓ ସମୀକରଣ ଭିତରେ ପୁରୁଣା ହଜିନାହିଁ ବରଂ ଆଧୁନିକତାର ଅଞ୍ଜନ ଲଗାଇ ଲୋକାଭିମୁଖୀ ହେବାର ଉଦାଉପଣରେ ଆମେ ମୁଖରିତ । ଆସନ୍ତୁ, ଏହି ଶୁଭ ଦିବସ ଅବସରରେ ସଂକଳ୍ପନେବା ଓଡ଼ିଶାକୁ ବିଶ୍ୱର ଏକ ଶ୍ରେଷ୍ଠ ପ୍ରଦେଶରୂପେ ଗଢି ତୋଳିବା ପାଇଁ ଏବଂ ମନେପକେଇବା ସେହି ଓଡ଼ିଶା ନିର୍ମାତାମାନଙ୍କୁ, ଯେଉଁମାନେ ଅମଡାବାଟରେ ଯାଇ ଆମ ପାଇଁ ରଖିଦେଇଗଲେ ଅନୁରାଗପୂର୍ଣ୍ଣ ଶୁଭଦ୍ରଷ୍ଟା ସକାଳ ।

ସ୍ନାତକୋତ୍ତର ଓଡ଼ିଆ ବିଭାଗ
ରାଜଧାନୀ ମହାବିଦ୍ୟାଳୟ
ଭୁବନେଶ୍ୱର–୩

# ପଣା ସଂକ୍ରାନ୍ତି

**ଦୁର୍ଗା ଚରଣ ନନ୍ଦ**

ମଧୁକାଳ ଅନ୍ତେ ଗ୍ରୀଷମ ଆଗତେ
ପଣା ସଂକରାନ୍ତି ଆସେ
ଓଡ଼ିଆର ନବ ବରଷ ଆରମ୍ଭ
ହୁଅଇ ଏହି ଦିବସେ ।
କେତେକ ସ୍ଥାନରେ ଝାମୁଯାତ୍ରା ହୁଏ
ଅଗ୍ନିକରି ପ୍ରଜ୍ୱଳିତ
ତାହାରି ଉପରେ ଚାଲନ୍ତି ଦଣ୍ଡୁଆ
ହସ୍ତେ ଧରି ପାଟବେତ ।
ଦଣ୍ଡ ଯାତରାରେ ସୁଆଙ୍ଗ କରନ୍ତି
ଚଢେୟା ଓ ଚଢେୟାଣୀ
ପରଭାଙ୍କ ନୃତ୍ୟ ବୀଣାକାର ଗୀତ
ମନକୁ ନିଅଇ କିଣି ।
ହନୁମାନଙ୍କର ଜନମ ଏ ଦିନ
ସର୍ବତ୍ର ହୁଏ ପାଳନ



ଭକତ ଜନଙ୍କୁ ସାହା ହୋଇଥାନ୍ତି
ପ୍ରଭୁ ପବନ ନନ୍ଦନ ।
ଠାକୁରଙ୍କ ପାଖେ ଭୋଗ କରାଯାଏ
ବେଲ, ସାକରର ପଣା
ବସୁନ୍ଧରା ଠେକି ତୁଳସୀ ଉପରେ
ସିଞ୍ଚିଥାଏ ଜଳକଣା ।
ଏହା ନାମ ମହା ବିଷୁବ ସଂକ୍ରାନ୍ତି
ପାଞ୍ଜିର ଆରମ୍ଭ ଦିନ
ଏହିଦିନ ସୂର୍ଯ୍ୟ ବିଷୁବ ରେଖାରେ
କରିଥାନ୍ତି ଅବସ୍ଥାନ ।

କ୍ୱାର୍ଟର୍ ନଂ– ଆଇଭିଏ–୪୨/୪
ୟୁନିଟ୍–୨, ଭୁବନେଶ୍ୱର

# ମହାବିଷୁବ ସଂକ୍ରାନ୍ତି ଓ ହନୁମାନ ଜୟନ୍ତୀ

ଡକ୍ଟର ଶ୍ରୀହରି ପଣ୍ଡା

ସ୍କନ୍ଦ ପୁରାଣରେ ବୈଶାଖ ମାସ ସମ୍ବନ୍ଧରେ ବର୍ଣ୍ଣନା ଦେଖିବାକୁ ମିଳେ ଯେ ବୈଶାଖ ମାସଠାରୁ ମାସ ନାହିଁ । ବୈଶାଖ ମାସଠାରୁ ପୁଣ୍ୟ ମାସ ଆଉ କିଛି ନାହିଁ । ନମାଧବସମୋ ମାସୋ ନ କୃତେନ ଯୁଗଂ ସମମ୍ (ସ୍କନ୍ଦ, ବୈ, ବୈମା- ୨/୧) ଏହି ମାସର ପୁଣ୍ୟତାକୁ ଅନୁଭବ କରି ଋଷିମାନେ ମଧ୍ୟ ଅନେକ ପର୍ବପର୍ବାଣି ଖଞ୍ଜିବା ସହିତ ପୂଜା, ଦାନ, ଯାଗ, ଯଜ୍ଞ, ସଂକୀର୍ତ୍ତନ, ମେଳା, ବିବାହ ଉତ୍ସବ, ଉତ୍ସବ, ପ୍ରତିଷ୍ଠା ପରି ପୁଣ୍ୟ କର୍ମମାନରେ ଋଦ୍ଧିମନ୍ତ କରିଛନ୍ତି । ଭଗବାନ ବିଷ୍ଣୁଙ୍କୁ ପ୍ରସନ୍ନ କରିବା ନିମନ୍ତେ ଏହା ଶ୍ରେଷ୍ଠ ମାସ ଅଟେ । ଶାସ୍ତ୍ରରେ କୁହାଯାଇଛି,ତୀର୍ଥେ ଅନୁଦିନଂ ସ୍ନାନଂ ତିଳେଶ୍ଚ ପିତୃତର୍ପଣମ୍, ଦାନଂ ଧର୍ମଘଟାଦିନାଂ ମଧୁସୁଦନପୂଜନମ୍, ମାଧବେ ମାସି କୁର୍ବୀତ ମଧୁସୁଦନ ତୁଷ୍ଟିତମ । ଅର୍ଥାତ୍ ତୀର୍ଥସ୍ନାନ, ତିଳଦ୍ୱାରା ପିତୃତର୍ପଣ, ଜଳଘଟଦାନ, ନାରାୟଣ ଉପାସନା ଦ୍ୱାରା ଭଗବାନ ଶ୍ରୀବିଷ୍ଣୁ ସନ୍ତୁଷ୍ଟ ହୁଅନ୍ତି । କାରଣ ଶ୍ରୀବିଷ୍ଣୁ ଜଳଧିବାସ ଅଟନ୍ତି ଏବଂ ଜଳ ସ୍ୱରୂପ ଅଟନ୍ତି । ସାଧାରଣତଃ ଖରାଦିନେ ଜଳପ୍ରତି ସମସ୍ତଙ୍କର ରୁଚି ବଢୁଥିବାରୁ ଭଗବାନଙ୍କ ପ୍ରୀତି ମଧ୍ୟ ବଢିଥାଏ ।



ଭାରତବର୍ଷରେ ବର୍ଷଗଣନା ସୌରମାସ ସଂକ୍ରାନ୍ତିଠାରୁ ଆରମ୍ଭ ହେଉଥିବା ବେଳେ ଚାନ୍ଦ୍ରମାସ ପୂର୍ଣ୍ଣମୀଠାରୁ ହୋଇଥାଏ । ବୈଶାଖ ମାସର ସଂକ୍ରାନ୍ତିକୁ ମେଷ ସଂକ୍ରାନ୍ତି କୁହାଯାଏ । ପୃଥିବୀର କ୍ରାନ୍ତି ପଥକୁ ୧୨ ଭାଗ ବା ୧୨ ମାସ କିମ୍ବା ୧୨ ରାଶିରେ ବିଭକ୍ତ କରାଯାଏ । ଏଣୁ ବୈଶାଖ ମାସ ବା ମେଷ ସଂକ୍ରାନ୍ତିଠାରୁ ନୂତନ ବର୍ଷ ଆରମ୍ଭ ହୋଇଥାଏ । ଏହି ଦିନ ସୂର୍ଯ୍ୟ ବିଷୁବ ରେଖା ଉପରେ ଥିବାରୁ ଏହାକୁ ବିଷୁବ ସଂକ୍ରାନ୍ତି ବୋଲି ମଧ୍ୟ କୁହାଯାଏ । ଭାରତବର୍ଷ ଉତ୍ତର ଗୋଲାର୍ଦ୍ଧରେ ଥିବାରୁ ଏହି ସମୟରେ ସୂର୍ଯ୍ୟଙ୍କର ପ୍ରଖର କିରଣ ହୋଇଥାଏ । ଫଳରେ ଜନଜୀବନ ଅତିଷ୍ଠ ରହେ । ଏଣୁ ଶାସ୍ତ୍ରରେ ମଧ୍ୟ ଏହାର ପ୍ରତିକାର ସ୍ୱରୂପ ଜଳଦାନ, ପ୍ରାତଃ ସ୍ନାନ ସହିତ ଜଳରେ ଭଗବାନ ବିଷ୍ଣୁଙ୍କୁ ପ୍ରାର୍ଥନା କରିବା ନିମନ୍ତେ ନିର୍ଦ୍ଦେଶ ଅଛି, ମଧୁସୂଦନ ଦେବେଶ ବୈଶାଖେ ମେଷଗେ ରବୌ, ପ୍ରାତଃ ସ୍ନାନଂ କରିଷ୍ୟାମି ନିର୍ବିଘ୍ନଂ କୁରୁ ମାଧବଃ ଏବଂ ସ୍ନାନ କରି ମଧୁସୂଦନଙ୍କୁ ଅର୍ଘ୍ୟ ପ୍ରଦାନ କରିବାକୁ ନିର୍ଦ୍ଦେଶ ଅଛି, ବୈଶାଖେ ମେଷଗେ ଭାନୌ ପ୍ରାତଃ ସ୍ନାନ ପରାୟଣଃ, ଅର୍ଘ୍ୟ ତେଦ୍ଦହଂ ପ୍ରଦାସ୍ୟାମି ଗୃହାଣ ମଧୁସୂଦନ । ସେହିପରି

ମହାଭାରତରେ ଖରାଦିନେ ଜଳଦାନର ମହତ୍ତ୍ୱ ସମ୍ପର୍କରେ ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଛନ୍ତି, ପାନୀୟ ପରମ ଦାନଂ ଦାନାନାଂ ମନୁରବ୍ରବୀତ୍ ଅନୁ–୬୫/୩୬) ସେହିପରି ୬୫ ଶ୍ଳୋକରେ ଜଳଛତ୍ର ଏବଂ କୂପ ଖନନର ମହତ୍ତ୍ୱ ସଂପର୍କରେ ବର୍ଣ୍ଣନା ହୋଇଛି, ନିଦାଘକାଳେ ପାନୀୟଂ ଯସ୍ୟ ତିଷ୍ଠତ୍ୟବାରିତମ ସଦୁର୍ଗ ବିଷମଂ କୃସ୍ନଂ ନ କଦାଚି ଦବା ପ୍ନୁତେ । ଏହି ସମୟରେ ଜୋତା ଓ ଛତା ଦାନ କରିବା ମଧ୍ୟ ବହୁ ପୁଣ୍ୟ ପ୍ରଦାନକାରୀ କାର୍ଯ୍ୟ ଅଟେ । ମହର୍ଷି ଗୌତମଙ୍କୁ ଭଗବାନ ସୂର୍ଯ୍ୟଦେବ ଜୋତା ଓ ଛତା ଦାନ କରିଥିଲେ ବୋଲି ପୁରାଣରେ ବର୍ଣ୍ଣିତ ହୋଇଛି । ମହାଭାରତରେ ମଧ୍ୟ ବର୍ଣ୍ଣନା ଦେଖିବାକୁ ମିଳେ, ଦହ୍ୟମାନାୟ ବିପ୍ରାୟଃ ପ୍ରଯଚ୍ଛତ୍ୟୁ ପାନାହୌ, ଯତ୍ ଫଳଂ ତସ୍ୟ ଭବତି ତନ୍ନୋ ବୃହିପିତାମହ (୬୬/୧) । ଏଣୁ ଏହି ପବିତ୍ର ମାସରେ ପ୍ରତ୍ୟେକଙ୍କୁ ଭଗବାନଙ୍କୁ ଜଳ ଅର୍ଘ୍ୟ ପ୍ରଦାନ କରିବା ସହିତ ଭଗବାନରୂପୀ ମାନବଙ୍କୁ ଜଳ, ଜୋତା ଏବଂ ଛତାଦି ଅର୍ପଣ କରି ପୁଣ୍ୟର ଅଧିକାରୀ ହେବା ଉଚିତ୍ ।

ଉକ୍ତ ଦିବସଟିକୁ ମଧ୍ୟ ପଣା ସଂକ୍ରାନ୍ତି ଭାବରେ ଅଭିହିତ କରାଯାଏ । କାରଣ ଏହି ସମୟରେ ପ୍ରଖର ଗ୍ରୀଷ୍ମପ୍ରବାହ ହେତୁ ଖାଦ୍ୟ ଶୀଘ୍ର ହଜମ ହୋଇଯାଏ । ଏଣୁ ଗୁରୁଖାଦ୍ୟ ରୂପେ ଛତୁଆ ପଣାରୂପେ ବ୍ୟବହୃତ ହୁଏ । ଏଣୁ ଛତୁଆ ପଣା ପିଇବା ଆରମ୍ଭ ହେଉଥିବାରୁ ଏହାକୁ ପଣା ସଂକ୍ରାନ୍ତି ବୋଲି କୁହାଯାଉଥିବା ବେଳେ ଉକ୍ତ ଦିବସଟି ମଧ୍ୟ ଅକ୍ଷୟ ତୃତୀୟା, ପର୍ଶୁରାମ ଜୟନ୍ତୀ, ହନୁମାନ ଜୟନ୍ତୀ, ନୃସିଂହ ଜୟନ୍ତୀ, ଝାମୁଯାତ୍ରା ଇତ୍ୟାଦି ଉତ୍ସବମାନଙ୍କ ସହ ଯୋଡି ହୋଇ ଏହାର ଆଡମ୍ବରତା ବୃଦ୍ଧି କରିଥାଏ । ବୈଶାଖ ମାସରେ ଗ୍ରୀଷ୍ମତାପରୁ ନିଷ୍କୃତି ତଥା ଶାରୀରିକ ସୁସ୍ଥତା ଲାଗି ବ୍ରତାଚାରୀଙ୍କ ନିମନ୍ତେ କେତେକ ପରାମର୍ଶ ସ୍କନ୍ଦପୁରାଣରେ ପ୍ରଦତ୍ତ ହୋଇଛି । ଯେପରିକି ଏହି ମାସରେ ବ୍ରତକାରୀଙ୍କ ନିମନ୍ତେ ତେଲ ଲଗାଇବା, ଦିବାଶୟନ, କଂସା ପାତ୍ରରେ ଭୋଜନ, ଖଟରେ ଶୋଇବା ଏବଂ ଘରେ ଗାଧୋଇବା ଇତ୍ୟାଦି ନିଷିଦ୍ଧ ଅଟେ । ଉକ୍ତ ଦିବସଠାରୁ ସଂକ୍ରାନ୍ତି ବ୍ରତ ଆରମ୍ଭ ହୋଇ ୧୨ ମାସରେ ୧୨ ସଂକ୍ରାନ୍ତି ପରିପାଳନ କରାଯାଏ । ଏଥିନିମନ୍ତେ ବ୍ରତୀ ସଂକ୍ରାନ୍ତିର ପୂର୍ବଦିନ ଥରେ ମାତ୍ର ଭୋଜନ କରିବା ସହିତ ସଂକ୍ରାନ୍ତି ଦିନ ପ୍ରାତଃସ୍ନାନ ସାରି ଅଷ୍ଟଦଳ କମଳରେ ସୂର୍ଯ୍ୟଙ୍କ ଅଷ୍ଟନାମ ଲେଖି ପୂଜା କରିଥାଏ । ପୂର୍ବଦଳରେ ଭାସ୍କର, ପଶ୍ଚିମରେ ଆଦିତ୍ୟ, ଉତ୍ତରରେ ମାର୍ତ୍ତଣ୍ଡ, ଦକ୍ଷିଣରେ ବିବସ୍ୱାନ, ଈଶାନରେ ଭାନୁ, ଅଗ୍ନିରେ ରବି, ନୈରତରେ ପକ୍ଷା, ବାୟବରେ ତପନ ଏବଂ ମଧ୍ୟରେ ବିଶ୍ୱାତ୍ମା ରଚନା କରି ଧ୍ୟାନ କରିବାକୁ ପଡିଥାଏ । ଶୁଦ୍ଧତାର ସହିତ ଏହି ବ୍ରତ ଆଚରଣ କଲେ ବ୍ରତୀ ମହାପାତକରୁ ମୁକ୍ତିପାଏ ବୋଲି ଶାସ୍ତ୍ରମତ । ତୁଳାମକର ମେଷଷୁ ପ୍ରାତଃ ସ୍ନାନଂ ବିଧୀୟତେ, ହବିଷ୍ୟଂ ବ୍ରହ୍ମଚର୍ଯ୍ୟଂ ଚ ମହାପାତକ ନାଶନମ୍ ।

ଉକ୍ତ ଦିବସଟିକୁ ହନୁମାନଙ୍କ ଜୟନ୍ତୀ ଭାବରେ ଗଣନା କରାଯାଏ । ଏ ସମ୍ପର୍କରେ ପୁରାଣର ବର୍ଣ୍ଣନାନୁସାରେ ଏକଦା ଭଗବାନ ଶଙ୍କର ଭଗବତୀଙ୍କ ସହିତ କୈଳାସ ପର୍ବତର ଗୋଟିଏ ମନୋରମ ଶୃଙ୍ଗ ଉପରେ ଧ୍ୟାନରତ ଥିଲେ । ବଟବୃକ୍ଷର ଘନଛାୟାରେ ତାହାଙ୍କର କର୍ପୂର ସମାନ ଧବଳ ଶରୀର ଉପରେ ସୁନେଲୀ ରଙ୍ଗର ଜଟା ଲମ୍ବି ଯାଇଥାଏ । ହାତରେ ରୁଦ୍ରାକ୍ଷ ମାଳା, ଗଳାରେ ସର୍ପ ଓ ସମ୍ମୁଖରେ ନନ୍ଦୀ ବସିଥାନ୍ତି । ଅନ୍ୟାନ୍ୟ ଗଣମାନେ ବିଭିନ୍ନ କ୍ରୀଡ଼ାରେ ରତଥାନ୍ତି । ଗଙ୍ଗାଧରଙ୍କ ଶିରରେ ଚନ୍ଦ୍ରମା ଏବଂ ଅମୃତମୟୀ ଗଙ୍ଗାଙ୍କର ଧାରା ରହିଥିବାରୁ ଶାନ୍ତ ଓ ପ୍ରସନ୍ନ ମୁଦ୍ରାରେ ବସିଥାନ୍ତି ଶିବ । ଲଲାଟରେ ଭସ୍ମ ଅତି ସୁନ୍ଦର ମାନୁଥାଏ ପ୍ରଭୁଙ୍କୁ । ହଠାତ୍ 'ରାମରାମ' କହି ଚିତ୍କାର କରି ଉଠିଲେ ଆଶୁତୋଷ । ସମାଧି ଭାଙ୍ଗିଗଲା । ମାତା ପାର୍ବତୀଙ୍କର ସମାଧି ମଧ୍ୟ ଭଙ୍ଗ ହେଲା । ମାତାଙ୍କର ଦୃଷ୍ଟି ପଡ଼ିଲା ନୀଳକଣ୍ଠଙ୍କ ସୁନ୍ଦର ମୁଖଶ୍ରୀ ଉପରେ, ଲାଗିଲା ପ୍ରଭୁ ଯେମିତି କିଛି କହିବାକୁ ଚାହୁଁଛନ୍ତି । ନିଜ ସ୍ଥାନରୁ ଉଠିଆସି ମାତା ପ୍ରଭୁଙ୍କୁ ବିନୟର ସହ ପଚାରିଲେ, ସ୍ୱାମୀ ! ମୁଁ ଆପଣଙ୍କର କି ସେବା କରିବି ? ଆପଣଙ୍କ ମୁହଁ କହୁଛି ଯେମିତି ଆପଣ କିଛି କହିବାକୁ ଚାହୁଁଛନ୍ତି ? ଭଗବାନ ମୃତ୍ୟୁଞ୍ଜୟ କହିଲେ ପ୍ରିୟେ, ଆଜି ମନରେ ଗୋଟିଏ ଶୁଭ ସଂକଳ୍ପ ଜାତ ହୋଇଛି । ମୋର ଆରାଧ୍ୟ ପ୍ରଭୁ 'ରାମ' ଅବତାର ନେବାକୁ ଯାଉଛନ୍ତି । ଯାହାର ସେବା କରିବା ପାଇଁ ସମସ୍ତ ଦେବତାଙ୍କ ସହିତ ମୁଁ ନିଜେ ଚାହିଁ ବସିଥାଏ, ସେହି ପ୍ରଭୁଙ୍କ ସହିତ ମୁଁ ମଧ୍ୟ ସେଠାକୁ ଯାଇ ପ୍ରଭୁଙ୍କର ସେବା କରି ଯୁଗଯୁଗର ଲାଳସାକୁ ପୂର୍ଣ୍ଣ କରି ଜୀବନକୁ ସଫଳ କରିଦେବି ।

ଶଙ୍କରଙ୍କ ମୁହଁରୁ ଏହି କଥା ଶୁଣି ସତୀ କ'ଣ କହିବେ ଭାବି ପାରିଲେ ନାହିଁ । ତାଙ୍କର ମନରେ ଦୁଇ ପ୍ରକାର ଭାବ

ଜାତ ହେଲା । ଗୋଟିଏ ହେଲା ପତିଙ୍କର ଅଭିଳାଷ ପୂର୍ଣ୍ଣ ହେବା ଓ ଦ୍ୱିତୀୟଟି ହେଲା ଶିବଙ୍କଠାରୁ ବିଚ୍ଛେଦ । ମାତା ମନ ମଧ୍ୟରେ ଚିନ୍ତା କଲେ, ସେ ମଧ୍ୟ ଶିବଙ୍କ ସହିତ ପୃଥିବୀକୁ ଯାଇ ସ୍ୱାମୀଙ୍କ ଆରାଧ୍ୟଙ୍କର ସେବା କରିବେ । ମାତ୍ର ଶିବ ବୁଝାଇ ଦେଲେ ଉକ୍ତ ଅବତାର ତାଙ୍କର ବ୍ରହ୍ମଚାରୀ ହୋଇଥିବାରୁ ସେ ପାର୍ବତୀଙ୍କୁ ସାଙ୍ଗରେ ନେଇ ପାରିବେ ନାହିଁ । ହେଲେ ମାତା ବୁଝିବା ପାଇଁ ପ୍ରସ୍ତୁତ ନ ଥିଲେ, ଭଗବାନ ଶ୍ରୀବିଷ୍ଣୁଙ୍କର ସେବାକୁ ସେ ବା କାହିଁକି ହାତଛଡ଼ା କରିଥାନ୍ତେ ! ମାତା ମଧ୍ୟ ଶିବଙ୍କୁ ବୁଝାଇ ଦେଲେ ସ୍ୱାମୀ–ସ୍ତ୍ରୀ ଗୋଟିଏ ଶରୀର ହୋଇଥିବାରୁ ସେ ଶିବଙ୍କ ଶରୀରରେ ଗୋଟିଏ ଅଂଶ ହୋଇ ଅବତାର ଗ୍ରହଣ କରିବେ । ଏହା ପରେ ମାତା ଶିବଙ୍କୁ ପଚାରିଲେ ପ୍ରଭୁ ଶ୍ରୀବିଷ୍ଣୁଙ୍କର ଏହି ଅବତାର ତ କେବଳ ରାବଣକୁ ବଧ କରିବା ପାଇଁ ଉଦ୍ଦିଷ୍ଟ । ରାବଣ ତ ଆପଣଙ୍କର ପରମ ଭକ୍ତ, ତା'ର ଦଶ ଶିର ଦେଇ ଆପଣଙ୍କୁ ସେ ସନ୍ତୁଷ୍ଟ କରି ବର ପାଇଛି, ତା' ବିରୁଦ୍ଧରେ ଯୁଦ୍ଧ କରିବେ କିପରି ? ସଦାଶିବ ହସିହସି ଉତ୍ତର ଦେଲେ ରାବଣ ମୋତେ ଦଶ ଶିର ଅର୍ପଣ କରି ମୋର ଦଶ ସ୍ୱରୂପକୁ ଆରାଧନା କରିଥିବା ବେଳେ ମୋର ଏକାଦଶ ସ୍ୱରୂପକୁ ଅବହେଳା କରିଛି । ଏଣୁ ଏହି ଏକାଦଶ ସ୍ୱରୂପରେ ମୁଁ ତା ବିରୁଦ୍ଧରେ ଯୁଦ୍ଧ କରିବି ଏବଂ ପ୍ରଭୁଙ୍କର ସେବା ମଧ୍ୟ କରିବି । ମୁଁ ବାୟୁ ଦେବତାଙ୍କଠାରୁ ଅଞ୍ଜନା ଗର୍ଭରୁ ଅବତାର ନେବାକୁ ଠିକ୍ କରିଛି ।

ମାତା ପାର୍ବତୀଙ୍କ ମନରେ ଅଞ୍ଜନା କିଏ ବୋଲି ଜାଣିବାର ଇଚ୍ଛା ଜାତ ହେବାରୁ ଶିବ ତାଙ୍କୁ କହିଲେ ଇନ୍ଦ୍ରଙ୍କ ଅମରାବତୀରେ ପୁଞ୍ଜିକସ୍ଥଳା ବୋଲି ଜଣେ ଅପ୍‌ସରା ଥିଲା । ଦିନେ ତା'ର କିଛି ଭୁଲ ପାଇଁ ତାକୁ ଅଭିଶାପ ମିଳିଲା ଯେ, ସେ ବାନରୀ ଭାବରେ ଜନ୍ମ ହେବ । ସେହି ଅପ୍‌ସରୀ ବହୁ ଅନୁନୟ ବିନୟ ପରେ ଇଚ୍ଛା ରୂପ ଧାରଣ କରି ପାରିବ ବୋଲି ଆଶ୍ୱାସନା ପାଇଲା । ସେହି ଅପ୍‌ସରୀକୁ ବାନର ରାଜା କେଶରୀ ପତ୍ନୀ ରୂପରେ ଅଞ୍ଜନା ନାମ ଦେଇ ରଖିଥିଲେ । ଅଞ୍ଜନା ଖୁବ୍ ସୁନ୍ଦର ଥିବାରୁ କେଶରୀ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ ।

ଦିନେ ସେ ଦୁହେଁ ମନୁଷ୍ୟ ରୂପ ଧାରଣ କରି ସୁମେରୁ ଶୃଙ୍ଗ ଉପରେ ଭ୍ରମଣ କରୁଥିଲେ । ବାୟୁ ଧୀରେ ଧୀରେ ବହି ତନ୍‌ମନକୁ ରୋମାଞ୍ଚିତ କରିଦେଉଥିଲା । ହଠାତ୍ ଦଲକାଏ ପବନ ଆସି ଅଞ୍ଜନାଙ୍କ ଦେହରୁ ଶାଢ଼ୀର ଏକ ଅଂଶ ଉଡ଼ାଇ ନେଲା । ଅଞ୍ଜନାଙ୍କୁ ଲାଗିଲା ଯେମିତି ତାଙ୍କୁ କେହି ସ୍ପର୍ଶ କରୁଛି । ସେ ନିଜର ବସ୍ତ୍ର ସମ୍ଭାଳି ନେଇ ଅଲଗା ହୋଇଯାଇ ପ୍ରଶ୍ନ କଲେ କିଏ ଏପରି ନିର୍ଲ୍ଲଜ୍ଜ ମୋର ପାତିବ୍ରତ୍ୟ ଧର୍ମ ନଷ୍ଟ କରିବାକୁ ଚେଷ୍ଟା କରୁଛି ? ମୋର ଇଷ୍ଟ ଦେବ ମୋ ପତିଦେବ ମୋ ସମ୍ମୁଖରେ ଅଛନ୍ତି । ମୁଁ ଅଭିଶାପ ଦେଇ ତାକୁ ଭସ୍ମ କରିଦେବି । କିନ୍ତୁ ତାଙ୍କୁ ଲାଗିଲା ସତେଯେମିତି ବାୟୁଦେବ କହୁଛନ୍ତି ଦେବି ! ମୁଁ ତମର ବ୍ରତ ନଷ୍ଟ କରିନାହିଁ । ତୁମର ଏପରି ଗୋଟିଏ ପୁତ୍ର ହେବ, ଯେ କି ଶକ୍ତିର ମୋ ସମାନ ହେବ । ବଳ କି ବୁଦ୍ଧିରେ ତାହା ସହ କେହି ସମାନ ହେବେ ନାହିଁ । ମୁଁ ତାକୁ ରକ୍ଷା କରିବି । ସେ ଭଗବାନଙ୍କର ସେବକ ହେବ । ତାହା ପରେ ଅଞ୍ଜନା ଓ କେଶରୀ ନିଜ ସ୍ଥାନକୁ ଚାଲିଗଲେ । ଭଗବାନ ଶଙ୍କର ଅଂଶ ରୂପରେ ଅଞ୍ଜନାଙ୍କ କାନ ଦେଇ ତାଙ୍କର ଗର୍ଭରେ ପ୍ରବେଶ କଲେ । (ଭିନ୍ନ କଥାନୁଯାୟୀ ସତୀ ସାଧ୍ୱୀ ଅଞ୍ଜନା ପୁତ୍ର ପ୍ରାପ୍ତି ନିମନ୍ତେ ଆଶୁତୋଷଙ୍କୁ ସାତ ହଜାର ବର୍ଷ ଉଗ୍ର ତପସ୍ୟା ଦ୍ୱାରା ଶଙ୍କରଙ୍କୁ ସନ୍ତୁଷ୍ଟ କରି ଏକ ବଳଶାଳୀ ସତ୍ୟନିଷ୍ଠ ପୁତ୍ର ବର ମାଗିଥିଲେ । ଭଗବାନ ଶଙ୍କର ବର ଦେଇ କହିଲେ ହେ ଅଞ୍ଜନା ! ମନ ମଧ୍ୟରେ ମୋତେ ଧ୍ୟାନ କରି ହସ୍ତ ପ୍ରସାରଣ କର । ମୁଁ ପବନ ଦେବତା ଦ୍ୱାରା ପ୍ରସାଦ ପ୍ରେରଣ କରିବି । ତୁମେ ସେହି ପ୍ରସାଦକୁ ସେବନ କଲେ ଏକାଦଶ ରୁଦ୍ର ସ୍ୱରୂପ ପରମ ତେଜସ୍ୱୀ ପୁତ୍ର ତୁମକୁ ପ୍ରାପ୍ତ ହେବ । ଅଞ୍ଜନା ସେହି ସ୍ଥାନରେ ହସ୍ତ ପ୍ରସାରଣ ପୂର୍ବକ ଦଣ୍ଡାୟମାନ ହୋଇ ଧ୍ୟାନମଗ୍ନ ହୋଇ ରହିଲେ । ଏହି ସମୟରେ ପୁତ୍ର ପ୍ରାପ୍ତି ନିମନ୍ତେ ଚକ୍ରବର୍ତ୍ତୀ ରାଜା ଦଶରଥଙ୍କ ରାଣୀ କୈକେୟୀ ଯଜ୍ଞ ଚରୁ ସେବନ କରିବାକୁ ଯାଉଥିଲେ । ତାଙ୍କ ହାତରୁ କିଛି ଚରୁ ତଳକୁ ଖସି ପଡ଼ିଲା । ଚିଲଟିଏ ସେହି ଚରୁକୁ ଝାମ୍ପିଆଣି ଉଡ଼ି ଚାଲିଯିବା ସମୟରେ ହଠାତ୍ ଅଣଚାଶ ପବନ ମାଡ଼ି ଆସିଲା । ଫଳରେ ଚିଲ ଥଣ୍ଟରୁ ଚରୁତକ ଉଡ଼ିଆସି ହସ୍ତ ପ୍ରସାରଣ କରି ରହିଥିବା ଅଞ୍ଜନାଙ୍କ ହାତରେ ପଡ଼ିଲା । ମହାନନ୍ଦରେ ସେହି ପ୍ରସାଦକୁ ଅଞ୍ଜନା ସେବନ କଲେ । ସେହି ପ୍ରସାଦ ସେବନରୁ ଅଞ୍ଜନାଙ୍କର ପୁତ୍ରଟିଏ ଜାତ ହେଲା । ଶିବ ପୁରାଣ ଅନୁସାରେ ଭଗବାନ ବିଷ୍ଣୁଙ୍କର ମୋହିନୀ ସ୍ୱରୂପକୁ ଦେଖି, ମହାଦେବଙ୍କର ଯେଉଁ ବୀର୍ଯ୍ୟ ସ୍ଖଳିତ ହୋଇଥିଲା, ତାହାକୁ ସପ୍ତର୍ଷିମାନେ ଅଞ୍ଜନାଙ୍କ ଶ୍ରବଣେନ୍ଦ୍ରିୟ ଦେଇ

ଗର୍ଭାଶୟ ମଧ୍ୟରେ ପ୍ରବିଷ୍ଟ କରାଇ ଥିଲେ । ସେଥିରୁ ପରମ ତେଜସ୍ୱୀ କପୀଶ୍ୱର ଉତ୍ପତ୍ତି ହୋଇଥିଲେ ।)

ଚୈତ୍ର ଶୁକ୍ଲପକ୍ଷ ପନ୍ଦର ଦିନ (ପୂର୍ଣ୍ଣିମା)ମଙ୍ଗଳବାରରେ ଅଞ୍ଜନାଙ୍କ ଗର୍ଭରୁ ଭଗବାନ ଶଙ୍କର ମେଖଳା, କୌପିନ ଓ ଯଜ୍ଞୋପବୀତ ଧାରଣ ପୂର୍ବକ କର୍ଣ୍ଣରେ କୁଣ୍ଡଳ ଯୁକ୍ତ ହୋଇ ରକ୍ତ ବର୍ଣ୍ଣ ମୁଖ ବିଶିଷ୍ଟ ଲାଙ୍ଗୁଳ ଯୁକ୍ତ ହୋଇ ବାନର ରୂପରେ ଅବତାର ଗ୍ରହଣ କଲେ । (ଅନ୍ୟ କେତେକ ବିଦ୍ୱାନ ମତ ଦିଅନ୍ତି ହନୁମାନ କାର୍ତ୍ତିକ କୃଷ୍ଣପକ୍ଷ ୧୪ କିମ୍ବା କାର୍ତ୍ତିକ ଶୁକ୍ଳ ୧୫ ଦିନ ଜନ୍ମ ହୋଇଥିଲେ । ଆନନ୍ଦ ପୁରାଣ ଅନୁସାରେ ପ୍ରଭୁଙ୍କର ଜନ୍ମ ଚୈତ୍ରମାସ ଶୁକ୍ଳପକ୍ଷ ଏକାଦଶୀ ।) ବାଳକର ଜନ୍ମ ପରେ ମାତା-ପିତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଦୁହେଁ ପିଲାଟିକୁ ଅତ୍ୟନ୍ତ ଯତ୍ନ ସହକାରେ ପାଳନ କରିବାକୁ ଲାଗିଲେ । ଦିନେ ଅଞ୍ଜନା ଓ କେଶରୀ ବାଳକଟିକୁ ଛାଡ଼ିଦେଇ ବାହାରକୁ ଚାଲି ଯାଇଥିଲେ । ଏହି ସମୟରେ ବାଳକକୁ ଭୋକ ଲାଗିବାରୁ ସେ ଖାଦ୍ୟ ଖୋଜୁଖୋଜୁ ତା'ର ଦୃଷ୍ଟି ବାଳସୂର୍ଯ୍ୟ ଉପରେ ପଡ଼ିବାରୁ ସେ ସୂର୍ଯ୍ୟଙ୍କ ପାଖରେ ପହଞ୍ଚିବାକୁ ଚେଷ୍ଟା କଲା । ବାୟୁ ତାକୁ ଉଡ଼ିବାର ଶକ୍ତି ଦେଇଥିଲେ । ବାଳକଟିଏ ସୂର୍ଯ୍ୟ ଆଡ଼କୁ ଉଡ଼ି ଯାଉଥିବାର ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ବାୟୁ ଦେବ ନିଜ ପୁଅ ସୂର୍ଯ୍ୟ ଆଡ଼କୁ ଯାଉଥିବାର ଦେଖି କାଳେ ସୂର୍ଯ୍ୟତାପ ତାକୁ ଜାଳିଦେବ ଭାବି ହିମାଳୟର ଶୀତଳତାକୁ ନେଇ ପୁତ୍ରର ପଛେପଛେ ଚାଲିଲେ । ସୂର୍ଯ୍ୟ ଦେଖିଲେ ଯେ ବାୟୁ ପୁତ୍ର ଆସୁଛି, ସେ ମଧ୍ୟ ନିଜ ତେଜ କମ୍ କରିଦେଇ ଶଙ୍କରଙ୍କୁ ସ୍ୱାଗତ କଲେ । ବାଳକ ସେଠାରେ ପହଞ୍ଚି ଯିବାରୁ ସୂର୍ଯ୍ୟଙ୍କ ରଥ ଉପରେ ବସି ଖେଳିବା ଆରମ୍ଭ କରିଦେଲା ।

ସେହି ଦିନଟି ଥିଲା ସୂର୍ଯ୍ୟ ପରାଗ । ନିଜର ସମୟ ଜାଣି ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କରିବାକୁ ଆସି ଦେଖେତ ସୂର୍ଯ୍ୟ ଉପରେ ବାନର ଶିଶୁଟିଏ ଖେଳୁଛି ! ରାହୁ ତାକୁ ଖାତିର ନକରି ସୂର୍ଯ୍ୟଙ୍କ ଉପରକୁ କୁଦି ପଡ଼ିବାରୁ ବାନର ଶିଶୁଟି ତାକୁ ଧରି ପକାଇଲା । ଶିଶୁଟି କବଳରୁ ଯାଇ ରାହୁ ଇନ୍ଦ୍ରକୁ ଅଭିଯୋଗ କଲା ଯେ ତା' ଅଧିକାର ଅନ୍ୟ ଜଣେ ନେଉଛି । ଇନ୍ଦ୍ର କଥା ଉପରେ ଗୁରୁତ୍ୱ ନଦେଇ ରାହୁକୁ ସୂର୍ଯ୍ୟ ପାଖକୁ ପଠାଇ ଦେଲା, ଏଥର ବାନର ରାହୁକୁ ଖାଦ୍ୟ ଭାବି ଧରିବାକୁ ଯିବାରୁ ରାହୁ ଦୌଡ଼ି ପଳାଇ ଯାଇ ଇନ୍ଦ୍ରଙ୍କ ଶରଣ ନେବାରୁ ଇନ୍ଦ୍ର ନିଜ ହାତୀ ଉପରେ ସବାର ହୋଇ ଆସିଲେ । ହାତୀ ଐରାବତକୁ ଦେଖି ବାନର ଶିଶୁ ଆକ୍ରମଣ କରିବାରୁ ଇନ୍ଦ୍ର ଶିଶୁ ଉପରେ ବଜ୍ର ପ୍ରହାର କଲେ । ସେହି ଆଘାତରେ ଶିଶୁଟିର ବାମ ହନୁହାଡ଼ ଭାଙ୍ଗିଗଲା । ବାଳକଟି ତଳେ ପଡ଼ି ଛଟପଟ ହେବାରୁ ବାୟୁଦେବ ତାକୁ ଉଠାଇ ନେଇ କ୍ରୋଧରେ ନିଜର ଗତି ବନ୍ଦ କରି ଦେବାରୁ ତ୍ରିଲୋକର ଅବସ୍ଥା ଅସମ୍ଭାଳ ହୋଇଗଲା । ବ୍ରହ୍ମା ଜାଣିପାରି ବାଳକ ପାଖରେ ପହଞ୍ଚି ବାଳକ ମୁଣ୍ଡରେ ହାତ ମାରି ଦେବାରୁ ବାଳକ ଉଠି ବସିଲା । ବାୟୁ ଦେବ ପ୍ରସନ୍ନ ହେବା ସହିତ ସାରା ଜଗତରେ ପ୍ରାଣ ସଂଚାର କରିଦେଲେ । ବ୍ରହ୍ମା ସମସ୍ତ ଦେବତାଙ୍କୁ କହିଲେ ଏହି ବାଳକ ଦେବତାଙ୍କ କାର୍ଯ୍ୟ ସାଧନ ନିମନ୍ତେ ଜନ୍ମ ହୋଇଛି, ସେଥିପାଇଁ ସମସ୍ତ ଦେବତା ଏହାଙ୍କୁ ବର ପ୍ରଦାନ କରିବା ଉଚିତ ।

ଇନ୍ଦ୍ର ବାଳକଟିକୁ ବର ଦେବା ସହିତ ହନୁହାଡ଼ ଭାଙ୍ଗି ଯାଇଥିବାରୁ ନାମକରଣ କଲେ ହନୁମାନ । ବ୍ରହ୍ମା ବ୍ରହ୍ମ ଜ୍ଞାନ ଦେବା ସହିତ ବିଷ୍ଣୁ ଚିରାୟୁ କରିଦେଲେ । ଅନ୍ୟାନ୍ୟ ଦେବଗଣ ଅନେକ ବର ଦେଇ ନିଜନିଜ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ ।

ବ୍ରହ୍ମା, ବିଷ୍ଣୁ ଓ ଇନ୍ଦ୍ରାଦି ଦେବତାମାନଙ୍କ ଦ୍ୱାରା ବରପ୍ରାପ୍ତ ସାକ୍ଷାତ୍ ଏକାଦଶ ରୁଦ୍ର ଅବତାର ସମସ୍ତ ଚରାଚରରେ ଏକମାତ୍ର ରକ୍ଷକ,ଭକ୍ତରାଜ ଶ୍ରୀରାମ ଦୂତ ହନୁମାନଙ୍କ ଉପାସନା ଏବଂ ସ୍ତୋତ୍ରପାଠ ପୂଜନ ଅନୁଷ୍ଠାନ ଓ ବ୍ରତ ଦ୍ୱାରା ଚମତ୍କାର କାର୍ଯ୍ୟ ସିଦ୍ଧି ମିଳିଥାଏ । ଯେଉଁମାନେ ଧର୍ମ, ଅର୍ଥ, କାମ ଅଥବା ମୋକ୍ଷ, ଏହି ଚତୁର୍ବର୍ଗ ଫଳ ଲାଭ କରିବାକୁ ଚାହାନ୍ତି, ତାଙ୍କ ପକ୍ଷେ ଶ୍ରୀହନୁମତ ଉପାସନା ସଦା ଫଳଦାୟକ ଅଟେ ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ

❖ ❖ ❖

# ବିକାଶ ବ୍ୟବସ୍ଥାର ପ୍ରତ୍ୟେକ ସ୍ତରରେ ଜନଜାତିଙ୍କ ଅନ୍ତର୍ଭୁକ୍ତି ନିମନ୍ତେ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠିତ



ଓଡ଼ିଶା, ଜନଜାତିମାନଙ୍କର ଆଦିଭୂମି ହିସାବରେ ବିଦିତ । ଏଠାରେ ୬୨ ପ୍ରକାର ଜନଜାତି ସଂପ୍ରଦାୟ ବସବାସ କରନ୍ତି । ତନ୍ମଧ୍ୟରୁ ୧୩ଟି ଗୋଷ୍ଠୀ ପ୍ରାଚୀନ ଜନଜାତି ରହିଛନ୍ତି । ଏଠାକାର ମୋଟ ଜନସଂଖ୍ୟାର ୨୨.୮୫ ପ୍ରତିଶତ ହେଉଛନ୍ତି ଜନଜାତି । ସରକାର ଜନଜାତିଙ୍କ କଲ୍ୟାଣ ପାଇଁ ବହୁବିଧ ଉନ୍ନୟନ କାର୍ଯ୍ୟକ୍ରମ ପ୍ରଚଳନ କରିଛନ୍ତି, ଯାହା ବିଭିନ୍ନ କ୍ଷେତ୍ରରେ ସେମାନଙ୍କ ବିକାଶଧାରାକୁ ତ୍ୱରାନିତ କରିଛି । କେବଳ ସକାରାତ୍ମକ ବିକାଶ ଫଳାଫଳ ଉପରେ ନୁହେଁ, ବିକାଶ ବ୍ୟବସ୍ଥାର ପ୍ରତିଟି କ୍ଷେତ୍ରକୁ ଚିହ୍ନଟ ସହ ଆବଶ୍ୟକତା ଅନୁରୂପ ଯୋଜନା ପ୍ରଣୟନ, ପ୍ରବର୍ତ୍ତନ ଓ ପର୍ଯ୍ୟାଲୋଚନା କରାଯିବା ପାଇଁ ସରକାର ଅଙ୍ଗୀକାରବଦ୍ଧ ଅଛନ୍ତି । ବିକାଶ ବ୍ୟବସ୍ଥାର ପ୍ରତ୍ୟେକ ସ୍ତରରେ ଜନଜାତିମାନେ ଯେପରି ସାମିଲ ହୋଇପାରିବେ ସେଥିପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦିଆଯାଇଛି ।

### ସ୍ୱତନ୍ତ୍ର ଉନ୍ନୟନ ପରିଷଦର ସଂସ୍ଥାପନ/ଗଠନ

ଏହି ପୃଷ୍ଠଭୂମିରେ ରାଜ୍ୟ ସରକାର ୯ଟି ଜନଜାତି ଅଧ୍ୟୁଷିତ ଜିଲ୍ଲା- ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ, କନ୍ଧମାଳ, କୋରାପୁଟ, ଗଜପତି, ରାୟଗଡା, ନବରଙ୍ଗପୁର ଓ ମାଲକାନଗିରିକୁ ନେଇ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ କରିଛନ୍ତି । ଏଥିରେ ୧୧୭ଟି ବ୍ଲକ୍ ରହିଛି, ଏହାର ଅନ୍ତର୍ଭୁକ୍ତ ୨୦୨୨ ଗୋଟି ଗ୍ରାମପଞ୍ଚାୟତ ଅଧୀନସ୍ଥ ୧୮୬୮୭ ଗ୍ରାମର ୧୪ ଲକ୍ଷ ଜନଜାତି ପରିବାର ଅନ୍ତର୍ଭୁକ୍ତ ହେବେ ।

ପ୍ରତ୍ୟେକ ସ୍ୱତନ୍ତ୍ର ଉନ୍ନୟନ ପରିଷଦରେ ସେହି ଜିଲ୍ଲାର ଜଣେ ମାନ୍ୟଗଣ୍ୟ ଜନଜାତି ଗୋଷ୍ଠୀର ବ୍ୟକ୍ତିଙ୍କୁ ସରକାର ଅଧ୍ୟକ୍ଷ ହିସାବରେ ମନୋନୀତ କରିବେ । ପରିଷଦରେ ଜଣେ ଉପାଧ୍ୟକ୍ଷଙ୍କ ସମେତ କେତେଜଣ ଜନଜାତି ସଦସ୍ୟ ରହିବେ ଏବଂ ଜନଜାତି ଉନ୍ନୟନ କ୍ଷେତ୍ରରେ ତିନି ଜଣ ବିଶେଷଜ୍ଞ (ସେ ଜଣେ ସରକାରୀ କର୍ମଚାରୀ ବା ଅଣ-ଆଦିବାସୀ ମଧ୍ୟ ହୋଇପାରନ୍ତି) ସରକାରଙ୍କ ଦ୍ୱାରା ମନୋନୀତ ହେବେ । ଜନଜାତି ଉନ୍ନୟନ ବ୍ୟବସ୍ଥାରେ ଅଭିଜ୍ଞ ବିଶେଷଜ୍ଞଙ୍କୁ ଛାଡିଦେଲେ ଜନଜାତି ସଂପ୍ରଦାୟରୁ ପ୍ରତିନିଧିତ୍ୱ କରୁଥିବା ଅଧ୍ୟକ୍ଷ ବା ଉପାଧ୍ୟକ୍ଷଙ୍କ ମଧ୍ୟରୁ ଜଣେ ମହିଳା ହୋଇଥିବେ ତଥା ଅଧ୍ୟକ୍ଷ ବା ଉପାଧ୍ୟକ୍ଷ/ ସଦସ୍ୟ କୌଣସି ଚାକିରିରେ ବା ସରକାରୀ ପଦପଦବୀରେ ନଥିବେ ।

### ସ୍ୱତନ୍ତ୍ର ଉନ୍ନୟନ ପରିଷଦର ଅବସ୍ଥିତି

ପ୍ରତ୍ୟେକ ଜିଲ୍ଲାର ସଦରମହକୁମାରେ ସ୍ୱତନ୍ତ୍ର ଉନ୍ନୟନ ପରିଷଦର ମୁଖ୍ୟାଳୟ ରହିବ । ପରିଷଦର କାର୍ଯ୍ୟାଳୟ ପାଇଁ ସଦରମହକୁମାରେ ଥିବା ଆଇ.ଟି.ଡି.ଏ କାର୍ଯ୍ୟାଳୟର ବଳକା ପରିସର କିମ୍ବା ଜିଲ୍ଲା ମୁଖ୍ୟାଳୟରେ ଥିବା ସରକାରୀ ଗୃହ ବା ଆବଶ୍ୟକ ସ୍ଥଳେ ଭଡା ସୂତ୍ରରେ କାର୍ଯ୍ୟାଳୟ ନିଆଯିବ ।

### ପରିଷଦ କର୍ମକର୍ତ୍ତାଙ୍କ ମର୍ଯ୍ୟାଦା

ପରିଷଦର ଅଧ୍ୟକ୍ଷଙ୍କୁ ରାଜ୍ୟ ମନ୍ତ୍ରୀ ପାହ୍ୟାର ମର୍ଯ୍ୟାଦା ଦିଆଯିବ । ଉପାଧ୍ୟକ୍ଷଙ୍କୁ ଜିଲ୍ଲା ପରିଷଦର ଉପାଧ୍ୟକ୍ଷ ଏବଂ ସଦସ୍ୟମାନଙ୍କୁ ଜିଲ୍ଲା ପରିଷଦର ସଦସ୍ୟ ଅନୁରୂପ ମର୍ଯ୍ୟାଦା ଦିଆଯିବ ।

### ପରିଷଦର ଅବଧି

ସଦସ୍ୟ ଆବାହକଙ୍କ ବ୍ୟତୀତ ପରିଷଦର ସଦସ୍ୟମାନଙ୍କ କାର୍ଯ୍ୟ ଅବଧି ୨ ବର୍ଷ ରହିବ ।

### ସ୍ୱତନ୍ତ୍ର ଉନ୍ନୟନ ପରିଷଦ ପ୍ରମୁଖ କାର୍ଯ୍ୟକ୍ଷେତ୍ର

ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଜନଜାତି ଗୋଷ୍ଠୀର ପରମ୍ପରା ଏବଂ ମୌଳିକ ପରିଚିତି ବଜାୟ ରଖି ସାମାଜିକ-ଅର୍ଥନୈତିକ ଅଭିବୃଦ୍ଧି ସହ ସୁରକ୍ଷା ଓ ସମୃଦ୍ଧି ପାଇଁ ପଦକ୍ଷେପ ନେବ । ଏହାର ମୁଖ୍ୟ ଲକ୍ଷ୍ୟ-

୧ – ବିକାଶ ଆଭିମୁଖ୍ୟର ସମତାଳରେ ଜନଜାତି ସଂସ୍କୃତିର ସଂରକ୍ଷଣ ।

୨ – ପ୍ରଜାତିକ ପରିଚିତିର ସ୍ଥିତାବସ୍ଥା ବଜାୟ ପାଇଁ ଜନଜାତି ସଂସ୍କୃତିର ସମୃଦ୍ଧି ।

୩– ଜନଜାତି ସଂସ୍କୃତି ବଜାୟ ରଖିବା ପାଇଁ ଜନଜାତିଙ୍କ ନିଜସ୍ୱ ଜ୍ଞାନକୌଶଳକୁ ସ୍ୱୀକୃତି ପ୍ରଦାନ ।

୪– ଜନଜାତିଙ୍କ ଅନୁଭୂତ ଓ ବୌଦ୍ଧିକ ସାଂସ୍କୃତିକ ବିଭବ ପରମ୍ପରା ଓ ଅଭ୍ୟାସ ଧାରାର ନଥିକରଣ ।

୫– ଜନଜାତି ସାଧନ କ୍ଷେତ୍ରଗୁଡ଼ିକର ଚିହ୍ନଟ ଏବଂ ଜୀବିକା ନିର୍ବାହର ହେତୁ ହିସାବରେ ସ୍ୱକୀୟ ଜ୍ଞାନ କୌଶଳ, ସଂସ୍କୃତିର ପ୍ରୟୋଗ ।

୬– ବିକାଶ ବ୍ୟବସ୍ଥା ସହିତ ପରିଚିତ କରାଇବା ପାଇଁ ଜନଜାତିମାନଙ୍କ ପରିଭ୍ରମଣ ସୁବିଧା ।

୭– ବିକାଶ ବ୍ୟବସ୍ଥାରେ ଯୋଗାଯୋଗ ପାଇଁ ଜନଜାତି ଭାଷା/ଉପଭାଷାର ବିକାଶ ସାଧନ ।

୮– ଜନଜାତିଙ୍କ ଆବଶ୍ୟକତାକୁ ନେଇ ପରିପୋଷିତ ଜନଜାତି ଉନ୍ନୟନ ସକାଶେ ଜନଜାତି ଅଂଚଳର ସ୍ଥାନୀୟ ସାଧନରେ ଭରପୂର ବିନିଯୋଗ ।

୯– ଜନଜାତିଙ୍କ ଆବଶ୍ୟକତାକୁ ନେଇ ଅଂଚଳ/ସଂସ୍କୃତି ଆଧାରିତ ବିକାଶ ବ୍ୟବସ୍ଥା ।

ଜନଜାତିମାନଙ୍କ ସଂସ୍କୃତିର ସୁରକ୍ଷା ଏବଂ ସମୃଦ୍ଧି ସାଙ୍ଗକୁ ଜନଜାତିମାନଙ୍କୁ ବିକାଶର ମୁଖ୍ୟଧାରାରେ ସାମିଲ କରିବା ପାଇଁ ସରକାରଙ୍କ ଅଙ୍ଗୀକାରବଦ୍ଧତା ସ୍ୱରୂପ ଜନଜାତି ଗୋଷ୍ଠୀର ପ୍ରମୁଖ ସଦସ୍ୟ ଏବଂ ଜନଜାତି ବିକାଶ କ୍ଷେତ୍ରର ବିଶେଷଜ୍ଞଙ୍କୁ ନେଇ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ କରାଯାଇଛି ।



### ସ୍ୱତନ୍ତ୍ର ଉନ୍ନୟନ ପରିଷଦର ଶୁଭାରମ୍ଭ

ଇତ୍ୟବସରରେ ସମସ୍ତ ନଅଗୋଟି ଉନ୍ନୟନ ପରିଷଦ ଗଠିତ ହେବା ସହ ଅଧ୍ୟକ୍ଷଙ୍କ ସମେତ ତାଙ୍କର ସମସ୍ତ ସଦସ୍ୟ ପରିଷଦରେ ଯୋଗଦାନ କରିସାରିଛନ୍ତି । ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡ଼ିଶା, ଏହି ପରିଷଦଗୁଡ଼ିକୁ ଆନୁଷ୍ଠାନିକଭାବେ ୦୯.୦୩.୨୦୧୮ ତାରିଖରେ ଶୁଭାରମ୍ଭ କରିଛନ୍ତି । ଏହି ବୈଠକରେ ୯ଟି ଜିଲ୍ଲାର ୧୧୭ଟି ବ୍ଲକରୁ ଜନଜାତି ପ୍ରତିନିଧି, ୪୦ ଜଣ ଜନଜାତି ପ୍ରତିନିଧି ଭାଷାବିତ୍, ଜନଜାତି ସଂସ୍କୃତି ପାଇଁ ବିଶେଷ ଯୋଗଦାନ କରିଥିବା ସଂସ୍କୃତିବିତ୍, ଜନଜାତି କ୍ରୀଡାବିତ୍, ସମସ୍ତ ୯ଟି ଜିଲ୍ଲାର ଅଧ୍ୟକ୍ଷ, ଉପାଧ୍ୟକ୍ଷ ଏବଂ ସଦସ୍ୟ, ମାନ୍ୟବର ମନ୍ତ୍ରୀବୃନ୍ଦ, ବରିଷ୍ଠ ପଦାଧିକାରୀବୃନ୍ଦ ଏହି ସ୍ୱତନ୍ତ୍ର ଉନ୍ନୟନ ପରିଷଦର ଶୁଭାରମ୍ଭ କାର୍ଯ୍ୟକ୍ରମରେ ସଦୟ ଯୋଗଦାନ କରିଛନ୍ତି ।

❖ ❖ ❖

# ମହାରାଜା କୃଷ୍ଣଚନ୍ଦ୍ର ଗଜପତି

**ଡକ୍ଟର ବାସୁଦେବ ଦାସ**

ଐତିହାସିକ ପାରଳାଖେମୁଣ୍ଡି ସହର ଏକ ଅନୁଚ୍ଚ ପାହାଡ ଉପରେ ଉତ୍କଳମାତାଙ୍କର ଏବେ ମଧ୍ୟ ଗୌରବ ଗାନ କରୁଅଛି । ଆଧୁନିକ ପାରଳାଖେମୁଣ୍ଡିର ମାତ୍ର ଏକ ତୃତୀୟାଂଶ ଓଡିଶାରେ ଅବସ୍ଥିତ । ଅବଶିଷ୍ଟ ଦୁଇ ତୃତୀୟାଂଶ ଆନ୍ଧ୍ର କୋଳରେ ରହିଛି । ଏହି ତାଲୁକାରେ ଗଙ୍ଗବଂଶୀୟ ଗଜପତିମାନେ ବହୁ ପୂର୍ବରୁ ରାଜତ୍ୱ କରି ଆସୁଥିଲେ । ପ୍ରକୃତରେ ପାରଳାଖେମୁଣ୍ଡି ଗଂଜାମ ଜିଲ୍ଲା (ତତ୍କାଳୀନ)ର ରାଜଧାନୀ । ଗଂଜାମ, ଫୁଲବାଣୀ ସମେତ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ ଜିଲ୍ଲାକୁ ନେଇ ଦକ୍ଷିଣରେ ସିଂହାଚଳଠାରୁ ପୂର୍ବରେ ଚିଲିକା ଅର୍ଥାତ୍ ଖଲିକୋଟ ତାଲୁକା ପର୍ଯ୍ୟନ୍ତ ଦୁଇ ଶହ ମାଇଲ ଧରି ପରିବ୍ୟାପ୍ତ । ଇଂରେଜ ଶାସନ କାଳରେ ମାନ୍ଦ୍ରାଜ ସହିତ ସଂଯୁକ୍ତ ହୋଇଥିବାରୁ ଓଡିଶାର କଳା, ସଂସ୍କୃତି ,ଭାଷା ଓ ସାମାଜିକ ଜୀବନ କ୍ଷୁଣ୍ଣ ହୋଇଥିଲା । ଜଣେ ଜଣେ କଠୋରପନ୍ଥୀ ଆଇ.ସି.ଏସ୍ କଲେକ୍ଟର ସେହି ଅଂଚଳରେ ଅବସ୍ଥାପିତ ହୋଇ ଶାସନ ପରିଚାଳନା କରୁଥିଲେ । ମାତ୍ର ଉତ୍କଳୀୟ ଚିନ୍ତା ଚେତନା ସେଠାକାର ଅଧିବାସୀଙ୍କର ଥିଲା ବଂଚିବାର କେନ୍ଦ୍ରବିନ୍ଦୁ । ପାରଳାଖେମୁଣ୍ଡିର ପ୍ରକୃତ ବାସିନ୍ଦା ଓଡିଆ । ତାଙ୍କ ଭିତରେ କିଛି ତେଲୁଗୁ ଓ ଶବର ଜାତିର ଲୋକେ ବସବାସ କରୁଥିଲେ । ପାରଳାର ଅନୁପମ ସୌନ୍ଦର୍ଯ୍ୟ ଓ ସଂସ୍କୃତି ସେଠାକାର ଗଙ୍ଗବଂଶୀ ନୃପତିଙ୍କ ଅସ୍ଥି ମଜ୍ଜାରେ ମିଶି ରହିଥିବାରୁ ଉକ୍ତ ରାଜବଂଶୀ ଗଜପତି ଉତ୍କଳୀୟ ପ୍ରୀତି ପ୍ରଦର୍ଶନ କରିଆସିଥିଲେ ।

ଊନବିଂଶ ଶତାବ୍ଦୀ ବେଳକୁ ଏହି ରାଜବଂଶର ସାଂସ୍କୃତିକ ଓ ଜାତୀୟ ଭାବାଦର୍ଶୀ ପାର୍ଶ୍ୱବର୍ତ୍ତୀ ତାଲୁକାରେ ପଡିଥିଲା । ବିଶେଷ କରି ଟିକିଲି, ଗୁଣୁପୁର ତରଳା, ମଞ୍ଜୁଷା, ସୁରଙ୍ଗି, ଜଇଡା, ବଡ ଖେମୁଣ୍ଡି, ସାନ ଖେମୁଣ୍ଡି, ଚିକିଟି ଆଦି ତାଲୁକାରେ ଉତ୍କଳୀୟ ଗୌରବବୋଧ ସୃଷ୍ଟି ହୋଇସାରିଥିଲା । ପ୍ରଥମତଃ ଇଂରେଜମାନଙ୍କ ଦୌରାତ୍ମ୍ୟ ଓ ହିନମନ୍ୟତା ଉକ୍ତ ଅଂଚଳବାସୀଙ୍କ ମନରେ କ୍ଷୋଭ ଆଣିଥିଲା । ଯେଉଁ ଉତ୍କଳୀୟ ନବ ଜାଗରଣର ମଳୟ ପ୍ରବାହିତ ହେଲା, ସେମାନଙ୍କର ଶୁଷ୍କ ମାନସରେ ନବ କିଶଳୟାରେ ଉଦଗମିତ ହୋଇଥିଲା ।

ପାରଳା ଖେମୁଣ୍ଡିର ବୃଦ୍ଧ ରାଜା ପ୍ରତାପ ଚନ୍ଦ୍ର ନାରାୟଣ ଦେବ ତାଙ୍କର ସମସ୍ତ ଦାୟିତ୍ୱ ନିଜ ଜ୍ୟେଷ୍ଠ ପୁତ୍ର ଗୌରଚନ୍ଦ୍ର ଗଜପତିଙ୍କୁ ନ୍ୟସ୍ତ କରିଥିଲେ । ତାଙ୍କର ଶାସନ (ଲୋକ ପାଳନ) ଓ ବ୍ୟବହାର ସମସ୍ତଙ୍କୁ ଖୁସି କରିଥିଲା । ଓଡିଆ ଭାଷାର ବିକାଶ ଓ ପ୍ରସାର ନିମନ୍ତେ ରାଜା ଗୌରଚନ୍ଦ୍ର ପାରଳାର ପ୍ରଥମ ଗ୍ରାଜୁଏଟ ଶ୍ୟାମସୁନ୍ଦର ରାଜଗୁରୁଙ୍କର ସହାୟତା ନେଇଥିଲେ । ମଣି କାଂଚନର ସଂଯୋଗ ପରି ଉଭୟଙ୍କର ଉଦ୍ଦେଶ୍ୟ ମହନୀୟ ହୋଇଗଲା । ଉତ୍କଳର ଅଦ୍ୱିତୀୟ ବୀର ଓ ବରପୁତ୍ର ତଥା ପ୍ରଥମ ପ୍ରଧାନମନ୍ତ୍ରୀ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଥିଲେ ଗଜପତି ଗୌରଚନ୍ଦ୍ରଙ୍କର ସୁପୁତ୍ର । ୧୮୯୨ ଖ୍ରୀ. ବୈଶାଖ ମାସ ଜନ୍ମ କରିଥିବା ଏହି ସୁଢ଼ଳ ତେଜୋଦୀପ୍ତ ସନ୍ତାନ ଯେ ଗଙ୍ଗବଂଶ ଓ ଗଜପତି ବଂଶର ମହାନ ମାତୃଭକ୍ତ ହେବ, ଏକଥା ହୁଏତ କେହି ଚିନ୍ତାକରି ନଥିବେ । କାରଣ ତତ୍କାଳୀନ ବ୍ରିଟିଶ ସାମ୍ରାଜ୍ୟ ଭିତରେ ନିର୍ଭୀକ ଦେଶପ୍ରେମ ରାଜାଙ୍କର ସଂଖ୍ୟାଥିଲା ହାତ ଗଣତି । ବାଲ୍ୟରୁ ତାଙ୍କର ସ୍ୱାଭିମାନ ଓ ସୁଗୁଣ ପ୍ରସ୍ଫୁଟିତ ହୋଇଥିଲା । ଗଣିତ ଭଲ ହେଉନଥିବାରୁ ଶ୍ୟାମସୁନ୍ଦର ରାଜଗୁରୁ ତାଙ୍କୁ କହିଥିଲେ- ବିଦ୍ୱାନ ହେବାକୁ ହେଲେ ଗଣିତ ସାଧନ ଆବଶ୍ୟକ । ରାଜା

ହୋଇ ଉତ୍ତମ ପ୍ରଜାପାଳନ କରିବେ କିପରି ? ନିଜକୁ ଅପମାନିତ ମନେକରି କର୍ଣ୍ଣର କୁଣ୍ଡଳରୁ ବାହାରା କାଢ଼ି ଗିଳି ଦେଇଥିଲେ । ଚହଳ ପଡିଯାଇଥିଲା ରାଜ ଅବରୋଧରେ । ଯାହା ହେଉ ଡାକ୍ତର ଡକାଯାଇ ବାନ୍ତି କରାଇ ଦେବାରୁ ରାଜକୁମାରଙ୍କ ପ୍ରାଣ ରକ୍ଷା ହୋଇଗଲା ଏବଂ ଗଣିତରେ ଦୁର୍ବଳତା ହେତୁ ଏପରି କରିଥିବାର ପ୍ରକାଶ କରିଥିଲେ । ପରବର୍ତ୍ତୀ କାଳରେ ଏହି ପ୍ରଚଣ୍ଡ ସ୍ୱାଭିମାନ ରାଜକୁମାର ସମସ୍ତ ବିଦ୍ୟାରେ ପାରଙ୍ଗମ ହାସଲ କରିଥିଲେ । ମାନ୍ଦ୍ରାଜର ନ୍ୟୁରିଂଟନ ରାଜକୁମାର କଲେଜରୁ ଉଚ୍ଚ ଶିକ୍ଷା ଲାଭ କରି ୧୮୧୩ ଖ୍ରୀ.ରେ ନିଜ ରାଜ୍ୟ ଭାର ଗ୍ରହଣ କରିଥିଲେ । ସେତେବେଳେ ପିତୃବ୍ୟ କବି ପଦ୍ମନାଭ ଗଜପତି ଓ ପିତା ଗୋରଚନ୍ଦ୍ର ଗଜପତି ନାରାୟଣ ଦେବ ଇହଲୀଳା ସମ୍ବରଣ କରିସାରିଥିଲେ । ସୁତରାଂ ରାଜାଭିଷେକ ପରେ ସୁବୁଦ୍ଧି ବଳରେ କିପରି ରାଜ୍ୟ ଓ ଦେଶର ଉନ୍ନତିମୂଳକ କାର୍ଯ୍ୟ କରି ପ୍ରଜା ବତ୍ସଳ ହେବେ, ସେଥିଲାଗି ତାଙ୍କୁ ଗଭୀର ଚିନ୍ତା କରିବାକୁ ପଡିଥିଲା ।

ଏହି ସମୟରେ ସଂଗଠିତ ଉତ୍କଳୀୟ ଆନ୍ଦୋଳନ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଖୁବ୍ ତଡିତ ବେଗରେ ଆରମ୍ଭ ହୋଇଥାଏ । ତଥାପି ତା'ରି ଭିତରେ ତାଙ୍କ ଜମିଦାରଙ୍କୁ ସେ କୋର୍ଟସ ଅଫ୍ ବୋର୍ଡସ୍ ମୁକ୍ତ କରି ଉତ୍କଳୀୟ କର୍ତ୍ତବ୍ୟ ମନେ କଲେ । ମାତ୍ର ଏକୋଇଶ ବର୍ଷ ବୟସରେ ଯୁବକ ଅସୀମ ପରାକାଷ୍ଠାରେ ଆରମ୍ଭ କଲେ ଜୟଯାତ୍ରା ।

ଖରସୁଆଁ ରାଜକନ୍ୟାଙ୍କର ପାଣି ଗ୍ରହଣ କରି ମାତ୍ର ବାରବର୍ଷ ଦାମ୍ପତ୍ୟ ଭୋଗ କରିବା ପରେ ରାଣୀଙ୍କର ମୃତ୍ୟୁ ଘଟିଲା । କୃଷ୍ଣଚନ୍ଦ୍ର ଗଜପତି ମାତୃହରା ଦୁଇ ଶିଶୁପୁତ୍ର ଓ ଶିଶୁ କନ୍ୟାଙ୍କୁ ଚାହିଁ ଦାରୁଣ ବିଚ୍ଛେଦରେ କାଳାତିପାତ କରିଥିଲେ । ପୁନଃବିବାହ କରିବାକୁ ପରିଜନମାନେ ବାଧ କରିଥିଲେ ମଧ୍ୟ ରାଜା କୃଷ୍ଣଚନ୍ଦ୍ର ତାଙ୍କର ସକଳ ପ୍ରୀତିକୁ ଉତ୍କଳୀୟମାନଙ୍କୁ ଅର୍ପଣ କରି କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଥିଲେ ।

୧୯୧୪ ମସିହାରେ ବିଶ୍ୱଯୁଦ୍ଧରେ ଭୟାବହ ପରିସ୍ଥିତି ଓଡିଶା ଉପରେ ମଧ୍ୟ ପ୍ରଭାବ ପକାଇଥିଲା । ତାହା ସତ୍ତ୍ୱେ ଉତ୍କଳୀୟ ନେତୃବୃନ୍ଦ ଉତ୍କଳ ସମ୍ମିଳନୀ ପକ୍ଷରୁ ଦେଶ ମିଶ୍ରଣ ଉଦ୍ୟମକୁ ଅଧିକ କ୍ରୀୟାଶୀଳ କରିଥିଲେ । ସେହି ବର୍ଷ ୧୯୧୪ ମସିହାରେ ଉତ୍କଳ ସମ୍ମିଳନୀ ଦଶମ ଅଧିବେଶନ ପାରଳାଖେମୁଣ୍ଡିଠାରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ସହଯୋଗରେ ଅନୁଷ୍ଠିତ ହୋଇଥିଲା ଏବଂ ଏହି ସମ୍ମିଳନୀରେ ଜୟପୁରର ସୁନାମଧନ୍ୟ ରାଜା ବିକ୍ରମ ଦେବ ଅଧ୍ୟକ୍ଷତା କରିଥିଲେ । ନେତୃବୃନ୍ଦ କର୍ମବୀର ଗୌରୀଶଙ୍କର, ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଫକିର ମୋହନ ସେନାପତି, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବଙ୍କ ମୁଖରିତ ପ୍ରଶଂସା ସେଦିନ କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରାଣରେ ଉତ୍କଳୀୟ ଚେତନାର ଉତ୍ତାଳ ତରଙ୍ଗ ସୃଷ୍ଟି କରିଥିଲା ।

ରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ପ୍ରଥମ ପଦକ୍ଷେପ ଥିଲା ଶିକ୍ଷାର ବିକାଶ । ଶିକ୍ଷାର ବ୍ୟାପକ ବିକାଶ ନ ହେଲେ ଦେଶ ଓ ଜାତିର ଭବିଷ୍ୟତ ଉଜ୍ଜ୍ୱଳ ହୋଇପାରିବ ନାହିଁ । ସେ କେତେକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବା ସହିତ ତାଙ୍କର ଜମିଦାରୀ ଅନ୍ତର୍ଭୁକ୍ତ ଶିକ୍ଷାନୁଷ୍ଠାନର ଛାତ୍ରମାନଙ୍କର ବିଦ୍ୟାଳୟ ଦେୟ ଅଧା କରିଥିଲେ ଏବଂ ବିଦେଶାଗତ ଦୂର ଦୂରାନ୍ତରୁ ଆସୁଥିବା ଛାତ୍ରଙ୍କ ନିମିତ୍ତ ବିଦ୍ୟାଳୟ ଦେୟ ସହିତ 'ବୋର୍ଡିଂ' ଖର୍ଚ୍ଚ ମଧ୍ୟ ଛାଡ କରିଦେଇଥିଲେ । ସମସ୍ତ ବ୍ୟୟ ରାଜକୋଷ ବହନ କରୁଥିଲା । ଏହି ସୁଯୋଗରେ ବହୁ ଛାତ୍ର ଶିକ୍ଷାଲାଭ କରିଥିଲେ । ତାଙ୍କ ପିତୃବ୍ୟ ପଦ୍ମନାଭ ଦେବଙ୍କ ନାମରେ ଅନୁଷ୍ଠାନ ଗଠନ କରି ତା' ପକ୍ଷରୁ ଗଚ୍ଛିତ ପାଣ୍ଠିର ସୁଧ ସ୍କଲାରସିପ ଭାବେ ଦିଆଯାଉଥିଲା । ୧୯୩୩ ମସିହାରେ ପାରଳାଖେମୁଣ୍ଡି ଓ ଜୟପୁର ଓଡିଶା ପ୍ରଦେଶରୁ ବିଛିନ୍ନ କରାଯାଇଥିବାରୁ ତାଙ୍କୁ ଇଂଲଣ୍ଡ ଯିବାକୁ ହେଲା ।

ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ଇତିହାସ ପୃଷ୍ଠାରେ ଉଲ୍ଲେଖ ଅଛି–୧୯୨୭ ମସିହାରେ ବ୍ରିଟିଶ ସରକାରଙ୍କ ଦ୍ୱାରା ନିଯୁକ୍ତ 'ଫିଲପ ଡଫ୍ କମିଶନ' ଓଡିଶା ପ୍ରଦେଶ ମିଶ୍ରଣରେ ମାନ୍ଦ୍ରାଜ ଓ ଓଡିଆମାନଙ୍କର ମତାମତ ସଂଗ୍ରହ ପାଇଁ ଓଡିଶା ଆଗମନ କରିଥିଲେ । ସତେବେଳେ କୃଷ୍ଣଚନ୍ଦ୍ର ଗଜପତି ଦାବି କରିଥିଲେ ଯେ, ଦେଶ ମିଶ୍ରଣ କରାଯାଇ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ କରାଯାଉ । କମିଶନର ଏହାକୁ ଓଡିଆମାନଙ୍କର ଆନ୍ଦୋଳନର ଗୋଟିଏ ନୂତନ ଆଭିମୁଖ୍ୟ ଭାବେ ଗ୍ରହଣ କରି ତଦନୁଯାୟୀ ତାଙ୍କର ସୁପାରିଶ ବ୍ରିଟିଶ ସରକାରଙ୍କ ପାଖରେ

ଉପସ୍ଥାପିତ କରିଥିଲେ । ମଧୁସୂଦନ ଦାସ ପ୍ରମୁଖ ବଡ ବଡ ନେତୃବୃନ୍ଦଙ୍କର ଆଶଙ୍କା ଥିଲା ଯେ, ଏହି ନୂତନ ପ୍ରସ୍ତାବ ହେତୁ ଦେଶ ମିଶ୍ରଣ ହୋଇ ନପାରେ । କାରଣ ଭାରତ ସରକାର ପ୍ରଥମ ବିଶ୍ୱଯୁଦ୍ଧରେ ଆର୍ଥିକ ଅନଟନରେ ପଡିଯାଇଥିଲେ । କିନ୍ତୁ ପାରଳା ମହାରାଜାଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ନିକଟରେ ସେହି ଭାବନା ଭିନ୍ନ ହୋଇଯାଇଥିଲା । ୧୯୨୯ ମସିହାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସହଯୋଗ ଫଳରେ ସାଇମନ କମିଶନ ମଧ୍ୟ ପ୍ରଭାବିତ ହୋଇଥିଲା ।

ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ତୀବ୍ର ଆନ୍ଦୋଳନର ସୂତ୍ରପାତ ହେବାରୁ ୧୯୩୦ ମସିହାରେ ଲଣ୍ଡନରେ ଗୋଲଟେବୁଲ ବୈଠକ ବସି ଭାରତର ନୂତନ ସମ୍ବିଧାନ ପ୍ରଣୀତ ହୋଇଥିଲା । ସେହି ବୈଠକରେ ଓଡିଶାରୁ ପ୍ରତିନିଧିତ୍ୱ କରିଥିଲେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ସେହିଠାରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ପ୍ରସ୍ତାବ ଉତ୍ଥାପନ କରିଥିଲେ । ଯାହା ଫଳରେ ୧୯୩୧ ମସିହାରେ ଓଡନେଲ ସାହେବଙ୍କ ନେତୃତ୍ୱରେ ତିନିଜଣ ବ୍ୟକ୍ତିଙ୍କୁ ନେଇ ଗୋଟିଏ ସୀମା ନିର୍ଦ୍ଦେଶକ କମିଟି ଗଠିତ ହୋଇଥିଲା । ଗୋପାଳପୁରଠାରେ ଦକ୍ଷିଣ ଓଡିଶାର ସୀମା ନିର୍ଦ୍ଧାରଣ ଆଲୋଚନା ଓ ସାକ୍ଷ୍ୟ ଗ୍ରହଣ କରିବାକୁ ଯାଇ ଓଡନେଲ ମାନ୍ଦ୍ରାଜ ସରକାରଙ୍କୁ ସମର୍ଥନ କରିବା ଉଦ୍ଦେଶ୍ୟରେ ଜୟପୁର ଓ ପାରଳାଖେମୁଣ୍ଡିକୁ ଓଡିଶାରେ ମିଶ୍ରଣକୁ ବିରୋଧ କରିଥିଲେ କିନ୍ତୁ ତାଙ୍କର ଅନ୍ୟ ଦୁଇ ଜଣ ସହଯୋଗୀ ଫୁକାନ ଓ ମେହେଟା ଓଡନେଲଙ୍କ ଯୁକ୍ତିକୁ ଖଣ୍ଡନ କରି ସ୍ୱତନ୍ତ୍ର ମତ ପ୍ରଦାନ କରିଥିଲେ । ଏଠାରେ ଉଲ୍ଲେଖନୀୟ ଯେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମାନ୍ଦ୍ରାଜ ପ୍ରେସିଡେନ୍ସିର ବ୍ୟକ୍ତି ହୋଇଥିବାରୁ ସେ ଓଡିଆ ସପକ୍ଷରେ ଦୃଢ ଯୁକ୍ତି ସ୍ଥାପନ କରିବା ଯଥାର୍ଥ ନୁହେଁ ବୋଲି ତାଙ୍କର ମତ ଥିଲା । ଇତ୍ୟବସରରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମରେ ସାରଙ୍ଗଗଡ ଜମିଦାରୀ କ୍ରୟ କରି ଦେବାରୁ ତାଙ୍କର ଓଡିଶା ନାଗରିକତ୍ୱ ବଳିଷ୍ଠ ହୋଇଯାଇଥିଲା । କୃଷ୍ଣଚନ୍ଦ୍ର ଗଜପତିଙ୍କର ଯୁକ୍ତିନିଷ୍ଠ ଦାବି ବ୍ରିଟିଶ ଶାସକଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ୧୨.୦୧.୧୯୩୩ ତାରିଖରେ ଲଣ୍ଡନଠାରେ ଅନୁଷ୍ଠିତ ତୃତୀୟ ଗୋଲଟେବୁଲ ବୈଠକ ବେଳେ ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି ମୁଖ୍ୟ ପ୍ରତିନିଧି ଭାବରେ ଯୋଗଦାନ କରି ସମସ୍ତ ସଦସ୍ୟଙ୍କୁ ଡିନର (ଭୋଜି)କୁ ଆମନ୍ତ୍ରଣ କରିଥିଲେ । ସରକାରଙ୍କ ଉଚ୍ଚ ଶାସନ ସଚିବ ସାମୁଏଲ ହୋଇ ଥିଲେ ମୁଖ୍ୟ ଅତିଥି । ଉକ୍ତ ଭୋଜିସଭାରେ ସାର୍ ସାମୁଏଲ ହୋର କୃଷ୍ଣଚନ୍ଦ୍ର ଗଜପତିଙ୍କ କୃତିତ୍ୱକୁ ପ୍ରଶଂସା କରି ମନ୍ତବ୍ୟ ପ୍ରଦାନ କରିଥିଲେ ।

୧୯୩୦ ସେପ୍ଟେମ୍ବର ୧ ତାରିଖରେ ଭାରତ ସରକାରଙ୍କ ଦ୍ୱାରା ଅନୁମୋଦିତ ହୋଇ ଓଡିଶା ଓ ସିନ୍ଧୁ ପ୍ରଦେଶ ଗଠନ ପ୍ରସ୍ତାବ ଇଂଲଣ୍ଡ ପ୍ରେରିତ ହୋଇଥିଲା । ମାତ୍ର ବ୍ରିଟିଶ ସରକାର ଭାରତର ଏକମାତ୍ର ଓଡିଶା ପ୍ରଦେଶ ଗଠନର ପ୍ରସ୍ତାବକୁ ସ୍ୱୀକୃତି ଦେଇ ସୀମା ନିର୍ଦ୍ଧାରଣ କରିବାକୁ ଆଦେଶ ଜାରି କରିଥିଲେ । ଭାରତରେ ସାମ୍ବିଧାନିକ ସଂସ୍କାର ପ୍ରବର୍ତ୍ତିତ ହେବ, ତାହା ସ୍ଥିର କରିବାକୁ ବିଲାତ ସରକାର ଯେଉଁ ଗୋଲଟେବୁଲ ବୈଠକ ଆହ୍ୱାନ କରିଥିଲେ, ସେଥିରେ ଓଡିଶାର ପ୍ରତିନିଧିତ୍ୱ କରିଥିଲେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ରାଜା ସେହି ଗୋଲଟେବୁଲ ବୈଠକରେ ଯେଉଁ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ ତାହା ଏତେ ମର୍ମସ୍ପର୍ଶୀ ହୋଇଥିଲା ଯେ ଭାରତରୁ ଯୋଗଦାନ କରିଥିବା ଅନ୍ୟ ପ୍ରତିନିଧିବୃନ୍ଦ ସମସ୍ୱରରେ ନୂତନ ଓଡିଶା ଗଠନ ପ୍ରସ୍ତାବକୁ ଦୃଢ଼ ସମର୍ଥନ ଜଣାଇଥିଲେ । ଏହି ସୀମା ନିର୍ଦ୍ଧାରଣ, ନୂତନ ପ୍ରଦେଶ ଗଠନର ଆର୍ଥିକ ବୋଝ ଆଦିକୁ ବିଚାର କରାଯାଇ ଓଡ଼ନେଲ୍ କମିଶନ ଗଠିତ ହୋଇଥିଲା । ପାରଳାଖେମୁଣ୍ଡି ରାଜା କୃଷ୍ଣଚନ୍ଦ୍ର ଗଜପତି, ସଚ୍ଚିଦାନନ୍ଦ ସିହ୍ନା ଓ ନରସିଂହ ରାଜୁଙ୍କୁ ତାଙ୍କର ସହଯୋଗୀ ସଦସ୍ୟ ଭାବେ ମନୋନୀତ କରାଯାଇଥିଲା । ଏମାନେ ଓଡିଆ, ତେଲୁଗୁ ଓ ହିନ୍ଦୀ ଭାଷାଭାଷୀଙ୍କର ପ୍ରତିନିଧି ଭାବେ ବିବେଚିତ ହୋଇଥିଲେ ।

ଉତ୍କଳୀୟ ନେତୃଗଣ ସବୁ ଭେଦଭାବ ଭୁଲି ନୂତନ ପ୍ରଦେଶ ଗଠନରେ ସହଯୋଗ କଲେ । ସେହି ସମୟରେ ପ୍ରାନ୍ତୀୟ ମେଦିନୀପୁର ଆଦି ଅଂଚଳରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲେ ମଧ୍ୟ ତାହା ପ୍ରଭାବ ଶୂନ୍ୟ ହୋଇଯାଇଥିଲା । ନିରଞ୍ଜନ ପଟ୍ଟନାୟକ, ଲିଙ୍ଗରାଜ ପାଣିଗ୍ରାହୀଙ୍କୁ ଜନସଂଖ୍ୟା ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ବିଚିତ୍ରାନନ୍ଦ ଦାସ ଆର୍ଥିକ ଦିଗରୁ କ'ଣ କରାଯାଇ

ପାରିବ, ସେ ଦିଗରେ ଗବେଷଣା ଚଳାଇଥିଲେ । ତରୁଣ ଛାତ୍ରମାନେ ବହୁ ସଂଖ୍ୟାରେ ପ୍ରଚାର କାର୍ଯ୍ୟରେ ଲାଗିଲେ ଏବଂ ବିଛିନ୍ନାଂଚଳରେ ସଭା ସମିତିମାନ ହେଲା । ଅଭୁତପୂର୍ବ ଐକ୍ୟ ପ୍ରଦର୍ଶନ କରି ସୀମା କମିଶନଙ୍କୁ ସ୍ୱାଗତ କରାଗଲା । ବଙ୍ଗ ପ୍ରଦେଶର ମେଦିନିପୁର, ସିଂହଭୂମି, କେନ୍ଦ୍ର ପ୍ରଦେଶର ସମ୍ବଲପୁର, ଚକ୍ରଧରପୁର, ମାନ୍ଦ୍ରାଜର ଗଂଜାମ, ଜୟପୁର, ପାରଳାଖେମୁଣ୍ଡି ପ୍ରଭୃତି ସ୍ଥାନରେ ଅଧିବାସୀମାନେ ନିଜେ ନିଜର ସ୍ମାରକପତ୍ରମାନ ଦେଇଥିଲେ । ସୀମା କମିଶନ ମୁଖ୍ୟତଃ ଓଡ଼ିଆ ଭାଷୀ ସଂଖ୍ୟା ଭିତ୍ତିରେ କେଉଁ କେଉଁ ଅଂଚଳ ଓଡ଼ିଶା ସହିତ ମିଶ୍ରଣ ହେବ, ତାହା ସ୍ଥିର କରିଥିଲେ । ପରିଶେଷରେ ସେମାନଙ୍କ ରିପୋର୍ଟର ନୂତନ ପ୍ରଦେଶରେ ଓଡ଼ିଶା ଡିଭିଜନ- ଅନୁଗୁଳ, ପଦ୍ମପୁର, ଖଡିଆଳ, ଗଂଜାମର ଅଧିକାଂଶ ଅଂଚଳ ଓ ଉଚ୍ଚ ଜାଗାର ମାଳ ଅଂଚଳକୁ ଅନ୍ତର୍ଭୁକ୍ତ କରିବାକୁ ନିଷ୍ପତ୍ତି ହୋଇଥିଲା ।

ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀ ଓଡ଼ିଶାରେ ମିଶିବା ସନ୍ଦେହପୂର୍ଣ୍ଣ ହେବାରୁ ପ୍ରବଳ ଜନ ବିକ୍ଷୋଭ ହେଲା । ଲଣ୍ଡନରେ ଓଡ଼ିଆ ସମସ୍ୟା ନେଇ ପୁଙ୍ଖାନୁପୁଙ୍ଖ ଆଲୋଚନା ଏବଂ ପାର୍ଲାମେଂଟ ସଦସ୍ୟମାନଙ୍କୁ ପ୍ରଭାବିତ କରିବା ଉଦ୍ଦେଶ୍ୟରେ ଏକ ପ୍ରତିନିଧି ଦଳ ମନୋନୀତ ହେଲେ । ସେଥିରେ ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି ସଦସ୍ୟ ରହିଲେ । ପ୍ରତିନିଧି ମଣ୍ଡଳୀଙ୍କର ଯୁକ୍ତି ଓ ପରାମର୍ଶ ଶୁଣିବା ପରେ ପାର୍ଲାମେଂଟ ନିଷ୍ପତ୍ତି ନେଲେ- ଯେଉଁଥିରେ କି ଜୟପୁର ଓ ପାରଳା ଖେମୁଣ୍ଡି ସହର ଓ ମାଳ ଅଂଚଳ ସ୍ଥାନ ପାଇଲା । ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହେବାର ମାର୍ଗ ସ୍ପଷ୍ଟ ହୋଇଗଲା । ୧୯୩୬ ଅପ୍ରେଲ ୧ ତାରିଖ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା । ସେହି ସମୟରେ ୧୯୩୫ ମସିହା ଭାରତ ଆଇନ କାର୍ଯ୍ୟକାରୀ ହୋଇଥାଏ । ମାତ୍ର ସଂସ୍କାର ଆଇନ ଅନୁଯାୟୀ ନିର୍ବାଚନ ନ ହେବାରୁ ୧୯୩୭ ମାର୍ଚ୍ଚ ୩୧ ପର୍ଯ୍ୟନ୍ତ ଗଭର୍ଣ୍ଣର ପ୍ରଦେଶର ଶାସକ କାର୍ଯ୍ୟ ପରିଚାଳନା କରୁଥିଲେ । ନିର୍ବାଚନ ଲଢ଼ିବାକୁ ତିନୋଟି ଦଳ ଯଥା-କନିକା ରାଜାଙ୍କ ୟୁନାଇଟେଡ ପାର୍ଟି, ପାରଳାଖେମୁଣ୍ଡି ରାଜାଙ୍କର ଇଣ୍ଡିପେଣ୍ଡେଟ ପାର୍ଟି ଓ ଖଲିକୋଟ ରାଜାଙ୍କର ନ୍ୟାସନାଲ ପାର୍ଟି ଗଠିତ ହୋଇଥାଏ । ନିର୍ବାଚନରେ କଂଗ୍ରେସ ଆସିଥିଲେ ହେଁ ଗଭର୍ଣ୍ଣରଙ୍କୁ ସହଯୋଗ ଦେବାକୁ ପ୍ରତିଶ୍ରୁତି କଂଗ୍ରେସ ତରଫରୁ ନମିଳିବାରୁ ବିଶ୍ୱନାଥ ଦାସଙ୍କୁ ଗଭର୍ଣ୍ଣର ପ୍ରଧାନମନ୍ତ୍ରୀ ପାଇଁ ଡାକିଲେ ନାହିଁ । କୃଷ୍ଣଚନ୍ଦ୍ର ଗଜପତିଙ୍କୁ ପ୍ରଧାନମନ୍ତ୍ରୀ କରାଗଲା । ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ଅଭିଷିକ୍ତ ହେଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୯୩୭ ଅପ୍ରେଲ ପହିଲାରେ । ମାତ୍ର ଛ' ମାସ କାର୍ଯ୍ୟକାଳ ପରେ କୌଣସି ପ୍ରତିବାଦ ନଥାଇ ବା ସାମ୍ବିଧାନିକ ସଂକଟ ନଥାଇ ସେ ଜୁଲାଇ ୧୯ ତାରିଖରେ ପ୍ରଧାନମନ୍ତ୍ରୀ ପଦରୁ ସ୍ୱଇଚ୍ଛାରେ ଇସ୍ତଫା ପ୍ରଦାନ କରିଦେଲେ ।

ପୁନଶ୍ଚ ୧୯୪୧ ମସିହାରେ ଅସନ୍ତୁଷ୍ଟ କଂଗ୍ରେସ ବିଧାୟକଙ୍କ ସହାୟତାରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନର ନେତୃତ୍ୱ ତାଙ୍କୁ ମିଳିଥିଲା । ଏହି କାର୍ଯ୍ୟକାଳ ମଧ୍ୟରେ ଓଡ଼ିଶାର ଦୁଇଟି ଅକ୍ଷୟ କୀର୍ତ୍ତି ସ୍ଥାପନ କରିଥିଲେ -ଉତ୍କଳୀୟ ବିଶ୍ୱବିଦ୍ୟାଳୟ ବାଣୀବିହାର ଓ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ । ଶିକ୍ଷା ମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର ଏହି ଯୋଜନାକୁ ଅନ୍ତରଙ୍ଗ ସହକାରେ ସାଫଲ୍ୟ ମଣ୍ଡିତ କରିଥିଲେ । ପ୍ରଧାନମନ୍ତ୍ରୀ ଭାବେ ଯାହା ତାଙ୍କର ଆୟ ହୋଇଥିଲା, ସବୁକିଛି ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ ଦେଇଥିଲେ । ୧୯୪୪ରେ ସେ ପ୍ରଧାନମନ୍ତ୍ରୀ ପଦ ତ୍ୟାଗ କରି ଲୋକଙ୍କ କଲ୍ୟାଣଭାଜନ ହୋଇଥିଲେ । ମାତ୍ର କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ହରାଇ ଉତ୍କଳମାତା ଅଧିରା ହୋଇ ପଡିଥିବେ ନିଶ୍ଚୟ । ତାଙ୍କପରି ନିଃସ୍ୱାର୍ଥ ଜନସେବକ ବିରଳ । ଉଦାର, ଗମ୍ଭୀର, ଦାନଶୀଳ, ଶିକ୍ଷାପ୍ରେମୀ ଓ ଓଡ଼ିଆ ପ୍ରେମୀ ଯୋଦ୍ଧା ଗଜପତିଙ୍କର ସମକକ୍ଷ ରାଜା ବିଶ୍ୱରେ ବିରଳ ।

**ସହାୟକ ଗ୍ରନ୍ଥ :**

୧. ଓଡ଼ିଶା ଇତିହାସ-ପଟ୍ଟନାୟକ

୨. ଓଡ଼ିଆ ଜାତିର ଇତିହାସ ଓ ସଂସ୍କୃତି- ପ୍ରମୋଦ କୁମାର ମିଶ୍ର

୩. ଓଡ଼ିଶାର ସଂକ୍ଷିପ୍ତ ଇତିହାସ- ଉତ୍କଳ ବିଶ୍ୱବିଦ୍ୟାଳୟ

୪. ଓଡ଼ିଶା ପ୍ରଦେଶ ଗଠନର ଇତିହାସ

ଜୟିପୁରା ( ବି କଲୋନୀ), କେନ୍ଦ୍ରାପଡା

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ

**ଡକ୍ଟର ଚିତ୍ତରଞ୍ଜନ ଦାଶ**

ପ୍ରାଣ ପ୍ରାଚୁର୍ଯ୍ୟ ଭରା ଏହି ଆମ ପବିତ୍ର ଉତ୍କଳ ବା ଓଡ଼ିଶାର ଶୋଭା ପସରା ଅତୀବ ମନୋରମ । ପାହାଡ଼ ପର୍ବତ ଘେରା ଘଞ୍ଚ ବନରାଜିର ଅଫୁରନ୍ତ ଶୋଭା ପ୍ରତିଟି ଉତ୍କଳୀୟ ପ୍ରାଣରେ ନବ ପୁଲକ ସଞ୍ଚାର କରେ । କଳା–ସଂସ୍କୃତିର ମହିମାମୟ ପ୍ରବାହରେ ଋଦ୍ଧିମନ୍ତ ଉତ୍କଳର ଶୋଭାରାଜିରେ ମୁଗ୍ଧ ହୋଇ କବି କଲମରୁ ଝରି ପଡ଼ିଥିଲା–

ବନ୍ଦେ ଉତ୍କଳ ଜନନୀ<br>
ଚାରୁ ହାସ୍ୟମୟୀ, ଚାରୁ ଭାଷମୟୀ<br>
ଜନନୀ, ଜନନୀ, ଜନନୀ ।

ସାଂସ୍କୃତିକ ପୃଷ୍ଠଭୂମିରେ ମନ୍ଦିରମାଳିନୀ ଆମର ଏହି ପବିତ୍ର ଉତ୍କଳ ବିଭବ ବିମଣ୍ଡିତ । ଜଗତର ନାଥ ମହାପ୍ରଭୁ ଜଗନ୍ନାଥ ସ୍ୱୟଂ ଏଠି ଅବସ୍ଥାନ କରୁଛନ୍ତି, ତା'ସହିତ ସୁତରାଂ ସବୁ ଦେବାଦେବୀମାନଙ୍କର ଲୀଳା ଭୂଇଁ ହିଁ ହେଉଛି ଏହି ପବିତ୍ର ଉତ୍କଳ ଭୂଇଁ । ଏ ମାଟିରେ ଶାନ୍ତି, ମୈତ୍ରୀ ଓ ପ୍ରୀତିର ଶବ୍ଦ ତରଙ୍ଗ ପ୍ରତିଧ୍ୱନିତ ହୁଏ । ବନବନାନୀ, ଲତା, ଶୋଭାମୟ ଅନୁଚ୍ଚ ପର୍ବତମାଳା, ନଦୀ ସମୁଦ୍ର, ଶସ୍ୟକ୍ଷେତ୍ର ଜନଜୀବନକୁ ଆନନ୍ଦ ପ୍ରଦାନ କରିଥାନ୍ତି । ଉତ୍କୃଷ୍ଟ କଳାତ୍ମକ ଆମର ଏ ଦେଶର ଅଧିବାସୀଙ୍କୁ ଓଡ଼ିଆ ବା ଉତ୍କଳୀୟ କୁହାଯାଏ ।

୧୯୩୬ ମସିହା ଅପ୍ରେଲ ୧ ତାରିଖ ଓଡ଼ିଶା ଇତିହାସରେ ଏକ ଅବିସ୍ମରଣୀୟ ଦିବସ । ଉତ୍କଳବାସୀଙ୍କ ପାଇଁ ଏହା ଏକ ଗୌରବ ତଥା ପବିତ୍ର ଦିବସ । ଏହି ପବିତ୍ର ଦିବସ ପାଳନ କରିବା ଅବସରରେ ଆମର ମନେହୁଏ– ଓଡ଼ିଆ ଜାତି ଏବେ ମଧ୍ୟ ନିତି, ଗୌରବୀୟ ଅତୀତର ସ୍ମୃତିଚାରଣ କରୁଛି । ଏହି ଦିନ ଉତ୍କଳ ଜନନୀ ବହୁ ଘାତ ପ୍ରତିଘାତ ସତ୍ତ୍ୱେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ପରିଣତ ହୋଇଥିଲା । ଫଳସ୍ୱରୂପ ଶତାବ୍ଦୀ ଶତାବ୍ଦୀ ଧରି ସ୍ୱୀୟ, ଉଚ୍ଚ ପରଂପରା, ସଂସ୍କୃତି ଓ ମୂଲ୍ୟବୋଧର ସ୍ୱାତନ୍ତ୍ର୍ୟ ବ୍ୟାସ ରଖିଆସିଥିବା ଓଡ଼ିଆ ଭାଷା ଲୋକମାନଙ୍କର ସ୍ୱାତନ୍ତ୍ର୍ୟ ପ୍ରଦେଶ ଗଠନର ଆଶା, ଆକାଂକ୍ଷା ଓ ସ୍ୱପ୍ନ ବାସ୍ତବତାରେ ରୂପାୟିତ ହୋଇଥିଲା ।

ନୂତନ ଓଡ଼ିଶାର ସେହି ନିର୍ମାଣ ପର୍ବରେ ଯେଉଁ ମହାପୁରୁଷମାନେ ଆପ୍ରାଣ ଉଦ୍ୟମ ଚଳାଇଥିଲେ ସେମାନଙ୍କ ଉଦ୍ଦେଶ୍ୟରେ ଆଜି ଭକ୍ତିପୂତ ପ୍ରଣାମ ଜଣାଇବା ଆମର ପ୍ରଥମ କର୍ତ୍ତବ୍ୟ । ନିର୍ବିକାରରେ ଆତ୍ମୋତ୍ସର୍ଗ ଓ ସ୍ୱାର୍ଥତ୍ୟାଗ କରି ଓଡ଼ିଶାର ସର୍ବବିଧ କଲ୍ୟାଣ ପାଇଁ ଯେଉଁ କେତେଜଣ ସୁନାମଧନ୍ୟ ଯୁଗ ପ୍ରବର୍ତ୍ତକ ନିଜର ନିଃସ୍ୱାର୍ଥପରତା ପ୍ରତିପାଦନ କରିଛନ୍ତି, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ, ତ୍ୟାଗୀ ଗୋପବନ୍ଧୁ, ପଣ୍ଡିତ ଗୋଦାବରୀଶ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି, କର୍ମବୀର ଗୌରୀଶଙ୍କର ପ୍ରମୁଖ ଅଟନ୍ତି ।

ଅପ୍ରେଲ ପହିଲା ଇଂରାଜୀ କ୍ୟାଲେଣ୍ଡରର ଗୋଟିଏ ଦିନ । ପ୍ରତିବର୍ଷ ଆମେ ନିର୍ଦ୍ଦିଷ୍ଟ ତାରିଖଟିକୁ ଉତ୍କଳ ଦିବସ ରୂପେ ପାଳନ କରି ରାଜ୍ୟ ପ୍ରତି ଆମର ସମ୍ମାନ, ଅନୁରାଗ, ଶ୍ରଦ୍ଧା ପ୍ରକାଶ କରିଥାଉ । ଏହି ପରଂପରା ପ୍ରତି ଯେଉଁମାନଙ୍କର ହୃଦୟର ଦରଦ ଭାବ ଅଛି, ସେମାନେ ହିଁ ବୁଝି ପାରିବେ ଏଇମାଟିର ପାଣି, ପବନ, ବନଜ୍ୟୋସ୍ନା, ଅରଣ୍ୟ କାକଳି, ନଦୀ ଝରଣାର ସଂଗୀତ କେତେ ଆପଣାର । କବି ଗଙ୍ଗାଧରଙ୍କ ଭାଷାରେ –

ମାତୃଭୂମି ମାତୃଭାଷାର ମମତା<br>
ଯା' ହୃଦେ ଜନମି ନାହିଁ

ତା'କୁ ଯଦି ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନ ରହିବେ କାହିଁ।

ଅନେକ ସ୍ମୃତି ବିଜଡିତ ଅତୀତର ସେହି କଳିଙ୍ଗ ଆଜି ଉତ୍କଳ ବା ଓଡ଼ିଶା ନାମରେ ପରିଚିତ। ଉତ୍କଳର ଗୌରବମୟ ପରଂପରା, ସାହିତ୍ୟ–ସଂସ୍କୃତି, ପ୍ରକୃତିର ବିପୁଳ ସମ୍ଭାର, ରୂପର ବର୍ଣ୍ଣାଳୀ, ଭାବର ପବିତ୍ର ଆଦାନ–ପ୍ରଦାନ କିଛି କାଳ ପାଇଁ ଇଂରେଜମାନଙ୍କ ଚକ୍ରବ୍ୟୂହ ମଧ୍ୟରେ ନିକ୍ଷେପିତ, ଅବହେଳିତ, ଲାଞ୍ଛିତ, ଅପମାନିତ, ଭ୍ରଷ୍ଟିତ, ଦଳିତ ହୋଇ ଏକ ପ୍ରକାର ଅଣନିଃଶ୍ୱାସୀ ହୋଇଯାଇଥିଲା। ସେତେବେଳେ ସେହି ପରାକ୍ରମଶାଳୀ ଇଂରେଜ ଶକ୍ତି ଚାହୁଁଥିଲା ଆମ ଓଡ଼ିଆ ଭାଷାର, ଓଡ଼ିଆ ଜାତିର, ଓଡ଼ିଆ ପୁଅର ବିଲୋପ ସାଧନ। ବିଦେଶୀର ଓଡ଼ିଆ ଭାଷା ବିରୋଧୀ ଚକ୍ରାନ୍ତକୁ ପଣ୍ଡ କରିବା ସକାଶେ ସେଦିନ ଆଗେଇ ଆସିଥିଲେ ଆମରି ଉତ୍କଳର ମହାମନୀଷୀଗଣ। ନିଜର କଳାକୁଶଳତା ବଳରେ ବିଦେଶୀର ଓଡ଼ିଆ ଭାଷା ବିରୋଧୀ ଅଭିଯାନକୁ ପଣ୍ଡ କରିଦେଇଥିଲେ।

ଏପରିକି ଆମ ଓଡ଼ିଶାର ସେତେବେଳର କେତେକ ନ୍ୟସ୍ତ ସ୍ୱାର୍ଥଗୋଷ୍ଠୀ ନେତୃବର୍ଗ ହୀନ ଚକ୍ରାନ୍ତ ଭିଆଇ ନିଜର ବ୍ୟକ୍ତିଗତ ସ୍ୱାର୍ଥ ସାଧନରେ ମସଗୁଲ୍ ହୋଇ ସେମାନଙ୍କ ସହିତ ହାତ ମିଳାଇବାକୁ ପଶ୍ଚାଦ୍‌ପଦ ହୋଇନଥିଲେ। ଏସବୁ ସତ୍ତ୍ୱେ ସବୁ ହୀନଚକ୍ରାନ୍ତକୁ ପଣ୍ଡ କରି, ତୀବ୍ର ସଂଗ୍ରାମକରି ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନମାନେ ୧୯୩୬ ମସିହା ଆଜିଭଳି ଏହି ଅପ୍ରେଲ ପହିଲା ଦିନ ଆମର ଉତ୍କଳ ବା ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରି ଗଢ଼ିତୋଳିବାର ଗୌରବ ଆଣି ଦେଇପାରିଥିଲେ। ଯାହା ଫଳରେ ପ୍ରତ୍ୟେକ ଓଡ଼ିଆବାସୀ ସ୍ୱତନ୍ତ୍ର ପ୍ରଦେଶ ଗଠନର ଗୌରବରେ ଆଜି ଗୌରବାନ୍ୱିତ।

ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କ ପ୍ରାଣମୂର୍ଚ୍ଛା ଉଦ୍ୟମ ଓ ବିପୁଳ ଚେଷ୍ଟା ଏଥିପାଇଁ ବିଶେଷ ଅବଦାନ ରଖେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଠିକ୍ ବର୍ଷକ ପରେ ଅର୍ଥାତ୍ ୧୯୩୭ ମସିହା ଅପ୍ରେଲ୍ ମାସ ୧ ତାରିଖରେ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସାର୍ ଜନ୍‌ହବାକ୍ ଅଷ୍ଟିନ୍ ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କୁ ନେତା ରୂପେ ନିର୍ବାଚିତ କରି ପ୍ରଥମ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ନିମନ୍ତ୍ରଣ କଲେ। ତେଣୁ ଗୋରାଚାନ୍ଦ ପଟ୍ଟନାୟକ ଓ ଲତିଫୁଲ ରହେମାନ୍‌ଙ୍କୁ ନେଇ ମନ୍ତ୍ରିମଣ୍ଡଳ ଗଠନ କରି ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ୧୯୩୭ ମସିହା ଅପ୍ରେଲ୍ ପହିଲାରୁ ଜୁଲାଇ ମାସ ୧୮ ତାରିଖ ପର୍ଯ୍ୟନ୍ତ ଓ ପରେ ୧୯୪୧ ମସିହା ନଭେମ୍ବର ୨୪ ତାରିଖଠାରୁ ୧୯୪୪ ମସିହା ଜୁନ୍ ୩୦ ତାରିଖ ପର୍ଯ୍ୟନ୍ତ ତୃତୀୟ ମନ୍ତ୍ରିମଣ୍ଡଳରେ ପୁନର୍ବାର ପ୍ରଧାନମନ୍ତ୍ରୀ ଭାବେ ଯୋଗଦେଇ ଦକ୍ଷତା ସହ ଓଡ଼ିଶା, ଓଡ଼ିଆ ଜାତି, ଭାଷା, ସାହିତ୍ୟ ଓ କୃଷିର ଉନ୍ନତି ପାଇଁ ନିଷ୍ଠାପର ଭାବରେ ବହୁ ଜନହିତକର କାର୍ଯ୍ୟ କରିଥିଲେ। ତାଙ୍କର ପ୍ରଧାନମନ୍ତ୍ରିତ୍ୱ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, କଟକ ମେଡ଼ିକାଲ୍ ସ୍କୁଲ୍‌କୁ ମେଡିକାଲ କଲେଜରେ ପରିଣତ, କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ଓ ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠାର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ ହୋଇଥିଲା। ତାଙ୍କର ନଶ୍ୱର ଦେହ ସର୍ବଗ୍ରାସୀ କାଳର କବଳିତ ହୋଇଯାଇଛି ସତ ମାତ୍ର ଦେଶ ମାତୃକା ପାଇଁ ତାଙ୍କର ଅବଦାନ ସବୁଦିନ ପାଇଁ ଆଧୁନିକ ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଜାଜ୍ୱଲ୍ୟମାନ ହୋଇ ରହିଥିବ। ନିଜର ଦୃଢ଼ ନିଷ୍ଠା ଓ ଅବିଶ୍ରାନ୍ତ ତ୍ୟାଗ ଦ୍ୱାରା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରି ଭାରତର ଅନ୍ୟାନ୍ୟ ଜାତିମାନଙ୍କ ମଧ୍ୟରେ ଓଡ଼ିଆମାନଙ୍କର ସେ ଯେଉଁ ମର୍ଯ୍ୟାଦା ଓ ଗୌରବ ରକ୍ଷା କରିଛନ୍ତି ତାଙ୍କୁ ଭୁଲି ଏ ଜାତି କେବେ କୃତଘ୍ନ ହୋଇପାରିବ ନାହିଁ।

ଆଜି ସମୟ ଆସିଛି, ଆମେ ପ୍ରତ୍ୟେକ ଓଡ଼ିଶାବାସୀ ଆଜିର ଏହି ପବିତ୍ର ଶୁଭ ଦିବସରେ ଆମର ସେହି ମହାମହିମ ଅଗ୍ରପୂଜ୍ୟ ମହାମନୀଷୀମାନଙ୍କ ଚରଣାରବିନ୍ଦରେ ଭକ୍ତିଅର୍ଘ୍ୟ ଅର୍ପଣ କରି ଆମ ଜାତିର, ଆମ ଭାଷାର ଉନ୍ନତିକଳ୍ପେ ଆଗୁସାର ହେବା। ପରିଶେଷରେ ଆମେ ଯେତେସବୁ ଉତ୍କଳବାସୀ, ଆମେ ଆମ ସ୍ୱାତନ୍ତ୍ର୍ୟତା, ସ୍ୱାଧୀନତାର ମଧୁ ଚାଖୁଛେ, ସେହି କୋଟିପ୍ରାଣ ଆଜି ଆମ ଉତ୍କଳ ଜନନୀର ପଦାରବିନ୍ଦରେ ନିଜକୁ ସମର୍ପଣ କରି କୋଟି କଣ୍ଠରେ ଗାଇଯିବା –

ଉତ୍କଳ ମାତାର ସନ୍ତାନ ଆମେ
ସର୍ବେ ଆମେରେ ଉତ୍କଳୀୟ
ବୀରଦର୍ପରେ ଆଗେଇ ଯିବାରେ
ଡରିବାନି ଯେତେ ଆସୁ ଭୟ।

ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ
ରଘୁନାଥ ସମବାୟ ମହାବିଦ୍ୟାଳୟ
ଓଡ଼ଗାଁ, ନୟାଗଡ଼

# ଉଚ୍ଚ କର ଆଗେ ନିଜ ମାତୃଭାଷା

ଡକ୍ଟର ସର୍ବେଶ୍ୱର ସେଣ

ଜାତି ସ୍ମର, ମାତୃଭାଷା ପ୍ରେମ–ପ୍ରୀତି–ଆର୍ଦ୍ର ଗଂଗାଧର ମେହେର । ମାତୃଭୂମି, ମାତୃଭାଷାର ଉନ୍ନତି କଳ୍ପେ ତାଙ୍କର ସାରା ଜୀବନ ଉତ୍ସର୍ଗୀକୃତ । ଗୋଟେ ଜାତିର ସାଂସ୍କୃତିକ ଟେକର ନମୁନା ତା'ର ଭାଷା, ତା'ର ମାନ, ମହତ, ଯଶ, କୀର୍ତ୍ତି, ଖ୍ୟାତି– ସବୁ ସେଇ ଭାଷାକୁ ନେଇ । ଏ କଥାକୁ ମର୍ମେ ମର୍ମେ ଅନୁଭବ କରିଥିଲେ ଗଂଗାଧର । ତାଙ୍କପରି ଆହୁରି କେତେକ ମଧ୍ୟ । କିନ୍ତୁ ପ୍ରାକ୍ ସ୍ୱାଧୀନତାକାଳୀନ ଓଡ଼ିଆ ଜାତି ପାଇଁ ଥିଲା ବହୁ ବିପତ୍ତି । ଇଂରାଜୀ ଭାଷା, ପାଶ୍ଚାତ୍ୟ ଚଳଣିରେ ମୋହ ଗ୍ରସ୍ତ, ଓଡ଼ିଆଏ ଦିଗହଜା ହେଲେ । ଅଣଦେଖା କଲେ ଆପଣା ଭାଷା ସାହିତ୍ୟକୁ, ଭୁଲିଲେ ମହାର୍ଘ୍ୟ ସଂସ୍କାର ସଂସ୍କୃତିକୁ, ଯାହା ମ୍ରିୟମାଣ କଲା ବହୁ ଜାତିପ୍ରେମୀ, ଭାଷାପ୍ରେମୀଙ୍କୁ । ବିଗିଡ଼ା ଜାତିକୁ ସଜାଡ଼ିବା ପାଇଁ ସାହତ୍ୟିକମାନେ ଅଣ୍ଟା ଭିଡ଼ିଲେ । ସାହିତ୍ୟର ବିଭିନ୍ନ ବିଭାଗରେ ଅନୁରଣିତ ହେଲା ଉଦ୍‌ବୋଧନର ଗୁରୁଗମ୍ଭୀର ସ୍ୱର । ତାହା ଜାତିକୁ ମତାଇଲା, ତତାଇଲା ଓ ଜାଗରିତ କଲା ଜାତି ଭାଷା ପ୍ରେମକୁ । ଜାତିର ଗତ ଗୌରବ, ହୃତ ଗୌରବ, ମୃତ ଗୌରବକୁ ପୁନଃ ଜୀବିତ କରିବାରେ ଜାତୀୟତାବାଦୀ ସାହିତ୍ୟର ଥିଲା ମୁଖ୍ୟ ଭୂମିକା । ଓଡ଼ିଶାର ଦୁର୍ଦ୍ଦିନରେ ଯେଉଁ କେତେଜଣ ବାଣୀସାଧକ ଜାତୀୟତାବାଦୀ ସାହିତ୍ୟ ସଂରଚନା କଲେ, ତନ୍ମଧ୍ୟରେ କବି ଗଂଗାଧର ମେହେର ଅନ୍ୟତମ । ଓଡ଼ିଆ ଜାତିର ଭାଷାକୈନ୍ଦ୍ରିକ ସଂକଟ ତାଙ୍କୁ ମ୍ରିୟମାଣ କଲା । ସେ ତଟସ୍ଥଭାବେ ଦେଖିଲେ ସାଂସ୍କୃତିକ ଅବକ୍ଷୟକୁ, ସ୍ୱତଃ ତାଙ୍କ ଲେଖନୀରୁ ଝରିଲା ଉଦ୍‌ବୋଧନୀ କବିତା(୧୯୧୮) । ଏଥିରେ ସେ ଶୁଣାଇଲେ ଉତ୍ସାହ ବାଣୀ, ଏ ଜାତିକୁ ଆଗୁଆ ସତର୍କ କଲେ । କବିତାଟିର ସାରମର୍ମ ଅତୀବ ହୃଦୟସ୍ପର୍ଶୀ । ତନ୍ମଧ୍ୟରୁ କେତୋଟି ପଂକ୍ତି ଏଠାରେ ଉଦ୍ଧାର କରାଗଲା– ଯା' ଭାଷା ଦୁର୍ବଳା କାହିଁ ତା'ର ସ୍ଥାନ ? / କାହିଁ ତା'ର ରାଜ ଦୁଆରେ ସମ୍ମାନ ? / ଉଚ୍ଚ ହେବା ପାଇଁ କର ଯେବେ ଆଶା / ଉଚ୍ଚ କର ଆଗେ ନିଜ ମାତୃଭାଷା । ଏଇ କବିତାଟି ସୃଷ୍ଟିକଲା ମାତୃଭାଷାର ମମତ୍ୱବୋଧ । ଉଜ୍ଜୀବିତ କଲା ଓଡ଼ିଆର ଅସ୍ମିତା ଟିକକ, ଉଦ୍ଦୀପିତ ହେଲା ଜନ–ଚେତନା । ସୃଷ୍ଟି ହେଲା ଅଭିନବ ଜନଜାଗରଣ ।

ଗଙ୍ଗାଧରଙ୍କ ଆର୍ଥିକ ସ୍ଥିତି ଖୁବ୍ ଦୁର୍ବଳ । ପାଠପଢ଼ା ପାଞ୍ଚ ଶ୍ରେଣୀରେ ଶେଷ । ସାର୍ଟିଫିକେଟରେ ସେ ସ୍ୱଳ୍ପବିଦ୍ କିନ୍ତୁ ବହୁ ଶାସ୍ତ୍ରାଧ୍ୟାୟୀ, ବିଜ୍ଞ, ପଣ୍ଡିତ । ପୁରାଣ, ଗୀତା, ଭାଗବତ, ସଂସ୍କୃତ ସାହିତ୍ୟ, ବେଦ ବେଦାନ୍ତରେ ତାଙ୍କର ଅଗାଧ ଜ୍ଞାନ । ସର୍ବୋପରି ସେଇ ପ୍ରଜ୍ଞାପୁରୁଷ, ଜଣେ ଶୁଦ୍ଧ ଓଡ଼ିଆ, ସଫଳ, ସାରସ୍ୱତ ସାଧକ । ତାଙ୍କ କାବ୍ୟ କବିତା ପ୍ରକୃତିର ଚାରୁ ଚିତ୍ରଶାଳା । ଲିଖନ ଶୈଳୀ ମଧ୍ୟ ସହଜ, ସରଳ, ସାବଲୀଳ ବହୁରସ ପ୍ରଦାୟୀ । ହୃଦୟସ୍ପର୍ଶୀ ବି । ପ୍ରାଚ୍ୟ ସଂସ୍କୃତିର ସଫଳ ରୂପାୟନ ଘଟିଛି ତାଙ୍କ କାବ୍ୟ କବିତାରେ । ପ୍ରଣୟବଲ୍ଲରୀ, ରସରତ୍ନାକରଠାରୁ ମହାକାବ୍ୟ ତପସ୍ୱିନୀ, ଅନନ୍ୟା କାବ୍ୟ କବିତା, ଗଦ୍ୟ ରଚନା– ଏଥିରେ ପରିଲକ୍ଷିତ ଚେତନାଶୀଳ, ସଂସ୍କୃତି ସମ୍ପନ୍ନ, ଜାତି ପ୍ରେମୀ, ରୁଚିସମ୍ପନ୍ନ ଗଂଗାଧରଙ୍କର ଶିଳ୍ପୀ ପ୍ରାଣୀର ନିଖୁଣ ନିଦର୍ଶନ । ଯଥାର୍ଥରେ ସେ ସ୍ୱଭାବ କବି, ରଙ୍ଗା–ଜୀବ– ଗଂଗାଧର ।

କବିଙ୍କ ଜନ୍ମ ଜାତି ଜୀବନର ଘଡିସନ୍ଧି ମୁହୂର୍ତ୍ତରେ । ଗୋଟେପଟେ ଫିରିଙ୍ଗି ଶାସନ ପିଷ୍ଟ ଜନଜୀବନ, ନ'ଅଙ୍କ ଦୁର୍ଭିକ୍ଷ

(୧୮୬୬) କରାଳ ଗ୍ରସ୍ତ ଓଡ଼ିଶା, ଆର୍ଥିକ ସ୍ଥିତି ଧ୍ୱସ୍ତବିଧ୍ୱସ୍ତ, ସେପଟେ ବେଡି ଉପରେ କୋରଡା। ଓଡ଼ିଆ ସ୍ୱାଭିମାନ ଉପରେ କୁଠାରାଘାତ। ଦୁର୍ଭିକ୍ଷ ପୀଡିତ ଓଡ଼ିଆଏ ଅଣ୍ଟା ସଳଖିବା ପୂର୍ବରୁ ଚାଲିଲା ଭାଷା ବିଲୋପ ଚକ୍ରାନ୍ତ। କେତେକ ନ୍ୟସ୍ତସ୍ୱାର୍ଥ ବିଜଡିତ ବଂଗାଳୀ ଓଡ଼ିଆକୁ ବଂଗଳାର ଉପଭାଷା କହିଲେ। ଏହାର ଅସ୍ତିତ୍ୱ ଲୋପ କରିବା ପାଇଁ ବ୍ରତୀ ହେଲେ। ସେମାନଙ୍କ ମଧ୍ୟରେ ଥିଲେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ତାଙ୍କ ସହ ଆଉ କେତେକ ବାଲେଶ୍ୱର ଜିଲ୍ଲାର ବଂଗାଳୀ ଜମିଦାର ମିଶିଲେ। ଲଢୁଆ ଓଡ଼ିଆ ପୁଅ ଆରମ୍ଭ କଲେ ଭାଷା ସୁରକ୍ଷା ସଂଗ୍ରାମ। ଆଗରେ ଫକୀରମୋହନ ସେନାପତି (ବେଟା ରିଂ ଲିଡର)। ରାଧାନାଥ ରାୟ, ମଧୁସୂଦନ ରାଓ ଅଙ୍ଗବଳ ଦେଲେ। କର୍ମବୀର ଗୌରୀଶଙ୍କର (ଉତ୍କଳ ଦୀପିକାର ସଂପାଦକ) ଙ୍କ ସହ ଆଉ କେତେଜଣ ଓଡ଼ିଆ ଭାଷାନୁରାଗୀ (ଓଡ଼ିଶାର ସ୍ଥାୟୀ ବଂଗବାସୀ) ଏହି ମହାସଂଗ୍ରାମକୁ ତେଜୋଦୀପ୍ତ କଲେ। ତାହା ହିଁ ଥିଲା ଭାଷାସୁରକ୍ଷା ଆନ୍ଦୋଳନର ସ୍ୱର୍ଣ୍ଣିମ ଇତିହାସ। ଓଡ଼ିଆ ଭାଷାସହ ଓତପ୍ରୋତ ଜଡିତ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ସପକ୍ଷ ଯୁକ୍ତି ଭାଷାତତ୍ତ୍ୱବିତ୍ ଜନ ବିମସ୍, ରେଭେନ୍‌ସା ସାହେବଙ୍କ ଅନୁକୂଳ ମନୋଭାବ ଶେଷରେ କମ୍ପାନୀ ଶାସକଙ୍କ ଓଡ଼ିଆ ଭାଷାକୁ ସରକାରୀ ସ୍ୱୀକୃତି ପ୍ରଦାନ ଭାଷାବିଲୋପ ଚକ୍ରାନ୍ତକୁ ପଣ୍ଡ କଲା। ତାହା ସ୍ୱତଃ ନିରବି ଗଲା (୧୮୭୦)।

ଠିକିଲେ ଶିଖନ୍ତି। ଏ କଥାଟି ଓଡ଼ିଆମାନଙ୍କ ପାଇଁ ଶତପ୍ରତିଶତ ସତ ହେଲାନି। ଏ ଜାତି ଠିକିଲା, ଶିଖିଲେ ଖୁବ୍ କମ୍ ପାଠୁଆ। ଗୋଟେ ମୁଷ୍ଟିମେୟ ଇଂରେଜ ପଢୁଆଙ୍କ ପାଇଁ ଭାଷା ସୁରକ୍ଷା ସଂଗ୍ରାମର କୌଣସି ଗୁରୁତ୍ୱ ନଥିଲା। ଏହା ପଶ୍ଚାତରେ ଥିଲା ଇଂରେଜଙ୍କ କୂଟନୀତିପୂର୍ଣ୍ଣ ଶିକ୍ଷା ଯୋଜନା। ସେମାନେ ଶିକ୍ଷାକୁ ନୈତିକ କର୍ତ୍ତବ୍ୟ ଭାବେ ଗ୍ରହଣ କଲେ (୧୮୧୩) ମାତ୍ର ଲର୍ଡ ମ୍ୟାକଲେଙ୍କର ଶିକ୍ଷାନୀତି ଥିଲା ଅତୀବ ଭୟଙ୍କର। ପରିଣାମରେ ଇଂରେଜ ସରକାର ଭାରତୀୟ ଜନତାଙ୍କ ମଧ୍ୟରେ ସୃଷ୍ଟି କଲେ ଗୋଟେ ବାବୁ ଗୋଷ୍ଠୀ। ଏମାନଙ୍କ ଦେହ ଜାତୀୟ ମାତ୍ର ମନ, ମତି, ଗତି, ନୀତିରେ ଇଂରେଜ। ସେମାନେ ଭାଷାର ଉନ୍ନତି କରିବାତ ଦୂରର କଥା, ଇଂରେଜ ଚେରକୁ ଦେଶରେ ମଜଭୁତ କରିବାରେ ଲାଗି ପଡିଲେ। ଇଂରାଜୀ ଶିକ୍ଷାକୁ ଚାକିରି ମାନଦଣ୍ଡ ଭାବେ ସ୍ୱୀକୃତି ଦେଲେ ଲର୍ଡ ହାର୍ଡିଞ୍ଜି (୧୮୪୪)। ଚାଲିଲା ପ୍ରତିଯୋଗିତା, ଇଂରାଜୀ ପଠନ ପାଇଁ ଆଗ୍ରହ ବଢ଼ିଲା, ଲକ୍ଷ୍ୟ ସରକାରୀ ଚାକିରି। ସ୍ଥିତି ଦିନକୁ ଦିନ ବିଗିଡ଼ିଲା। ଉତ୍କଳ ଭାଷା ବିଷୟକ ଉଲ୍ଲେଖ କରିବା ସେତେବେଳେ ସାହସ ନଥିଲା, ଓଡ଼ିଆମାନଙ୍କୁ ବଙ୍ଗାଳୀ ବାବୁମାନେ ତୁଚ୍ଛତାଚ୍ଛଲ୍ୟ କରୁଥିଲେ। ଏ କଥା ଫକୀରମୋହନଙ୍କୁ ଭାରି ବାଧୁଥିଲା ନିନ୍ଦାକାରୀଙ୍କ ପ୍ରତି ତାଙ୍କର ଭୀଷଣ କ୍ରୋଧ ଜାତ ହେଉଥିଲା। ପ୍ରକୃତରେ ମାତୃଭାଷାର ଉନ୍ନତି ନହେଲେ ଚିରକାଳ ଭିନ୍ନଦେଶୀୟ ଲୋକଙ୍କ ଅଜ୍ଞାତ ହୋଇ ରହିଥିବୁ ଏବଂ ଆମ୍ଭମାନଙ୍କ ଜାତୀୟ ଅବସ୍ଥା ମଧ୍ୟ ଉନ୍ନତି ଲାଭ କରିବା ସମ୍ଭାବନା ବିରଳ ହେବ। ଭାଷା ଉନ୍ନତି ଉପାୟ କ'ଣ? ବର୍ତ୍ତମାନ ଦିବାନିଶି ଭାବନା ଏବଂ ଏକମାତ୍ର ଲକ୍ଷ୍ୟ, ଯେକୌଣସି ପ୍ରକାର ହେଉ ମାତୃଭାଷାର ଉନ୍ନତି ସକାଶେ ପ୍ରାଣପାତ କରିବାକୁ ହେବ– ଏ କଥାଟି ଲେଖିଛନ୍ତି ଫକୀରମୋହନ ଆପଣାର ଆତ୍ମଲିପିରେ। ସେତେବେଳେ ଫକୀରମୋହନଙ୍କ ବୟସ ୧୯–୨୦ ମଧ୍ୟରେ। ସେ ଦିବାନିଶି ଚିନ୍ତାକଲେ, ମାତୃଭାଷାର ଉନ୍ନତି ଅବା ପ୍ରାଣପାତ। ଖାଲି ଚିନ୍ତାରେ କଥା ସରିଲାନି, ଏ ଦିଗରେ ଲାଗିପଡ଼ିଲେ, ଜନମତ ସୃଷ୍ଟି କଲେ। ପାଠ୍ୟପୁସ୍ତକ ଲେଖିଲେ, ଆଉ ସବୁ ସାହିତ୍ୟରଥୀଙ୍କ ସହାୟତା ଲୋଡ଼ିଲେ, ପ୍ରଥମ ଛାପାଖାନା ବି ବସାଇଲେ ବାଲେଶ୍ୱରରେ। ଆପଣା ଉଦ୍ୟମରେ ସଫଳ ହେଲେ। ଅତ୍ୟାନ୍ତିକ ଘୃଣାରେ ଅସହିଷ୍ଣୁ ବଙ୍ଗାଳୀଏ ତାଙ୍କ ନାଁ ଦେଲେ 'ବେଟା ରିଂ ଲିଡ଼ର'।

ସେସମୟରେ ଓଡ଼ିଆ ଭାଷାର ଦୟନୀୟ ସ୍ଥିତି। ଇଂରାଜୀ ପଢୁଆ ବାବୁ ଓଡ଼ିଆ ବହି ସ୍ପର୍ଶ କରୁନଥିଲେ। ବିଶୁଦ୍ଧ ଓଡ଼ିଆ କହିବା ତାଙ୍କ ପାଇଁ କାଠିକର ପାଠ। ଓଡ଼ିଆ କହିବା ଅପମାନ ବୋଲି ବିବେଚନା କରୁଥିଲେ। ଅମଲାମାନଙ୍କ କଥା ଅଧା ପାର୍ଶି ଅଧା ଓଡ଼ିଆ। ଲେଖା ମଧ୍ୟ ବିଚିତ୍ର କଥୋପକଥନ ତୁଲ୍ୟ, ଏପରିକି ଆପଣା ଆପଣା ଘରେ ହିସାବ ଲେଖା ସେଇ ପାର୍ଶି ଭାଷାରେ। ପିଲାଙ୍କୁ ଅଭିଭାବକମାନେ ହତୋତ୍ସାହିତ କଲେ, ଓଡ଼ିଆ ବହି ମାଗିଲେ କହନ୍ତି, ତୁ ତ ଅବଧାନ ପାଖରେ ଓଡ଼ିଆ ପଢ଼ି ସାରିଛୁ, ଆଉ ଓଡ଼ିଆ କ'ଣ, ଓଡ଼ିଆ ବହି କ'ଣ ହବରେ? ଯା' ଇଂରାଜୀ ପଢ଼ ଯା'। ପୂର୍ବେ ସଂସ୍କୃତ ପଢୁଆ ପଣ୍ଡିତମାନେ ଓଡ଼ିଆ ପଢ଼ିବା, ପଢ଼େଇବାକୁ ଉଚିତ୍ ମଣୁ

ନଥିଲେ। ଆଉ କେତେକ ବଙ୍ଗଳାରେ କଥାବାର୍ତ୍ତା ହେବାଟା ଗୌରବ ଜ୍ଞାନ କରୁଥିଲେ। ଇଂରାଜୀ ପଢୁଆ ସ୍କୁଲ, ସେଠି ପିଲେ ଇଂରାଜୀ ମିଶା ବଙ୍ଗଳା କଥା କହୁଥିଲେ, ଓଡ଼ିଆର ନାଁ ଗନ୍ଧ ନଥିଲା। ଓଡ଼ିଆ ଭାଷାଟା ଇଂରାଜୀ ସ୍କୁଲରେ ଏକ ପ୍ରକାର ବିତାଡ଼ିତ ହୋଇଯାଇଥିଲା – ଏ କଥାଟା ଲେଖିଛନ୍ତି ଭାଷାପ୍ରେମୀ ଫକୀର ମୋହନ ସେନାପତି। ଇଂରାଜୀ ପ୍ରେମ, ମାତୃଭାଷା ବିମୁଖ ମାନସିକତା– ଏ ଦୁଇଟି ପାଇଁ ଯେମିତି କ୍ଷେତ୍ର ପ୍ରସ୍ତୁତ ହୋଇଗଲା। ଓଡ଼ିଆ ବାବୁଙ୍କ ଇଂରାଜୀ ଛାଇ, ଛଟକ ଓ କଥା କଥାରେ ଇଂରାଜୀ, ସବୁ ବିଲାତି ବିଲାତି। ଏମାନେ ହିଁ ଆପଣାର ମାତୃଭାଷାକୁ ହେୟ ମଣିଲେ, ଫଳତଃ ଗୋଟେ ଐତିହ୍ୟସମ୍ପନ୍ନ ଜାତି ଠେଲି ହୋଇଗଲା ପୁନଃ ଏକ ସଂକଟ ଆଡେ। ଗଂଗାଧର ଏ ପ୍ରକାର ଅବକ୍ଷୟକୁ ନିରୀକ୍ଷଣ କରୁଥିଲେ ଅତି ନିକଟରୁ। ଏଣୁ ଲେଖିଥିଲେ ଉପଯୁକ୍ତ ଉଦ୍‌ବୋଧନ ଗୀତିକା।

୧୯୧୮ ମସିହା, ସେତେବେଳକୁ ରାଧାନାଥ ରାୟ ଓ ମଧୁସୂଦନ ରାଓ ଆରପାରିରେ, ଫକୀରମୋହନ ଆପଣା ବାଟ କାଟିଲେ, ଉତ୍କଳ ଜନନୀ ହରାଇଲା ତା'ର ସୁଯୋଗ୍ୟ ସନ୍ତାନଙ୍କୁ। ଗଂଗାଧର ହତବାକ୍ ହୋଇ ଲେଖିଲେ ଫକୀର ମୋହନଙ୍କ ମୃତ୍ୟୁ ଶଯ୍ୟା ନିକଟରେ ଉତ୍କଳମାତାର ରୋଦନ କବିତା (ଜୁଲାଇ ୧୯୧୮)। ସନ୍ତାନହରା ଉତ୍କଳ ଜନନୀଙ୍କ କରୁଣ ବିଳାପ ଏହି ଶୋକ ଗୀତକାର ଅନ୍ତଃସ୍ୱର। ତାହାହିଁ ଗଂଗାଧରଙ୍କ ଆତ୍ମାର ଗାଥା। ଅତି ବିକଳରେ ସେ ଗାଇଲେ– ମୋ ରାଧୁ ରାଧୁ ଗଲେ କେଉଁ ବିଦେଶ / ଦେଲେତ ନାହିଁ ଆଜି ଯାଏ ସନ୍ଦେଶ / ତୁହିକି ସେହି ଦେଶେ ଗଲୁରେ ଚାଲି / ପାରିଲି ନାହିଁ ତୋ'ର ପଥ ଓଗାଳିରେ / ତାଙ୍କ ବିରହେ ଦଗ୍ଧ ହେଲେ ମୋ ପ୍ରାଣ / କରୁ ଯେ ଶୋକହର ସଂଗୀତ ଗାନ / ତୋ ପୋଥି ଦେଇଗଲୁ କାହାର ହସ୍ତେ / କିଏ ଗାଇବ ତୁହି ଗାଉ ଯେମନ୍ତେରେ। ସେଇ ବରପୁତ୍ରମାନଙ୍କ ଅବର୍ତ୍ତମାନରେ ଯେଉଁ ଶୂନ୍ୟତା ସୃଷ୍ଟି ହେଲା, ତାହା ଅପୂରଣୀୟ ରହିଗଲା କାଳକାଳକୁ।

ଭାଷାକୁ ଭିତ୍ତିକରି ଓଡ଼ିଶା ହେଲା ସ୍ୱତନ୍ତ୍ର ପ୍ରଦେଶ (୧୯୩୬)। ଏହା ଭାରତ ଇତିହାସର ପ୍ରଥମ ଘଟଣା। ସଂପ୍ରତି ଓଡ଼ିଆ ଭାଷା ପାଇଲା ଶାସ୍ତ୍ରୀୟ ମାନ୍ୟତା। ପୂର୍ବ ଭାରତୀୟ ପ୍ରଥମ ଆଞ୍ଚଳିକ ଭାଷା ଓଡ଼ିଆ ହିଁ ଏ ଗୌରବର ଅଧିକାରୀ। ମହାନ ସ୍ରଷ୍ଟା ସାରଳା, ବଳରାମ, ଜଗନ୍ନାଥ, ଅଚ୍ୟୁତ, ଉପେନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ, କବି ସୂର୍ଯ୍ୟ, ରାଧା, ମଧୁ, ଫକୀରଙ୍କ ପରି ଆହୁରି ଅନେକ ବାଣୀସାଧକ, ସେମାନଙ୍କ ସାରସ୍ୱତ ସାଧନା ଲାଗି ଏହା ସମ୍ଭବ ହେଲା। ତାଙ୍କ ପରି ସମର୍ପିତ ଓଡ଼ିଆଟି ହେବା ପାଇଁ ଆମର ମାନସିକତା ରହିବା ଅନିବାର୍ଯ୍ୟ। ରସିକ ଗ୍ରାହକ, ପାଠକୀୟ ସହୃଦତା ସହ ପୁସ୍ତକ, ପତ୍ରପ୍ରତିକା କ୍ରୟ ମାନସିକତା ସମସ୍ତଙ୍କର ରହିବା ଏକାନ୍ତ ପ୍ରୟୋଜନ। ଆମେ ଇଂରାଜୀରେ ବାହାଘର, ବ୍ରତଘର ନିମନ୍ତ୍ରଣ ପତ୍ର ଲେଖୁଁ, ରେଳ କିମ୍ବା ବସ୍‌ରେ ଗଲେ ହାତରେ ଧରୁ ଇଂରାଜୀ କାଗଜ ବା ପତ୍ରିକାଟିଏ। ଓଡ଼ିଆର ଚିହ୍ନ ବର୍ଣ୍ଣ ନଥାଏ। ଏ ପ୍ରକାର ରୁଗ୍ଣ ଆଚରଣ ସର୍ବାଗ୍ରେ ପରିତ୍ୟଜ୍ୟ। ଓଡ଼ିଆକୁ ସରକାରୀ ଭାଷା କରାଯାଇଛି। ଏଣିକି ସବୁ କାମ ଚାଲିବ ଓଡ଼ିଆରେ। ସରକାରଙ୍କ ଏ ପଦକ୍ଷେପ ଅତୀବ ସ୍ୱାଗତଯୋଗ୍ୟ। ଏ ପରିପ୍ରେକ୍ଷୀରେ ଗଂଗାଧରଙ୍କ ଅମରବାଣୀ– ମାତୃଭୂମି ମାତୃ ଭାଷାରେ ମମତା/ ଯା ହୃଦେ ଜନମି ନାହିଁ / ତାଙ୍କୁ ଯେବେ ଜ୍ଞାନୀ ଗଣରେ ଗଣିବା/ ଅଜ୍ଞାନ ରହିବେ କାହିଁ ? ଏକଥାକୁ ଓଡ଼ିଆ ପୁଅ ହେଜୁ, ନିଜକୁ ଭିଜେଇ ଦଉ ମାତୃଭୂମି– ମାତୃଭାଷା– ପ୍ରୀତିରେ। ତାହା ହିଁ ହେବ ଓଡ଼ିଶା ଦିବସରେ ଓଡ଼ିଆ ମା'କୁ ଯଥୋଚିତ ସମ୍ମାନ। ଆସନ୍ତୁ, ସେଇ ମହାନ ସାଧକ ଗଙ୍ଗାଧରଙ୍କ ସହ କଣ୍ଠ ମିଳେଇ ଗାଇବା–

ମାତୃଭୂମି ମାତୃଭାଷାର ବଦନ,
ଦୀପ୍ତକର ଦେଇ ଧନ, ଧ୍ୟାନ ମନ।
ଶୁଭ ପଥେ ବିଭୁ କରିବେ ମଙ୍ଗଳ
ଶୁଭ କର୍ମେ ହେବ ଜୀବନ ସଫଳ।

ଏହା ହିଁ ହେଉ ଓଡ଼ିଶା ଦିବସର ଶ୍ରେଷ୍ଠ ଅନୁଚିନ୍ତନ।

ସା/ପୋ–ପୁରୁଷୋତ୍ତମପୁର
କେନ୍ଦ୍ରାପଡ଼ା

# ଓଡ଼ିଆ ସାହିତ୍ୟରେ ବିରଳ ସର୍ଜନା

ଅଭିରାମ ନାୟକ

ଅନୁଭବୀ ମଣିଷ ଯେକୌଣସି ବ୍ୟକ୍ତିଙ୍କ ମୁଖମଣ୍ଡଳକୁ ନିରୀକ୍ଷଣ କରି ବ୍ୟକ୍ତି ଜଣକ ସୁଖରେ, ଦୁଃଖରେ, ଚିନ୍ତାରେ ବା ଚାପରେ ଅଛନ୍ତି, ତାହା ସଠିକ୍ ନିରୂପଣ କରିପାରନ୍ତି । ତେଣୁ କୁହାଯାଏ 'Face is the index of mind' । ଦୈନନ୍ଦିନ ସାମାଜିକ ଘଟଣାବଳୀକୁ ଆଧାର କରି ସାହିତ୍ୟ ସୃଷ୍ଟି ହୋଇଥାଏ । ଅନେକ ସ୍ଥଳେ ସାହିତ୍ୟିକ ନିଜେ ତାଙ୍କର ସୃଷ୍ଟି ମଧ୍ୟକୁ ପଶି ଆସିଥାଆନ୍ତି । ତେଣୁ ସାହିତ୍ୟ ହେଉଛି ସମାଜର ଦର୍ପଣ । ଅତଏବ ଏକ ଜାତିର ସାହିତ୍ୟକୁ ଅନୁଧ୍ୟାନ କରାଯାଇ ସେ ଜାତିର ମାନଦଣ୍ଡ ମୂଲ୍ୟାୟନ କରାଯିବା ସଙ୍ଗେ ସଙ୍ଗେ ସାହିତ୍ୟ ସ୍ରଷ୍ଟାଙ୍କ ବୌଦ୍ଧିକତାରୁ ତତ୍କାଳୀନ ମାନବୀୟ ମୂଲ୍ୟବୋଧର ଆକଳନ କରାଯାଇପାରେ ।

ବିଳମ୍ବରେ ହେଲେ ମଧ୍ୟ ଭାରତ ସରକାର ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ପ୍ରଦାନ କରିଛନ୍ତି । ଭାରତୀୟ ସମ୍ବିଧାନ ଦ୍ୱାରା ଜାତୀୟ ଭାଷାର ମାନ୍ୟତା ପାଇଥିବା ମୋଟ୍ ୨୨ ଗୋଟି ଭାଷା ମଧ୍ୟରୁ ସଂସ୍କୃତକୁ ବାଦ୍ ଦେଲେ ଓଡ଼ିଆ ହେଉଛି ପ୍ରଥମ ଓ ଏଯାବତ୍ ଏକମାତ୍ର ଆର୍ଯ୍ୟ ଭାଷା, ଯାହା ଶାସ୍ତ୍ରୀୟ ମାନ୍ୟତା ଲାଭକରିଛି । ଏଥିନିମିତ୍ତ ଓଡ଼ିଶାବାସୀ ଯେ ଗର୍ବିତ, ଏହା ନିଃସନ୍ଦେହ ମାତ୍ର ସମ୍ବେଦନଶୀଳ ଓଡ଼ିଆ ଭାଷାପ୍ରେମୀଙ୍କର ଏହା ଅନ୍ତିମ ଲକ୍ଷ୍ୟ ହୋଇନପାରେ । ବିଧିବଦ୍ଧ ପ୍ରକାଶକରଣ (Exposure) ଦ୍ୱାରା ଓଡ଼ିଆ ସାହିତ୍ୟ ଯେ ବିଶ୍ୱସ୍ତରୀୟ ସ୍ୱୀକୃତି ଲାଭ କରିପାରିବ ଏହା ଧ୍ରୁବ ସତ୍ୟ ।

୧୯୧୩ ମସିହାରେ 'ଗୀତାଞ୍ଜଳି' ପୁସ୍ତକ ପାଇଁ ରବୀନ୍ଦ୍ର ନାଥ ଠାକୁରଙ୍କୁ ନୋବେଲ ପୁରସ୍କାର ମିଳିବା ପରେ ଅଦ୍ୟାବଧି (୨୦୧୬ ମସିହା ଯାଏଁ) ଅନ୍ୟ କୌଣସି ଭାରତୀୟଙ୍କୁ ସାହିତ୍ୟରେ ନୋବେଲ ପୁରସ୍କାର ମିଳିପାରି ନାହିଁ । ଗୀତାଞ୍ଜଳିକୁ ନୋବେଲ ପୁରସ୍କାର ମିଳିବାର ନେପଥ୍ୟ ନାୟକ ଥିଲେ ଅବନୀନ୍ଦ୍ର ଠାକୁର, ଯେ କି ସେତେବେଳେ ଲଣ୍ଡନରେ ରହୁଥିଲେ । ସେ ରବୀନ୍ଦ୍ର ନାଥଙ୍କୁ ବ୍ରିଟେନ୍‌ର ତତ୍କାଳୀନ ପ୍ରଖ୍ୟାତ କଳାକାର ରେଥେଙ୍ଗ୍ ଷ୍ଟାର୍‌ଙ୍କ ସହ ପରିଚିତ କରାଇଥିଲେ । ପରେ ତାଙ୍କ ମାଧ୍ୟମରେ ରବୀନ୍ଦ୍ର ନାଥ ଆମେରିକୀୟ କବି ଏଜ୍‌ରା ପାଉଣ୍ଡ, ବ୍ରିଟିଶ୍ କବି ୱିଲିୟମ୍ ବଲ୍‌ଟର୍‌ୟିଟ୍‌ସଙ୍କ ସହ ପରିଚିତ ହୋଇ ନିଜ କବିତାର ଇଂରାଜୀ ଅନୁବାଦ କରି ସେମାନଙ୍କୁ ଅବଗତ କରାଇଲେ । ଅନୁଦିତ କବିତାଗୁଡ଼ିକୁ ଏକାଠି କରି ଯେଉଁ ପୁସ୍ତକ ପ୍ରକାଶିତ ହୋଇଥିଲା, ତାହାର ନାମ 'ଗୀତାଞ୍ଜଳି' (Song of Rings) ଓ ତାହା ନୋବେଲ ପୁରସ୍କାର ଲାଭ କଲା । ଏଠାରେ ସୂଚାଇ ଦିଆଯାଇପାରେ ଯେ ୧୯୧୩ ମସିହା ପୂର୍ବରୁ ଓ ପରେ ଅନେକ ଲବ୍‌ଧପ୍ରତିଷ୍ଠ ଓଡ଼ିଆ ସାହିତ୍ୟିକ ଜନ୍ମଲାଭ କରିଥିଲେ ହେଁ ଉପଯୁକ୍ତ ଉପସ୍ଥାପନ ଅଭାବରୁ ସେମାନଙ୍କୁ ଯଥାର୍ଥ ବିଶ୍ୱସ୍ତରୀୟ ମାନ୍ୟତା ମିଳିପାରିନାହିଁ । ପୁରସ୍କାର ହୁଏତ ସାହିତ୍ୟ ବା ସାହିତ୍ୟିକର ମୂଲ୍ୟାୟନ ପାଇଁ ଏକମାତ୍ର ମାନଦଣ୍ଡ ହୋଇ ନ ପାରେ ମାତ୍ର ପରିପ୍ରଚାର ଅଭାବରୁ ସମୃଦ୍ଧ ଓଡ଼ିଆ ସାହିତ୍ୟର ଅପହଞ୍ଚ ଇଲାକାରେ ରହୁଥିବା ସୁଧୀ ସାହିତ୍ୟପ୍ରେମୀମାନେ ଯେ ଅନେକ ଅତୁଳନୀୟ ଉନ୍ନତ ମାନସିକ ଆହାରରୁ ବଞ୍ଚିତ ହେଉଛନ୍ତି, ଏହା ବିଡ଼ମ୍ବନାର ବିଷୟ ନିଶ୍ଚୟ ।

ଓଡ଼ିଆ ସାହିତ୍ୟ ମଧ୍ୟସ୍ଥ ଅଦ୍ୱିତୀୟ ବିଶ୍ୱ ବିରଳ କୃତିର କିୟଦଂଶ ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

୧) ପୃଥିବୀରେ ଅନେକ ଦେଶରେ ବର୍ଣ୍ଣବୈଷମ୍ୟବାଦ ଅଳ୍ପ ବହୁତେ ଏବେ ବି ତିଷ୍ଠି ରହିଛି । ଅତୀତରେ ଏହା ଅତି ଉତ୍କଟ ଥିଲା । ମଣିଷ ମଣିଷ ମଧ୍ୟରେ ଜାତିପ୍ରଥାକୁ ନେଇ ଥିବା ଭେଦଭାବକୁ ଦୂର କରିବା ପାଇଁ ସାହିତ୍ୟ ମାଧ୍ୟମରେ ପ୍ରୟାସ କରି ସଫଳ ହୋଇଥିଲେ ଓଡ଼ିଆ କବି ବଳରାମ ଦାସ (୧୬୦୦ ରୁ ୧୬୫୦ ଖ୍ରୀଷ୍ଟାବ୍ଦ) । ତାଙ୍କ ପରିକଳ୍ପିତ 'ମହାଲକ୍ଷ୍ମୀ ପୁରାଣ' ମଧ୍ୟସ୍ଥ ଶ୍ରୀୟା ଚଣ୍ଡାଳୁଣୀ ଚରିତ୍ର ମାଧ୍ୟମରେ ସେ ଜାତିପ୍ରଥାକୁ ସବୁଦିନ ପାଇଁ ସମାଜରୁ ଉତ୍ପାଟନ କରିଦେଇଛନ୍ତି । ଶ୍ରୀମନ୍ଦିର ଫେରିବା ପାଇଁ ମା' ମହାଲକ୍ଷ୍ମୀ ରଖିଥିବା ସର୍ତ୍ତ ମାନବ ସମାଜ ପାଇଁ ଏକ ଯୁଗାନ୍ତକାରୀ ସନ୍ଦେଶ ପାଲଟିଯାଇଛି । ସର୍ତ୍ତ ଅନୁଯାୟୀ ଶ୍ରୀମନ୍ଦିର ବେଢ଼ାରେ –

'ହାଡ଼ିର ହାତୁ ବ୍ରାହ୍ମଣ ଛଡ଼ାଇ ଖାଇବେ
ବ୍ରାହ୍ମଣ ଖାଇଣ ହସ୍ତ ମୁଣ୍ଡରେ ପୋଛିବେ
ଚଣ୍ଡାଳୁ ବ୍ରାହ୍ମଣ ଯାଏଁ ଖୁଆଖୁଇ ହେବେ
ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ
ଅନ୍ନ ଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ
ତେବେ ବଡ଼ ଦେଉଳକୁ ଯିବି ଜଗନ୍ନାଥ ।'

(ମହାଲକ୍ଷ୍ମୀ ପୁରାଣ – ବଳରାମ ଦାସ)

ଆଜି ବି ପୃଥିବୀରେ ବିଭିନ୍ନ ସ୍ଥାନରେ ବସବାସ କରୁଥିବା ଓଡ଼ିଆମାନେ ପ୍ରତି ମାର୍ଗଶିର ମାସ ଗୁରୁବାର ଦିନ ମାଣବସା ପୂଜା ପାଳନ କରି ଏହି ପୁରାଣ ପାଠ ପୂର୍ବକ ନିଜକୁ କୃତକୃତ୍ୟ ମନେକରନ୍ତି ।

ଲୋକପ୍ରିୟ ସାହିତ୍ୟ ମାଧ୍ୟମରେ ଏପରି ସାମାଜିକ ପରିବର୍ତ୍ତନର ସଫଳ ପ୍ରଚେଷ୍ଟା ବିଶ୍ୱରେ ଅଦ୍ୱିତୀୟ ।

୨) ମାନବବାଦୀ ଭାବପ୍ରବଣତା ଓ ଆତ୍ମୋତ୍ସର୍ଗର ଉଦ୍ଦାମତା ଓଡ଼ିଆ କବିଙ୍କର ଅନ୍ୟ ଏକ ବୈଶିଷ୍ଟ୍ୟ । ନିଜେ ଦାରିଦ୍ର୍ୟର ତୀବ୍ର କଷାଘାତ ମଧ୍ୟରେ ଥାଇ ଜଗତ କଲ୍ୟାଣ ପାଇଁ ଇଷ୍ଟଦେବଙ୍କ ଉଦ୍ଦେଶ୍ୟରେ କବି ପ୍ରାର୍ଥନା କରିଛନ୍ତି –

'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ,
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।'

(ସନ୍ଥକବି ଭୀମ ଭୋଇଙ୍କ 'ସ୍ତୁତି ଚିନ୍ତାମଣି', ସପ୍ତବିଂଶ ବୋଲି)

ଅନୁରୂପ ଭାବେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ କଣ୍ଠରୁ ନିଃସୃତ ହୋଇଛି –

'ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୁରୁ ତହିଁ ପଡ଼ି ମୋର ମାଂସ ହାଡ଼

x x x

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।'

(ବନ୍ଦୀର ଆତ୍ମକଥା)

୩) କୁରୁକ୍ଷେତ୍ର ଯୁଦ୍ଧର ଅବ୍ୟବହିତ ପୂର୍ବରୁ ମାନଗୋବିନ୍ଦ ଦୁର୍ଯ୍ୟୋଧନ ମାତା ଗାନ୍ଧାରୀଙ୍କ ପାଖକୁ ବିଜୟ ଆଶୀର୍ବାଦ ପ୍ରାପ୍ତହେବା ପାଇଁ ଧାଇଁ ଯାଇଥିଲେ । ପାତିବ୍ରତ୍ୟ ଧର୍ମ ସାଧନରତା, ବାକ୍‌ସିଦ୍ଧା ଗାନ୍ଧାରୀଙ୍କଠାରୁ ବିଜୟୀ ହେବାର ଆଶୀର୍ବାଦ ମିଳିଥିଲେ ସାରା ବିଶ୍ୱରେ କୌଣସି ବି ଶକ୍ତି ଦୁର୍ଯ୍ୟୋଧନଙ୍କୁ ପରାସ୍ତ କରିପାରି ନଥାନ୍ତା । ମାତ୍ର ଶତପୁତ୍ର ଜନନୀ ମାତା ଗାନ୍ଧାରୀଙ୍କର ଆଶୀର୍ବାଦ ଥିଲା ମାନବ ଜାତି ପାଇଁ ଅମୂଲ୍ୟ ସନ୍ଦେଶ । –

'କୁରୁମଣି ! ଘେନ ଆଶିଷ ତୋହର ଜନନୀର ବରାଭୟ
ଅକ୍ଷର ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ ।'

x x x

'ଯାଅ ବୀର ରଣେ, ଧରଣୀ ବକ୍ଷୁ ପାପରାଶି ହେଉ କ୍ଷୟ
ଅକ୍ଷର ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ ।'

ସବୁଜ ଯୁଗର କବି କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ଏ ଅପୂର୍ବ ପରିକଳ୍ପନା ମୂଳ ସଂସ୍କୃତ ମହାଭାରତ ବା ଅନ୍ୟ କୌଣସି ମହାଭାରତରେ ନାହିଁ । କବି ଉପସଂହାରରେ କହିଛନ୍ତି –

'ଗାନ୍ଧାରୀ ଦେଲା ଜନନୀ ପ୍ରାଣର ସୁମହତ ପରିଚୟ
ଅକ୍ଷର ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ ।'

୪) ଜୀବନ ଦର୍ଶନ ଆଧାରିତ 'ଚଉତିଶା' ଓଡ଼ିଆ ସାହିତ୍ୟରେ ଏକ ପ୍ରମୁଖ ଅଂଶ। ଓଡ଼ିଆ ବର୍ଣ୍ଣମାଳାର ୩୬ ଗୋଟି ବ୍ୟଞ୍ଜନ ବର୍ଣ୍ଣ ମଧ୍ୟରୁ ୩୪ ଗୋଟି ଅକ୍ଷରକୁ କ୍ରମିକ ଭାବେ ପଦର ଆରମ୍ଭରେ ବ୍ୟବହାର କରି ଗଠିତ ହୋଇଥିବା ପଦାବଳୀକୁ ଚଉତିଶା କୁହାଯାଏ। ଅର୍ଥାତ୍ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଆଦ୍ୟକ୍ରମରେ ସଜ୍ଜିତ ୩୪ ପଦ ବିଶିଷ୍ଟ ପଦ୍ୟ ହେଉଛି ଚଉତିଶା। ଅସମିୟା, ବଙ୍ଗଳା ଓ ହିନ୍ଦୀ ଭାଷାରେ ଚଉତିଶା ଉପଲବ୍ଧ ଥିଲେ ମଧ୍ୟ ଓଡ଼ିଆ ଭାଷାରେ ରଚିତ ଚଉତିଶା ଶବ୍ଦ ଓ ଭାବ ଦୃଷ୍ଟେ ସ୍ୱତନ୍ତ୍ର। କେତେକ ଉଚ୍ଚକୋଟୀର ଚଉତିଶା ହେଲା–

କଳସା ଚଉତିଶା – ବତ୍ସା ଦାସ
ଆର୍ତ୍ତତ୍ରାଣ ଚଉତିଶା – ଦୀନକୃଷ୍ଣ ଦାସ
ରସକୂଲ୍ୟା ଚଉତିଶା – ଦାମୋଦର ଦାସ
କମଳ ଲୋଚନ ଚଉତିଶା – ବଳରାମ ଦାସ
କଳାକଳେବର ଚଉତିଶା, ମନବୋଧ ଚଉତିଶା –ଭକ୍ତ ଚରଣ ଦାସ
ଯମକରାଜ ଚଉତିଶା, ଚିଟାଉ ଚଉତିଶା, ନିଳାଦ୍ରୀଶ ଚଉତିଶା – ଉପେନ୍ଦ୍ର ଭଞ୍ଜ
ସୁମୁଖୀ ଚଉତିଶା, ବର୍ଷା ଭାବନା ଚଉତିଶା, ମନ୍ଦାକିନୀ ଚଉତିଶା – ବିଷ୍ଣୁ ଦାସ (୧୫୮୦ ରୁ ୧୬୧୦ ମଧ୍ୟରେ ବାଣପୁର ରାଜା ରଘୁନାଥ ହରିଚନ୍ଦନଙ୍କ ରାଜକବି)
ଉଦ୍ଧବ ଚଉତିଶା, ଭୂପତି ଚଉତିଶା – ଭୂପତି ପଣ୍ଡିତ

('କ୍ଷ'ଠାରୁ 'କ' କ୍ରମରେ ରଚିତ 'ଓଲଟ ଚଉତିଶା' ମଧ୍ୟ ଓଡ଼ିଆ ସାହିତ୍ୟରେ ଉପଲବ୍ଧ)।

ଚଉତିଶା ଭଳି 'କୋଇଲି' ସଂଗୀତ (କୋଇଲିକୁ ସମ୍ବୋଧନ କରାଯାଇ ରଚିତ ଚଉତିଶା)ର ସ୍ଥାନ ମଧ୍ୟ ସ୍ୱତନ୍ତ୍ର। କୋଇଲି କବିତାର ପ୍ରଥମ ରଚୟିତା ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି', ବଳରାମ ଦାସଙ୍କ 'କାନ୍ତ କୋଇଲି', ଶଙ୍କର ଦାସଙ୍କ 'ବାରମାସୀ କୋଇଲି', ଜଗନ୍ନାଥ ଦାସଙ୍କ 'ଅର୍ଥ କୋଇଲି', ଅଚ୍ୟୁତାନନ୍ଦ ଦାସଙ୍କ 'ଜ୍ଞାନୋଦୟ କୋଇଲି' ଭଳି ଅନେକ କୋଇଲି ସଂଗୀତ ମଧ୍ୟ ଓଡ଼ିଆ ସାହିତ୍ୟରେ ଭରି ରହିଛି।

ଧାର୍ମିକ ମୂଲ୍ୟବୋଧ, ଚାରିତ୍ରିକ ଶିକ୍ଷା ଓ ଜୀବନୋପଯୋଗୀ ସୂକ୍ତିରେ ଭରପୂର 'ଚଉତିଶା' ଓ 'କୋଇଲି' ମାନବ ଜୀବନରେ ଭାବାନ୍ତର ସୃଷ୍ଟି କରେ। ମନବୋଧ ଚଉତିଶାର ନିମ୍ନ ପଦ କେତୋଟିକୁ ଏଥିନିମିତ୍ତ ଉଦାହରଣ ଭାବେ ନିଆଯାଇପାରେ।

'ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ।'
X X X
'ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା
ଛ'ଖଣ୍ଡି କାଠ ହେବ ତୋ ପାଇଁ ଲୋଡ଼ା।'

୫) ପ୍ରତି ବ୍ୟଞ୍ଜନ ବର୍ଣ୍ଣ ପାଇଁ ଗୋଟିଏ ଗୋଟିଏ ଛନ୍ଦାୟିତ ଗାନଯୋଗ୍ୟ ସଙ୍ଗୀତକୁ ଚମ୍ପୂ କୁହାଯାଏ। ଭାବ ଓ ସାଙ୍ଗିତିକତା ଦୃଷ୍ଟେ ଓଡ଼ିଆ ଚମ୍ପୂର ସ୍ଥାନ ସ୍ୱତନ୍ତ୍ର। ପ୍ରମୁଖ ଓଡ଼ିଆ ଚମ୍ପୂ ମଧ୍ୟରେ କବିସୂର୍ଯ୍ୟ ବଳଦେବ ରଥଙ୍କ ପିତା 'ଉଜ୍ଜ୍ୱଳ ରଥ'ଙ୍କ ରଚିତ 'ସଜ୍ଜନାନନ୍ଦ ଚମ୍ପୂ', 'ରାମଚନ୍ଦ୍ର ଚମ୍ପୂ', କବିସୂର୍ଯ୍ୟ ବଳଦେବ ରଥଙ୍କ ରଚିତ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' (କିଶୋର ଚନ୍ଦ୍ର ଆନନ୍ଦ ଯହିଁରେ), 'ରତ୍ନାକର ଚମ୍ପୂ' ବା 'ଦ୍ରୌପଦୀ ରତ୍ନାକର', 'ପ୍ରେମୋଦୟ ଚମ୍ପୂ' ବା 'ଦ୍ରୌପଦୀ ଚନ୍ଦ୍ରୋଦୟ', କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ହାସ୍ୟରସାତ୍ମକ 'ଚହଟ ଚନ୍ଦ୍ରହାସ ଚମ୍ପୂ' ଅନ୍ୟତମ। ଏତତ୍‌ବ୍ୟତୀତ ମାହାରୀ ନୃତ୍ୟ, ଗୋଟିପୁଅ ନୃତ୍ୟ, ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଂଗୀତ ସହ ଜଡ଼ିତ ସାହିତ୍ୟ ଓଡ଼ିଶାର ମୌଳିକ ସୃଷ୍ଟି। ଓଡ଼ିଶୀ ସଂଗୀତରେ ବ୍ୟବହୃତ ରାଗ 'ମଙ୍ଗଳ କାମୋଦୀ' ପରି କେତେକ ରାଗ ପୃଥିବୀରେ ଅନ୍ୟ କୌଣସିଠାରେ ନାହିଁ। ସେହିପରି ତାଳ 'ଆଠତାଳି' ଓଡ଼ିଶାରେ ହିଁ ସୃଷ୍ଟି ଓ ବ୍ୟବହୃତ। କବି ଜୟଦେବଙ୍କ ଗୀତଗୋବିନ୍ଦରେ ଅନେକ ପଦ୍ୟ ଆଠତାଳି (ଅଷ୍ଟତାଳ)ରେ ନିବଦ୍ଧ ଥିବା ହେତୁ ଜୟଦେବ ଓଡ଼ିଶାର ବୋଲି କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ତାଙ୍କ ଗବେଷଣାତ୍ମକ ପ୍ରବନ୍ଧରେ ଦର୍ଶାଇଛନ୍ତି।

୬) ଠାରଧର୍ମୀ ମନଶିକ୍ଷାତ୍ମକ ଗ୍ରନ୍ଥ ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ସଙ୍ଗୀତ ଓଡ଼ିଆ ସାହିତ୍ୟର ଏକ ଭିନ୍ନ ଦିଗନ୍ତ। ଏହିସବୁ ରଚନାର ଅନ୍ତଃସ୍ୱର ପତନୋନ୍ମୁଖୀ ସମାଜକୁ ଦିଗ୍‌ଦର୍ଶନ ଓ ମାନବିକତାର ବିକାଶ ପାଇଁ ଉଦ୍ଦିଷ୍ଟ। ଏହି ରଚନାଗୁଡ଼ିକରେ ଇଙ୍ଗିତ ଦିଆଯାଇଥିବା ରହସ୍ୟର ଉନ୍ମୋଚନ ଗବେଷଣା ସାପେକ୍ଷ ଓ ବୁଦ୍ଧିଜୀବୀମାନଙ୍କ ପାଇଁ ଏକ ବିରାଟ ଆହ୍ୱାନ ମଧ୍ୟ। ଅଚ୍ୟୁତାନନ୍ଦ

ଦାସଙ୍କ 'ଶୂନ୍ୟ ସଂହିତା', 'ମାଳିକା' ଜଗନ୍ନାଥ ଦାସଙ୍କ 'ଗୁପ୍ତ ଭାଗବତ' ବଳରାମ ଦାସଙ୍କ 'ବେଦାନ୍ତ ସାର ଗୁପ୍ତ ଗୀତା' ଆଦି ଗ୍ରନ୍ଥ ଏହାର କେତେକ ଉଦାହରଣ ମାତ୍ର। ନିଗୂଢ଼ ତତ୍ତ୍ୱ ଭିତ୍ତିକ କେତେକ ଓଡ଼ିଆ ସଂଗୀତକୁ ମଧ୍ୟ ଏଠାରେ ଉଦାହରଣ ଭାବେ ନିଆଯାଇପାରେ ।

(କ) ବାଇ ମନ ହୋ ବସି ଅବନା ବନ ଅବନା ବନିଲେ
ଅମିଶା ମିଶିବ ଅମାପରେ ମାପ ହେବ ତୋ ଧନ
ଅମାସ୍ୟା ନିଶିରେ ଷୋଳକଳା ଚନ୍ଦ୍ର
ସର୍ବଦା ନିଶିରେ ରବି ଦର୍ଶନ

ଅହର୍ନିଶ ଯହିଁ ପ୍ରଦୀପ ଜଳୁଛି ଦୀପତେଜେ
ଅଣଚାଶ ପବନ। (ବାହୁଡ଼ା ଦାସ)

(ଖ) ଆରେ ବାଇବର, ବାଟ ବସା ଘର ଖଣ୍ଡି ଦମ୍ଭକର।
(ଆର୍ତ୍ତ ଦାସ)

(ଗ) ମନ ମତ୍ତ ଦୁହାଁଳ ଗାଇ,
ଗାଇ ପଳାଇଲା ପଘା ଛିଡ଼ାଇ। (ଯଶୋବନ୍ତ ଦାସ)

(ଘ) ବଡ଼ ମାୟାବୀ ଜୀବ ନୋହେ କାହାରି।
(ଯଶୋବନ୍ତ ଦାସ)

(ଙ) ଅବନା ଅକ୍ଷର ଜପ ଯିବ କୋଟି ଜନ୍ମ ପାପ
ଅସାଧନା ମାର୍ଗେ ରହି ଅମାପକୁ ଦୃଢ଼େ ମାପ।
(ଶିଶୁ ଅନନ୍ତ)

(ଚ) ବୋହୂ ଚାଲି ନଜାଣଇ ଲୋ ପାଦ ପଡୁଥାଇ ବଙ୍କା
ବୋହୂ ଯେଉଁଦିନ ସଳଖେ ଚାଲିବ ଘରେ ପଡ଼ିଯିବ ଡକା।

(ଛ) 'ଥକାମନ ଚାଲଯିବା ଚକାନୟନ ଦେଖିବା
ଶଙ୍ଖନାଭି ମଣ୍ଡଳରେ ବେନି ନେତ୍ର ପଖାଳିବା।'

ଓଡ଼ିଆ ସାହିତ୍ୟରେ ଉପଲବ୍ଧ 'ସାରିଆ ଭିକ'ଙ୍କର ଏହା ଏକମାତ୍ର ସଂଗୀତ। 'ଖମାନ' ରାଗରେ ରଚିତ ଓ ଗଭୀର ତତ୍ତ୍ୱପୂର୍ଣ୍ଣ ଏହି ଅଦ୍ୱିତୀୟ ସଂଗୀତ ସୂର୍ଯ୍ୟ ଚନ୍ଦ୍ର ଥିବା ଯାଏଁ ଅମର ହୋଇ ରହିବ।

୭) ୧୯୧୯ରୁ ୧୯୪୦ ମସିହା ଯାଏଁ ଦୀର୍ଘ ୨୧ ବର୍ଷର ଅକ୍ଳାନ୍ତ ପରିଶ୍ରମ କରି ଗୋପାଳ ଚନ୍ଦ୍ର ପ୍ରହରାଜ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ସଂକଳିତ କରିଛନ୍ତି, ଯାହା ମୋଟ୍ ୭ଟି ଭାଗରେ ବିଭକ୍ତ। ସେହିପରି ୧୯୬୦ ମସିହାରେ ବିନୋଦ କାନୁନ୍‌ଗୋଙ୍କ ଦ୍ୱାରା ପ୍ରକାଶ ପାଇଛି 'ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ' (ବିଶ୍ୱକୋଷ 'ଜ୍ଞାନମଣ୍ଡଳ')। ଏତତ୍‌ବ୍ୟତୀତ ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟ 'ଗୀତାଭିଧାନ' ଆଦି ଗ୍ରନ୍ଥଗୁଡ଼ିକ ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ଅମୂଲ୍ୟମଣି। ପୃଥିବୀରେ କ୍ୱଚିତ ଏ ପ୍ରକାର ଗ୍ରନ୍ଥ ସୃଷ୍ଟି ହୋଇଛି। 'ଗୀତାଭିଧାନ' 'କ–ଅନ୍ତ', 'ଖ–ଅନ୍ତ' ଓ 'ଗ–ଅନ୍ତ' କ୍ରମରେ ଶବ୍ଦ ଥିବା ଏକ ଭିନ୍ନ ଶୈଳୀର ଅସାମାନ୍ୟ ଅଭିଧାନ।

୮) ଓଡ଼ିଶାର ବରେଣ୍ୟ ବରପୁତ୍ର ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ସାମନ୍ତ ଓରଫ ସାମନ୍ତ ଚନ୍ଦ୍ରଶେଖର ଓରଫ ପଠାଣି ସାମନ୍ତଙ୍କ ଜ୍ୟୋତିଷଶାସ୍ତ୍ର 'ସିଦ୍ଧାନ୍ତ ଦର୍ପଣ' ସାରା ବିଶ୍ୱରେ ଆଦୃତ। ୧୮୪୯ ମସିହାରେ ତାଳପତ୍ର ପୋଥିରେ ସିଦ୍ଧାନ୍ତ ଦର୍ପଣ ଲେଖା ଆରମ୍ଭ ହୋଇ ୧୮୬୯ ମସିହାରେ ଶେଷ ହୋଇଥିଲା। ଏହି ପୁସ୍ତକରେ ୧୦ (ଦଶ) କୋଟି ଦିନ ପାଇଁ ଗ୍ରହମାନଙ୍କର ଖଣ୍ଡଫଳ ଠିକ୍ ଭାବେ ଲେଖି ଦିଆଯାଇଛି। ପ୍ରତ୍ୟେକ ବର୍ଷର ନୂତନ ପଞ୍ଜିକା ସିଦ୍ଧାନ୍ତ ଦର୍ପଣ ସହ ତୁଳନା କରାଯାଇ ଏହାର ଶୁଦ୍ଧତା ନିରୂପଣ କରାଯାଏ।

ଦୁଇ ଖଣ୍ଡ ନଳ/କାଠି ସାହାଯ୍ୟରେ ପଠାଣି ସାମନ୍ତ ଗ୍ରହ ନକ୍ଷତ୍ରମାନଙ୍କ ଦୂରତା, ପର୍ବତ ବୃକ୍ଷାଦିର ଦୂରତା ତଥା ଉଚ୍ଚତା ସଠିକ୍ ଭାବେ ମାପିଦେଇ ପାରୁଥିଲେ। ତାଙ୍କ ଦ୍ୱାରା ଉଦ୍ଭାବିତ ସୂର୍ଯ୍ୟଘଡ଼ି ଓ ଜଳଘଡ଼ି ଆଜିବି ଭୁବନେଶ୍ୱରସ୍ଥ ପଠାଣି ସାମନ୍ତ ପ୍ଲାନେଟୋରିୟମ୍‌ରେ ସଠିକ୍ ସମୟର ସୂଚନା ଦେଉଛି। ପଣ୍ଡିତ ପଠାଣି ସାମନ୍ତଙ୍କ ଚମତ୍କାର ବୁଦ୍ଧିମତା ତତ୍‌କାଳୀନ ବିଚକ୍ଷଣ ବ୍ରିଟିଶ୍ ଶାସକଙ୍କୁ ମଧ୍ୟ ଅଭିଭୂତ କରିଦେଇଥିଲା। ସିଦ୍ଧାନ୍ତ ଦର୍ପଣ ଏବେ ବି ଇଂଲଣ୍ଡ, ଆମେରିକା ଓ ଜର୍ମାନ ଆଦି ଉନ୍ନତ ଦେଶମାନଙ୍କର ଗ୍ରନ୍ଥାଗାରରେ ସ୍ଥାନିତ କରାଯାଇଛି। ତେଣୁ କବିବର ରାଧାନାଥ ରାୟ ୧୮୯୩ ମସିହାରେ ତାଙ୍କ ରଚିତ 'ଦରବାର' କାବ୍ୟରେ ଯଥାର୍ଥରେ ଗାଇ ଉଠିଥିଲେ –

'ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ।'

୯) ଭଗବତ ଜିଜ୍ଞାସା ଓ ଜୀବନାନୁଭବର ପୁଣ୍ୟ ଗଙ୍ଗୋତ୍ରୀ ମହାପୁରାଣ ଭାଗବତ ନୀତିନିଷ୍ଠ ଜୀବନ ଗଠନ ପାଇଁ ଅଭିପ୍ରେତ। ଅତିବଡ଼ୀ ଜଗନ୍ନାଥ ଦାସ ବ୍ୟାସଦେବଙ୍କ କୃତ ମୂଳ ସଂସ୍କୃତ ଭାଗବତ ଛାୟାରେ ନବାକ୍ଷରୀ ରାଗରେ ଯେଉଁ ଓଡ଼ିଆ ଭାଗବତ ରଚନା କରିଛନ୍ତି, ତାହା ବିଶ୍ୱବିରଳ। ଓଡ଼ିଆ ବ୍ୟତୀତ ଅନ୍ୟ କୌଣସି ଭାଷାରେ ସମ୍ପୂର୍ଣ୍ଣ ଭାଗବତର ପଦ୍ୟାତ୍ମକ ରୂପରେଖ ଦେଖିବାକୁ ମିଳେନାହିଁ। ମରାଠୀ ଭାଷାରେ ସନ୍ଥ ଏକନାଥ କେବଳ ଭାଗବତ ଏକାଦଶ ସ୍କନ୍ଦର ଅନୁବାଦ କରିଛନ୍ତି। ଭକ୍ତ ସୁର ଦାସଙ୍କ 'ସୁର ସାଗର'ରେ ମୁଖ୍ୟତଃ ଦଶମ ସ୍କନ୍ଦର ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣିତ ହୋଇଛି। ବଙ୍ଗଳାରେ ଶ୍ରୀ ସନାତନ ବିଦ୍ୟାବାଗୀଶ ଦଶମ ସ୍କନ୍ଧର ଅନୁବାଦରେ ନିଜର ଅକ୍ଷମତା ପ୍ରକାଶ କରି ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତକୁ ଅବିକଳ ବଙ୍ଗ ଲିପିରେ ରୂପାନ୍ତରିତ କରିଦେଇଛନ୍ତି।

ସରଳ, ସାବଲୀଳ, ଶ୍ରୁତିମଧୁର ପଦାବଳୀପୂର୍ଣ୍ଣ ଓଡ଼ିଆ ଭାଗବତ ମଧ୍ୟସ୍ଥ ସୂକ୍ଷ୍ମ ଦିଗ୍‌ଦର୍ଶନ ମାନବ ସମାଜ ପାଇଁ ଏକ ଆଲୋକବର୍ତ୍ତିକା। ଏଥିରେ ଅନେକ ସାର୍ବଜନୀନ ଉଦାହରଣ ରହିଛି, ଯଥା:– ମାନବ ଦେହଧାରୀ ପ୍ରାଣୀଙ୍କୁ ସେ ଦୁଇ ଭାଗରେ ବିଭକ୍ତ କରିଛନ୍ତି। ଲୋକ ଓ ମନୁଷ୍ୟ। ଦୁଷ୍ଟମତିଯୁକ୍ତ 'ଲୋକ'ମାନଙ୍କର ବିନାଶ ଅବଶ୍ୟମ୍ଭାବୀ ବୋଲି ଦର୍ଶାଇ ସେ ମନୁଷ୍ୟମାନଙ୍କର ପ୍ରଶଂସା କରିଛନ୍ତି।

'ଏ ଘୋର କଳିଯୁଗ ଗତି ଲୋକେ
ହୋଇବେ ଦୁଷ୍ଟ ମତି।
ହିଂସା ବହିବେ ଏକେ ଏକେ
ସର୍ବେ ମଜ୍ଜିବେ ଦୁଃଖ ଶୋକେ।
ଅଗମ୍ୟେ କରିବେ ଗମନ
ନିନ୍ଦିବେ ନିଗମ ବଚନ।
ଏଣୁ ହୋଇବେ ଅଳ୍ପାୟୁଷ
ପାପେ ସକଳେ ଯିବେ ନାଶ।' (ଭାଗବତ–୧।୧୮)

କିନ୍ତୁ ମନୁଷ୍ୟମାନେ ଅନେକ ବାଧାବିଘ୍ନ ସତ୍ତ୍ୱେ ଭଲରେ ରହିଥିବେ ବୋଲି ସେ କହିଛନ୍ତି। ତାଙ୍କ ମତରେ–

ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ    ଦେଖି ସନ୍ତୋଷ ଭଗବାନ।

୧୦) ଯୁଗେ ଯୁଗେ ପୂର୍ଣ୍ଣାଙ୍ଗ ଶିକ୍ଷାର ଗନ୍ତାଘର ବ୍ୟାସଦେବଙ୍କ ସଂସ୍କୃତ ମହାଭାରତର ଓଡ଼ିଆ ପଦ୍ୟ ରୂପାନ୍ତର କରିଛନ୍ତି ଆଦିକବି ସାରଳା ଦାସ। ୧୮ ପର୍ବ ବିଶିଷ୍ଟ ଏହି ଓଡ଼ିଆ ମହାଭାରତର ବିଶେଷ ସ୍ୱାତନ୍ତ୍ର୍ୟ ରହିଛି । ସଂସ୍କୃତ ମହାଭାରତରେ ବର୍ଣ୍ଣିତ ଯେଉଁ ବିଷୟ ସବୁକୁ ସାରଳା ଦାସ ଅପ୍ରାସଙ୍ଗିକ ମନେକରିଛନ୍ତି ସେସବୁକୁ ସେ ନିଜ କଳ୍ପନା ବଳରେ ନୂତନ ରୂପ ଦେଇଛନ୍ତି। ସାରଳା ଦାସଙ୍କ ମହାଭାରତ ଯୁଗ ଯୁଗ ପାଇଁ ସମାଜ ଉପଯୋଗୀ ହୋଇ ରହିବ। ମୂଳ ସଂସ୍କୃତ ମହାଭାରତର ପଦ୍ୟାତ୍ମକ ପରିକଳ୍ପନା ଓଡ଼ିଆ ବ୍ୟତୀତ ଅନ୍ୟ କୌଣସି ଭାଷାରେ ଏଯାବତ୍ ହୋଇପାରିନାହିଁ।

୧୧) ସମ୍ପୂର୍ଣ୍ଣ ପଲ୍ଲୀ ପ୍ରଚଳିତ ଭାଷାରେ ସମାଜ ସଂସ୍କାରଧର୍ମୀ ସାହିତ୍ୟ ରଚନା କରି ମାନବୀୟ ମୂଲ୍ୟବୋଧକୁ ଦୋହଲାଇ ଦେଇଥିବା ଫକୀର ମୋହନ ସେନାପତିଙ୍କ ଅନ୍ତଃସ୍ୱର ବିଶ୍ୱ ସାହିତ୍ୟରେ ବିରଳ। ତାଙ୍କ କ୍ଷୁଦ୍ରଗଳ୍ପ 'ରେବତୀ', 'ଡାକମୁନ୍‌ସୀ', ରମ୍ୟରଚନା 'ପେଟେଣ୍ଟ ମେଡିସିନ୍', ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ' ଆଦିର ପାଠକୀୟ ଆଦୃତି ଅବର୍ଣ୍ଣନୀୟ। ସଂସ୍କୃତ ମହାଭାରତକୁ ସରଳ ଓଡ଼ିଆ ଭାଷାରେ ଅନୁବାଦ କରିଥିବା ହେତୁ ତାଙ୍କୁ ଓଡ଼ିଶାରେ 'ବ୍ୟାସକବି' ବୋଲି ସମ୍ବୋଧନ କରାଯାଏ। ତାଙ୍କ ସୃଷ୍ଟିରେ ଅନେକ ନୂତନତା ମଧ୍ୟରେ ନାରୀ ବର୍ଗୀକରଣ ଅନ୍ୟତମ। ପୃଥିବୀରେ ମୋଟ୍ ତିନି ପ୍ରକାର ନାରୀ ରହିଛନ୍ତି ବୋଲି ତାଙ୍କ ଉପନ୍ୟାସରେ ସେ ଦର୍ଶାଇଛନ୍ତି।

ପ୍ରଥମ:– ସାନ୍ତାଣୀ, ଚାନ୍ଦମଣି, ଇନ୍ଦୁପ୍ରଭା, ସରସ୍ୱତୀ ଦେଈ ଇତ୍ୟାଦି। ଏମାନେ ଦେବଗୁଣସମ୍ପନ୍ନା, ସରଳା, ଅକପଟ ଓ ନିର୍ମଳ ବ୍ୟକ୍ତିତ୍ୱର ଅଧିକାରିଣୀ। ଦୟା, ସ୍ନେହ, କ୍ଷମା ଓ ଭକ୍ତିର ଏମାନେ ମୂର୍ତ୍ତିମତୀ ଦେବୀ। ଫକୀରମୋହନଙ୍କ ଉପନ୍ୟାସରେ ଏହି ନାରୀମାନେ ବିଭିନ୍ନ ଭାବେ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି। ନିର୍ମମ ସ୍ୱାର୍ଥସର୍ବସ୍ୱ ସମାଜରେ ଏମାନଙ୍କୁ ଯଥାର୍ଥ ମୂଲ୍ୟ ମିଳିପାରିନାହିଁ।

ଦ୍ୱିତୀୟ:– ଚମ୍ପା, ଚିତ୍ରକଳା, ମରୁଆ ଇତ୍ୟାଦି। ଏମାନେ ଅତ୍ୟନ୍ତ ଧୂର୍ତ୍ତ, କୁଟୀଳ ସ୍ୱଭାବ ଓ ନଷ୍ଟଚରିତ୍ର

ଲକ୍ଷଣଯୁକ୍ତା। ଘର ଭାଙ୍ଗିବା ଓ ନିଜର ସଂକୀର୍ଣ୍ଣ ସ୍ୱାର୍ଥ ହାସଲ ପାଇଁ ଏମାନେ ଯେକୌଣସି ସ୍ଥିତିକୁ ମଧ୍ୟ ଚାଲିଯାଇପାରନ୍ତି। ନିଜ କାର୍ଯ୍ୟ ହାସଲ କରିବା ପାଇଁ ଅନ୍ୟର ସର୍ବନାଶ କରିବାକୁ ଏମାନେ ପଛଘୁଞ୍ଚା ଦିଅନ୍ତି ନାହିଁ। ଏହି ଚରିତ୍ରମାନଙ୍କର ଅସାମାନ୍ୟ ମେଧା ସମାଜ କଲ୍ୟାଣରେ ଲାଗିଲେ ହୁଏତ ପୃଥିବୀ ସ୍ୱର୍ଗରେ ପରିଣତ ହୋଇପାରନ୍ତା ମାତ୍ର ଏହାର ଅପପ୍ରୟୋଗ ଯୋଗୁଁ ପରିବେଶ କରାଳ ରାକ୍ଷସର ଧ୍ୱଂସ ମୁଖକୁ ଚାଲିଯାଉଛି। ଅବହେଳିତ ଶୈଶବ, ସାମାଜିକ ଶୋଷଣ ଓ ଆବାଲ୍ୟରୁ ଉଚିତ ଦିଗ୍‌ଦର୍ଶନର ଅଭାବ ଏପରି ନାରୀ ସୃଷ୍ଟିର କାରଣ ବୋଲି ଫକୀର ମୋହନ ପରୋକ୍ଷରେ ଦର୍ଶାଇଛନ୍ତି। ଅବହେଳା ଓ ତାଚ୍ଛଲ୍ୟ ଭିତରେ ଜୀବନ ଅତିବାହିତ କରି ଏମାନେ ନିଜ ଛଡ଼ା ଅନ୍ୟ କାହା ପ୍ରତି ଦୟାମାୟା ଦେଖାଇବାର ପରିବେଶ ପାଇପାରିନାହାନ୍ତି। କୁସଂସ୍କାର ପୂର୍ଣ୍ଣ ସାମାଜିକ ସ୍ଥିତି ଏହିପରି ଶତ ଶତ ଚମ୍ପା, ଚିତ୍ରକଳା, ମରୁଆ ସୃଷ୍ଟି ପାଇଁ ଦାୟୀ ଏହାହିଁ ଲେଖକଙ୍କର ଅଭିମତ।

ତୃତୀୟ:– ସାରିଆ, ଶୁକ୍ରୀ, ଶଂକ୍ରୀ, ମାଣିକ ଭଣ୍ଡାରୁଣୀ, ଗେହ୍ଲେଇ, ପଦୀ ପୋଇଲୀ ଇତ୍ୟାଦି। ଏମାନେ ସମାଜର ନିମ୍ନବର୍ଗୀୟ ସାଧାରଣ କର୍ମଜୀବୀ ନାରୀ। ଉପରୋକ୍ତ ଉଭୟବିଧ ଚରିତ୍ରର ବାହାରେ ଏମାନଙ୍କ ଜୀବନ। ଜୀବନ ସହ ଅହରହ ସଂଘର୍ଷରେ ରତ ଥିବା ଏହି ଦରିଦ୍ରା ନାରୀମାନେ ସାଙ୍ଗ ମେଳରେ ରସିକା, ପୁରୁଷ ମହଲରେ ପାଷାଣୀ ଓ ଦୁଷ୍ଟ ଲୋକମାନଙ୍କ ପାଇଁ ସାକ୍ଷାତ ସର୍ପିଣୀ। ଅନ୍ଧବିଶ୍ୱାସର ଅନ୍ଧ ଗଳି ମଧ୍ୟରେ ବାଟବଣା ହୋଇ ଏମାନେ ସର୍ବସ୍ୱାନ୍ତ ହୁଅନ୍ତି।

ନାରୀ ଚତୁର୍ଦ୍ଦିଗରେ ଥିବା ଅଲଂଘ୍ୟ ଅବରୋଧଗୁଡ଼ିକୁ ଅନୁଭବ କରାଇବା ସଂଗେ ସଂଗେ ବ୍ୟଥା ଓ ବିଚାରର ହାତୁଡ଼ିରେ ଫକୀର ମୋହନ ପାଠକୀୟ ପ୍ରାଣକୁ ବାରମ୍ବାର ଆଘାତ କରିଛନ୍ତି ତାଙ୍କ ଲେଖନୀ ମୁନରେ।

ସରଳ ଭାଷା, ଜୀବନ୍ତ ପ୍ରକାଶ ଭଙ୍ଗୀ, ମାନବବାଦୀ ସମ୍ବେଦନଶୀଳତା, ବ୍ୟଙ୍ଗଧର୍ମୀ ଶୈଳୀ, ସଂସ୍କାର ପ୍ରାଣତା ଓ ଆଦର୍ଶବାଦୀ ଭାବପ୍ରବଣତା କଥାସମ୍ରାଟ ଫକୀର ମୋହନଙ୍କ ସାହିତ୍ୟରେ ଜଗତକୁ ଅତୁଳନୀୟ ଅବଦାନ।

୧୨) ନୈସର୍ଗିକ କବି ପ୍ରତିଭା, ଅସାଧାରଣ ପାଣ୍ଡିତ୍ୟ, ବୌଦ୍ଧିକ କଳ୍ପନାବିଳାସ ଓ ସର୍ବୋପରି ଅପୂର୍ବ ଶବ୍ଦ ସଂଯୋଜନା ଓଡ଼ିଆ କାବ୍ୟ କବିତା ଓ ପ୍ରବନ୍ଧର ସ୍ୱତନ୍ତ୍ରତା।

କ) ପ୍ରତ୍ୟେକ ପାଦର ଆଦ୍ୟରେ 'ଅ' ଥାଇ ବ୍ରଜନାଥ ବଡ଼ଜେନାଙ୍କ ରଚିତ 'ଅମ୍ବିକା ବିଳାସ', ଉପେନ୍ଦ୍ର ଭଞ୍ଜଙ୍କ 'ବ' ଥାଇ ବାଉନ ଛାନ୍ଦ ବିଶିଷ୍ଟ 'ବୈଦେହୀଶ ବିଳାସ' ଓ 'ସ' ଥାଇ 'ସୁଭଦ୍ରା ପରିଣୟ' ଆଦି କାବ୍ୟଗୁଡ଼ିକରେ ଅଭୂତପୂର୍ବ ଶବ୍ଦବିନ୍ୟାସ ପାଠକଙ୍କୁ ବିମୋହିତ କରିଦିଏ।

ଖ) ଅବନା ନିୟମରେ ସଙ୍ଗୀତ/କାବ୍ୟ ଓଡ଼ିଆ ବ୍ୟତୀତ ବୋଧହୁଏ ଅନ୍ୟ କୌଣସି ଭାଷାରେ ସୃଷ୍ଟି ହୋଇନାହିଁ। ଅବନା ନିୟମ ରଚିତ ନିମ୍ନ ଉଦାହରଣରୁ ଏହାର ଚମତ୍କାରିତା ଅନୁମାନ କରାଯାଇପାରେ।

'ସଜ୍ଜନଗଣ କର ଶ୍ରବଣ ନନ୍ଦନନ୍ଦନ ଅଙ୍ଗ
ବ୍ରଜ କଳତ୍ର ମଦନ ଶସ୍ତ୍ର ଉଚ୍ଛନ୍ନ ଭକ୍ତରଙ୍ଗ। (୧)

ସଜଳ ନବ–ଘନ–ସମ୍ଭବ–ବର–ନବ ରଞ୍ଜନ
କୃଷ୍ଣକମଳ ପ୍ରଚ୍ଛଳଦଳ ମରକତ ଗଞ୍ଜନ। (୨)

ରମ୍ୟ କଜ୍ଜଳ–ବର ଉଜ୍ଜ୍ୱଳ ତମସଚୟ ଜୟ
ଭ୍ରମର ସ୍ୱଚ୍ଛ ମସ୍ତକ କର ବର୍ଦ୍ଧନ ସ୍ମର ଭୟ। (୩)'

(ଅଭିମନ୍ୟୁ ସାମନ୍ତସିଂହାର କୃତ 'ବିଦଗ୍ଧ ଚିନ୍ତାମଣି', କୃଷ୍ଣଙ୍କ ରୂପ ବର୍ଣ୍ଣନ ୨୯ ଛାନ୍ଦ। ଏହି ଛାନ୍ଦରେ ମୋଟ୍ ୨୪ଟି ପଦ ରହିଛି।)

ସର ସର ପରକଟ କମଳ
ଜଳ ଗହଳ ଗଗନ ମଣ୍ଡଳ
ମଉନ କଳରବର ଚହଳ
ମନ ମଥ କର ଶର ଚଞ୍ଚଳ
ଚଡ଼କ ପତନ
ଖଣ୍ଡ ଖଣ୍ଡ ପରବତ ତକ୍ଷଣ।
(ରୁକ୍ମିଣୀ ବିଳାସ, ଯଦୁମଣି ମହାପାତ୍ର)

ଗ) ଓଡ଼ିଆ କବିମାନଙ୍କ ଅଭୁତ ଶବ୍ଦ ସଂଯୋଜିତ ରଚନାର ଝଲକ ବିଜ୍ଞ ପାଠକମାନଙ୍କ ଦୃଷ୍ଟିକୁ ନିଆଯାଇପାରେ।

୧) ଶୁଣସିରେ ପ୍ରିୟତମା ତମାଳ କେଶୀ ସୁଷମା
ସମାନ କେ ଅଛି ବୋଲି କରିଛୁ ମାନ
ମାନ ମୋର ବଳି ବଳି ବଳି ଶୋଭିନୀ କୁଶଳୀ
ଶଳି ହେଲା ପ୍ରାଣ ତୋହ ଘେନି ନିଦାନ
ଦାନ କର ଚୁମ୍ବନିକର
କରକ ରଦନା ତୋର ଧରୁଛି କର। (୧)
କରଜେ ମହୀ ବିଦାରୁ ଦାରୁଣ ରୀତିକି କରୁ
କରୁଣା ଜଳଧି ତୋର ଏକି ଉଚିତ
ଚିତ୍ତ ଦହୁ ଅଛି ସ୍ମର ସ୍ମରଗତ କେଳି ସାର
ସାରସ ଲୋଚନା ତୋର ନୋହେ ବିହିତ
ହିତକର କେବା ତୋ ପରି
ପରିଚାର ଦୋଷ କିବା ମନରେ କରି। (୨)
(କୃପାସିନ୍ଧୁଙ୍କ ରଚିତ 'ବ୍ରଜବିହାର', ୨୯ ଛାନ୍ଦ)
ଏଥିରେ ମୋଟ୍ ୨୮ଟି ପଦ ରହିଛି।
୨) ଏ ଭାଗ୍ୟ ମୁଁ ଅରଜିବି ବାନ୍ଧବୀ କି ନ ତେଜିବି
ଜୀବିତେ କେଣେ ନଯିବି ଭାବେ ମଜ୍ଜିବି
ଆନ କଥା ନ ହେଜିବି ତା ନାମ ମାତ୍ର ଭଜିବି
ସୁଖ ସୃଷ୍ଟିକି ସର୍ଜିବି ମାରେ ତର୍ଜିବି
କେତେବେଳେ କେଶ ସାଜିବି
କେତେବେଳେ କରଜମାନଙ୍କୁ ମାଜିବି।
(ପ୍ରେମସୁଧାନିଧି, ୭ମ ଛାନ୍ଦ – ଉପେନ୍ଦ୍ର ଭଞ୍ଜ)
ଏଥିରେ ଏହିପରି ୨୪ଟି ପଦ ଅଛି।

୩) ଓଡ଼ିଆ ଭାଷା ସ୍ୱଭାବତଃ ମଧୁର ଓ କୋମଳ। ପ୍ରତିଭାସମ୍ପନ୍ନ କବିମାନେ ଏହି ଭାଷାରେ ଭାବ ପ୍ରକାଶନର ଅଦ୍ଭୁତ ଶୈଳୀ ଅବଲମ୍ବନ କରି ରସଗ୍ରାହୀ ପାଠକମାନଙ୍କୁ ଚମତ୍କୃତ କରିଛନ୍ତି। ରୀତିଯୁଗୀୟ କାବ୍ୟର ଅନ୍ୟତମ ଶ୍ରେଷ୍ଠ ବିନ୍ଧାଣି କବି ଯଦୁମଣି ମହାପାତ୍ରଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ର ପ୍ରତ୍ୟେକ ପଦ ଅନନ୍ୟ ଓ ହୃଦୟସ୍ପର୍ଶୀ।

ଶତକୋଟି କି ଶତକୋଟି ଗୁଣେ
ବଳୀ ବଳିଷ୍ଠ ହୋଇବା ପାଷାଣେ
ଘଟଣା ହୋଇଛି ଦୁର୍ଗ ପ୍ରାକାର
ରୁଚିତର ସୂଚି କମ ନିକର, ସେ
ତା କପାଟ ପାତ ଧ୍ୱନି ଯେ
ବିଳସୁଁ କୈଳାସେ ମୟୂର ଉଲ୍ଲାସେ
ଭୟ ଭଜନ୍ତି ସେନାନୀ ଯେ।
(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର, ପ୍ରଥମ କଳା–୯)

(ଦ୍ୱାରକାପୁରୀର ବର୍ଣ୍ଣନା କରିବାକୁ ଯାଇ କବି କହୁଛନ୍ତି ଯେ ଶତକୋଟି (ବଜ୍ର)ଠାରୁ ଶତକୋଟି ଗୁଣବଳୀ ବଳିଷ୍ଠ ପାଷାଣରେ ନଗରର ପାଚେରି ଗଠିତ ହୋଇଛି। ସେଥିରେ ସୂଚି କାମସବୁ ସୁନ୍ଦର ଦିଶୁଛି। ସେହି ପାଚେରି ଦ୍ୱାରର କବାଟ ପଡ଼ିବା ଶବ୍ଦକୁ ମେଘ ଗର୍ଜନ ମନେକରି ବାହନ ମୟୂର ନୃତ୍ୟ କରନ୍ତେ କୈଳାସ ପର୍ବତରେ ବିଳାସଲିପ୍ତ କାର୍ତ୍ତିକେୟ ବାହନରୁ ଖସିପଡ଼ିବାର ଭୟ କରନ୍ତି।)

ଏହି କାବ୍ୟର ୬ଷ୍ଠ କଳା ଷଷ୍ଠ ପଦଠାରୁ ଦ୍ୱାଦଶ ପଦ ଯାଏଁ ପ୍ରତ୍ୟେକ ପଦର ଶେଷ ଅକ୍ଷରକୁ କ୍ରମ ଅନୁଯାୟୀ ଲେଖିଲେ ହେବ 'ଛଇଳେନ୍ଦ୍ରଆଗଚ୍ଛ'। ରାଜକୁମାରୀ ରୁକ୍ମିଣୀ ଅତି ସମ୍ଭ୍ରମତାର ସହ ଶ୍ରୀକୃଷ୍ଣଙ୍କୁ ଆସିବା ପାଇଁ ଆମନ୍ତ୍ରଣ କରି ଲେଖିଥିବା ସାତଟି ପଦବିଶିଷ୍ଟ ଏହି ପତ୍ରଟି କବିଙ୍କ ଚାତୁର୍ଯ୍ୟର ପରାକାଷ୍ଠା ପ୍ରଦର୍ଶନ କରେ।

ଘ) ପତ୍ରିକାରେ ପ୍ରକାଶନ ଉଦ୍ଦେଶ୍ୟରେ ପ୍ରସ୍ତୁତ କରାଯାଉଥିବା ଏହି ପ୍ରବନ୍ଧର କଳେବର ବୃଦ୍ଧି ଅସମୀଚୀନ ମନେହେବା ଦୃଷ୍ଟେ ଅନେକ ମନୋରମ ତଥ୍ୟ ଉପସ୍ଥାପନ କରାଯାଇପାରୁ ନାହିଁ। ଓଡ଼ିଆ ପ୍ରେମୀମାନଙ୍କ ପାଇଁ କେବଳ ଏତିକି ସୂଚାଇ ଦିଆଯାଇପାରେ ଯେ ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, ସୁଲକ୍ଷଣା, ରସବତୀ ପ୍ରେମକଳା, ଗଙ୍ଗାଧର ମେହେରଙ୍କ ରସରତ୍ନାକର, ତପସ୍ୱିନୀ, ପ୍ରଣୟ ବଲ୍ଲରୀ, ଇନ୍ଦୁମତୀ, କୀଚକ ବଧ ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ, ମଧୁମଙ୍ଗଳ, ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣ, ଭକ୍ତଚରଣ ଦାସଙ୍କ ମଥୁରାମଙ୍ଗଳ, ରାଧାନାଥ ରାୟଙ୍କ ଚିଲିକା, ମହାଯାତ୍ରା, ଦରବାର, ନନ୍ଦିକେଶ୍ୱରୀ, ଉଷା ଦ୍ୱିତୀୟ ଭଞ୍ଜ ଗୋଲକ ଚନ୍ଦ୍ର ପ୍ରଧାନଙ୍କ ଇନ୍ଦୁରେଖା ଆଦି ଅନେକ କାବ୍ୟ ବିଶ୍ୱ ସାହିତ୍ୟାକାଶରେ ଗୋଟିଏ ଗୋଟିଏ ପ୍ରଚଣ୍ଡ ପ୍ରଭାବ ବିସ୍ତାରକାରୀ ଉଜ୍ଜ୍ୱଳ ଜ୍ୟୋତିଷ୍କ।

୧୩) ଓଡ଼ିଆ ସାହିତ୍ୟରେ ଉପଲବ୍ଧ ଗଳ୍ପ, ଉପନ୍ୟାସ, କବିତା, ନାଟକ, ବ୍ୟଙ୍ଗ, ରମ୍ୟରଚନା, ଜୀବନୀ,

ଆତ୍ମଜୀବନୀ, ସମାଲୋଚନା, କଳାକୌଶଳ, ଜ୍ୟୋତିଷ ଓ ବିଜ୍ଞାନ ଆଦି ବିଶ୍ୱରେ ସୁପ୍ରତିଷ୍ଠିତ ସାହିତ୍ୟକୃତିଠାରୁ କୌଣସି ଗୁଣରେ କମ୍ ନୁହେଁ। ଓଡ଼ିଶାର ଗର୍ବ ଓ ଗୌରବ କାଳିନ୍ଦୀ ଚରଣ ପାଣିଗ୍ରାହୀ (ମାଟିର ମଣିଷ, ମୁକ୍ତାଗଡ଼ର କ୍ଷୁଧା), ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ (ଆତ୍ମଜୀବନୀ କୁମ୍ଭାର ଚକ) କାହ୍ନୁଚରଣ ମହାନ୍ତି, କୃଷ୍ଣ ପ୍ରସାଦ ବସୁ, କୃଷ୍ଣ ପ୍ରସାଦ ବେହେରା, ଗଣକବି ବୈଷ୍ଣବ ପାଣି, ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା, ଅନନ୍ତ ପଟ୍ଟନାୟକ, ଅନ୍ନଦାଶଙ୍କର ରାୟ, ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ (ଉପନ୍ୟାସ ପରଶମଣି, ନଅତୁଣ୍ଡୀ), ଗୋପବନ୍ଧୁ ଦାସ, ଗୋପୀନାଥ ମହାନ୍ତି (ପରଜା), ଦିବାକର ଦାସ, ନନ୍ଦକିଶୋର ବଳ, ଲକ୍ଷ୍ମୀକାନ୍ତ ମହାପାତ୍ର (ଉପନ୍ୟାସ କଣାମାମୁଁ), ମଧୁସୂଦନ ରାଓ, ରାଧାମୋହନ ଗଡ଼ନାୟକ, ସଚ୍ଚିଦାନନ୍ଦ ରାଉତରାୟ, ଜ୍ୟୋତିର୍ବିଦ୍ ବାଇକୋଳି ମହାପାତ୍ର, ବିଭୂତି ପଟ୍ଟନାୟକ ତଥା ପ୍ରତିଭା ରାୟଙ୍କ ପରି ଅନେକ ସାହିତ୍ୟ ସ୍ରଷ୍ଟାଙ୍କ ପାଇଁ ଓଡ଼ିଶା ବିଶ୍ୱ ଦରବାରରେ ଅନାୟାସରେ ପ୍ରତିଷ୍ଠିତ ହୋଇପାରିବ।

୧୪) ଅସଂଖ୍ୟ ଅତୁଳନୀୟ ଓଡ଼ିଆ କାବ୍ୟ କବିତାକୁ ବାଦ୍ ଦେଇ କେବଳ ଉପେନ୍ଦ୍ର ଭଞ୍ଜଙ୍କ ସମୃଦ୍ଧ ସୃଷ୍ଟି ସମ୍ଭାରକୁ ନେଇ ବି ଓଡ଼ିଆ ଜାତି ପୃଥିବୀର ଯେକୌଣସି ଉନ୍ନତ ସାହିତ୍ୟ ସହ ତାଳଦେଇ ଶ୍ରେଷ୍ଠତା ପ୍ରତିପାଦନ କରିପାରିବ। କାବ୍ୟ ରସଭୋକ୍ତାମାନଙ୍କ ନିକଟରେ କବିସମ୍ରାଟ ଭାବେ ସମ୍ମାନିତ ଉପେନ୍ଦ୍ର ଭଞ୍ଜଙ୍କ ସଂସ୍କୃତ ପ୍ରତିସ୍ପର୍ଦ୍ଧୀ କାବ୍ୟ ସମୂହ ଅନେକ କ୍ଷେତ୍ରରେ ବିଶ୍ୱରେ ଅଦ୍ୱିତୀୟ। ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜ (ରାଜକବି) ମଧ୍ୟ ଜଣେ ଉଚ୍ଚକୋଟୀର କବି ଥିଲେ। ମଦନ ମଞ୍ଜରୀ, ଇଚ୍ଛାବତୀ, ରଘୁନାଥ ବିଳାସ, ଅନଙ୍ଗରେଖା ଓ ତ୍ରିପୁର ସୁନ୍ଦରୀ ଆଦି ଧନଞ୍ଜୟ ଭଞ୍ଜଙ୍କର ଅତି ଉତ୍କୃଷ୍ଟ କାବ୍ୟ ଅଟେ। ଉପେନ୍ଦ୍ରଙ୍କ ସମୟ ସମ୍ବନ୍ଧେ ଏକାଧିକ ମତ ଥିଲେ ମଧ୍ୟ ସେ ୧୬୭୦ ରୁ ୧୬୮୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନ୍ମ ଓ ୧୭୪୦ରେ ସ୍ୱର୍ଗାରୋହଣ କରିଥିବାର ପ୍ରମାଣ ମିଳେ।

ସ୍ୱଳ୍ପ ଜୀବନ କାଳ ମଧ୍ୟରେ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ରସମଞ୍ଜରୀ, କଳାକଉତୁକ, ରସିକ ହାରାବଳୀ, ପ୍ରେମସୁଧାନିଧି, ଶୋଭାବତୀ, ସୁବର୍ଣ୍ଣରେଖା ଆଦି ୪୩ ଗୋଟି କାବ୍ୟ ମଦନ ମଞ୍ଜରୀ, ଚନ୍ଦ୍ରରେଖା, ପୁରୁଷୋତ୍ତମ ମାହାତ୍ମ୍ୟ, ଚୌପଦୀ ଭୂଷଣ ଆଦି ୬୭ଟି ପୁସ୍ତକ ଓ ଅନେକ ସଙ୍ଗୀତ ତଥା ଚୌପଦୀ ରଚନା କରି ଉପେନ୍ଦ୍ର ଭଞ୍ଜ ବିଶ୍ୱସାହିତ୍ୟକୁ ସମୃଦ୍ଧ କରିଛନ୍ତି। ତାଙ୍କର ଅନେକ ରଚନା ଦୁଷ୍ପ୍ରାପ୍ୟ।

ଉପେନ୍ଦ୍ର ଭଞ୍ଜଙ୍କର ପ୍ରତ୍ୟେକ ରଚନାରେ ଅଲୌକିକତା ରହିଛି। ଐଶ୍ୱରୀୟ ଶକ୍ତି ବିନା ଏଭଳି ସୃଷ୍ଟି ଅସମ୍ଭବ। ନିଜେ ଭଞ୍ଜ କବି ବାରମ୍ବାର ଏହା ସ୍ୱୀକାର କରିଛନ୍ତି।

'ତାରକ ମନ୍ତ୍ର ପରସାଦେ ମୋହର କବି ପଣ ଉଦେ'

(ଲାବଣ୍ୟବତୀ–୧୬/୪୨)

'ବୀରବର ପଦ ଉପଇନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇଁ ସୀତାରାମ
ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି।'

(ବୈଦେହୀଶ ବିଳାସ)

ଉପେନ୍ଦ୍ରଙ୍କ ସୃଷ୍ଟି ଶୃଙ୍ଗାର ରସ ପ୍ରଧାନ ହେଲେ ମଧ୍ୟ କୌଣସି କ୍ଷେତ୍ରରେ ମର୍ଯ୍ୟାଦାର ସୀମା ଲଂଘନ କରିନାହିଁ। ପୁନଶ୍ଚ ଏଥିରେ ଅନେକ ଗୂଢ଼ ଅର୍ଥ ରହିଛି। ଶବ୍ଦାର୍ଥରେ ବିଚକ୍ଷଣ ଓ ଅଳଙ୍କାର ଅଭିଜ୍ଞ ବ୍ୟକ୍ତି ତାଙ୍କ ରଚନାକୁ ଉପଯୁକ୍ତ ଅର୍ଥ କରିପାରିବେ ବୋଲି କବି ପ୍ରକାଶ କରିଛନ୍ତି।

'ନାନା ଶବ୍ଦ ଅର୍ଥେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହୁ କରୁ ଏ ଛାନ୍ଦ ବିବେଚନା।'

(କୋଟି ବ୍ରହ୍ମାଣ୍ଡସୁନ୍ଦରୀ–୩/୧)

ପରୋକ୍ଷରେ ରସାମୋଦୀ ପାଠକମାନଙ୍କୁ ଓଡ଼ିଆ ଭାଷାରେ ଗଭୀର ଜ୍ଞାନ ଆହରଣ ପାଇଁ କବି ଆହ୍ୱାନ ଦେଇଛନ୍ତି। କବିସମ୍ରାଟଙ୍କ ବିଭିନ୍ନ ପ୍ରକାର ରଚନାର କିୟଦଂଶରୁ ଲେଶମାତ୍ର ଅବତାରଣା କରାଯାଇ ତାଙ୍କର ଅଦ୍ୱିତୀୟତା ପ୍ରମାଣ କରାଯାଇପାରେ।

କ) କବିସମ୍ରାଟଙ୍କ ରଚନା ଏକାଧିକ ଅର୍ଥବୋଧକ ଓ ତତ୍ତ୍ୱଭିତ୍ତିକ ଅଟେ। ଭଞ୍ଜ ରାମାୟଣ ନାମରେ ବିଦିତ ତାଙ୍କ 'ବୈଦେହୀଶ ବିଳାସ' କାବ୍ୟର ଏପରି ନାମକରଣର ସ୍ୱାତନ୍ତ୍ର୍ୟତା ରହିଛି।

୧) ବୈଦେହୀ+ ଈଶ + ବିଳାସ (ବିଦେହ ରାଜନନ୍ଦିନୀ (ସୀତା)ଙ୍କ ଈଶ (ସ୍ୱାମୀ) ଅର୍ଥାତ୍ ରାମଚନ୍ଦ୍ରଙ୍କ ବିଳାସ (ଲୀଳା)।

୨) ବୈ+ଦେହୀ+ ଈଶ+ବିଳାସ ('ବୈ' ଏକ ଅବ୍ୟୟ ପଦ ଓ ଏହା ନିଶ୍ଚିତ ଅର୍ଥରେ ବ୍ୟବହୃତ ହୁଏ।) ଦେହୀ ଅର୍ଥ ସମସ୍ତ ଦେହଧାରୀ। ଈଶ ଅର୍ଥ ରକ୍ଷକ। ଅତଏବ ସମସ୍ତ ଦେହଧାରୀ (ପ୍ରାଣୀ)ମାନଙ୍କ ରକ୍ଷକଙ୍କ ଲୀଳା।

ବୈଦେହୀଶ ବିଳାସରେ କବି ନିଜର ସ୍ୱକୀୟ ଚିନ୍ତା ଓ କଳ୍ପନାର ପରିଚୟ ଦେଇଛନ୍ତି, ଯାହା ତାଙ୍କୁ ପୃଥିବୀ ସାହିତ୍ୟରେ ଅଦ୍ୱିତୀୟ କରିପାରିବ। ଅଶୋକ ବନରେ କୁହୁତାନରତ ଏକ କୋକିଳକୁ ସୀତା ନିଜର ମର୍ମବେଦନା ଜଣାଇବା ପ୍ରସଙ୍ଗକୁ କବି ଏହିପରି ବର୍ଣ୍ଣନା କରିଛନ୍ତି–

'ବନେ ଅଇଲେ ତିନି ବେନି ରହିଲେ
ଏକ ଗଲା ଏକା ହୋଇଯେ
ବୋଲିବାକୁ ଆହା କେହି ନାହିଁ ସାହା
ସେ ଜନ ବଞ୍ଚିବ କେହିଯେ
ବଲ୍ଲଭେ, ବନପ୍ରିୟ କହ ଏତେ ଯେ
ବ୍ରହ୍ମାଣ୍ଡନାଥ ହାତ ଧରି ଅନାଥ କି ଶୁଭୁଅଛି ଜଗତେ ଯେ।'
(ବୈଦେହୀଶ ବିଳାସ)

ଖ) ଜେଜେବାପା ଧନଞ୍ଜନ ଭଞ୍ଜଙ୍କ ସହ କଥୋପକଥନ ବେଳେ ଏକଦା ସ୍ୱତଃସ୍ଫୂର୍ତ୍ତ ଭାବରେ କବି ତାଙ୍କର ଗୃହ କର୍ମଚାରୀ 'ଖଗା'କୁ କହିଥିଲେ:– 'କି ଖଗା ଘନେ ଚାଁଛେ ଜେଝା ନାଟଠା ଯଦାର୍ଣ୍ଣ ତଥିଦଧିନେ।' କ, ଖ, ଗ, ଘ କ୍ରମରେ ତତ୍‌କ୍ଷଣାତ୍ ଏଭଳି ଏକ ବାକ୍ୟ ଉପେନ୍ଦ୍ର ଭଞ୍ଜଙ୍କ ବାଗ୍ମିତାର ଏକ ସ୍ପଷ୍ଟ ପରିଚୟ।

ଗ) ଦଶଟି ଛାନ୍ଦରେ ଲିଖିତ ତାଙ୍କର 'କଳା କଉତୁକ' କାବ୍ୟର ପ୍ରତ୍ୟେକ ପାଦର ଆଦ୍ୟ ଓ ପ୍ରାନ୍ତ ଅବନା 'କ' ରହି ରଚିତ।

କପିଷାନ ଯାହାର ମାୟାରେ ମୋହି ତତ୍ପର
ସେ ହେଲା ଉଭାଚ ଗୋପୀ ପୁଣ ବଶକ।
କରତ ବିଚାର ମନେ ଅନୁରାଗ ଦିନେ ଦିନେ
ଅଧିକା ହୋଇ ବାରନ୍ତି ହେଲା ଅଧିକ।
କଳା ବର୍ଣ୍ଣ କଳା ବୃନ୍ଦକ।
କସ୍ତୁରୀ ଲେପନକାରୀ ଅଙ୍ଗ ପ୍ରତୀକ।
(କଳା କଉତୁକ, ଦ୍ୱାଦଶ ଛାନ୍ଦ)

ଘ) 'ବନା'ର ବିନା ସାହାଯ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାଦଶ ଛାନ୍ଦ ବିଶିଷ୍ଟ କାବ୍ୟ 'ଅବନା ରସ ତରଙ୍ଗ'ର ରଚନା ଶୈଳୀ ପାଠକମାନଙ୍କୁ ଅଭିଭୂତ କରିପକାଏ। ଭଗବତ୍ ଆଶୀର୍ବାଦ ବିନା ଏ ପ୍ରକାର ରଚନା ଯେ ଅସାଧ, ଏହା ନିଃସନ୍ଦେହ। ମୋଟ୍ ୪୨୨ ପଦ ଥିବା ବାର ଛାନ୍ଦ ବିଶିଷ୍ଟ ଏହି କାବ୍ୟ ରାମାୟଣ କଥାବସ୍ତୁ ଉପରେ ଆଧାରିତ ହେଲେ ମଧ୍ୟ ଏଥିରେ ରାମ, ରାବଣ, ହନୁମାନ ଆଦି ଶବ୍ଦ ନାହିଁ। ଏଥିରେ ରାମ ପାଇଁ 'ଦଶରଥ ନନ୍ଦନ', ରାବଣ ପାଇଁ 'ଶତବଦନ' ଓ ହନୁମାନ ପାଇଁ 'ପବନ ତନୟ' ଇତ୍ୟାଦି ଶବ୍ଦ ବ୍ୟବହୃତ ହୋଇଛି। ଶ୍ରୀଲଙ୍କା, ଇଣ୍ଡୋନେସିଆ, ଥାଇଲାଣ୍ଡ ଆଦି ଅନେକ ଦେଶରେ ବିଭିନ୍ନ ଭାଷାରେ ଶହ ଶହ ରାମାୟଣ ଲେଖାଯାଇଥିଲେ ମଧ୍ୟ ଏମିତି ଅବନା ରାମାୟଣ କେବଳ ଉପେନ୍ଦ୍ର ଭଞ୍ଜଙ୍କ ବ୍ୟତୀତ ପୃଥିବୀରେ ଅନ୍ୟ କେହି ରଚନା କରିନାହାନ୍ତି।

ଙ) ଗୋଟିଏ ପଦରେ ତ୍ରିଋତୁ ବର୍ଣ୍ଣନା–

'ଅସାର ସଘନ କାଳ ହୋଇ ଉଦୟ
ଅସିତ ପରବଳରୁ ଦରଶମୟ।'

(କୋଟି ବ୍ରହ୍ମାଣ୍ଡସୁନ୍ଦରୀ–୨୫/୧)

(ଅସାର–ଧରାପାତ, ସଘନ–ନିବିଡ଼, ଅସିତ–କୃଷ୍ଣପକ୍ଷ, ଦରଶ–ଅମାବାସ୍ୟା) ଧରାପାତ ନିବିଡ଼ ହେବାର କାଳ (ବର୍ଷାକାଳ) ଉଦିତ (ଆବିର୍ଭାବ) ହୋଇ କୃଷ୍ଣବର୍ଣ୍ଣ ଘୋଟିଯିବାରୁ ଅମାବାସ୍ୟା ପରି ଅନ୍ଧକାର ବୋଧ ହେଲା।)

ଏହି ମୂଳ ପଦର ପ୍ରତ୍ୟେକ ପାଦର ପ୍ରଥମ ଅକ୍ଷରକୁ ବାଦ୍ ଦେଲେ ହେବ –

'ସାରସ–ଘନ କାଳ ହେଲା ଉଦୟ
ଶୀତ ପରବଳରୁ ଦର ସମୟ।'

(ସାରସଘ୍ନ–ପଦ୍ମନଷ୍ଟ, ଦର–ଶଙ୍ଖ । ପଦ୍ମନଷ୍ଟ ସମୟ (ଶୀତ ଋତୁ) ଆବିର୍ଭାବ ହୋଇ ଶୀତ ପ୍ରକୋପରୁ କୁହୁଡ଼ି ହେତୁ ପରିବେଶ ଶଙ୍ଖ ଭଳି ଧଳା ପ୍ରତୀୟମାନ ହେଲା ।)

ସେହିପରି ମୂଳ ପଦର ପ୍ରତ୍ୟେକ ପାଦରୁ ଦୁଇଟି ଲେଖାଏଁ ଅକ୍ଷର ବାଦ୍ ଦିଆଗଲେ –

'ରସଘନ କାଳ ହୋଇ ଉଦୟ ତପର ବଳରୁ ଦର ସମୟ ।'

(ରସଘ୍ନ–ଜଳ ନାଶକ, ତପ–ଗ୍ରୀଷ୍ମ, ଦର–ଭୟ । ଜଳନାଶ କାଳ ଗ୍ରୀଷ୍ମକାଳ ଉଦିତ ହେବାରୁ ତାପ ପ୍ରବଳତା ହେତୁ ଭୟ ଜାତ ସମୟ ଆସିଗଲା ।)

ଏହି ଗୋଟିଏ ପଦ ନୁହେଁ ସମ୍ପୂର୍ଣ୍ଣ ଛାନ୍ଦଟି ଏହିପରି ରଚିତ । ମୂଳ ପଦଟିର ରାଗ ଚିନ୍ତାଦେଶାକ୍ଷ, ଗୋଟିଏ ଅକ୍ଷର ବାଦ୍ ଦେଲେ ରାଗ କାଫିକାମୋଦୀ, ଦୁଇ ଅକ୍ଷର ବାଦ୍ ରାଗ ମାଳବରାଡ଼ି । ଏହି ଛାନ୍ଦଟିକୁ ତ୍ରିକାଳ ଛାନ୍ଦ କୁହାଯାଏ ।

ଚ) ଦ୍ୱିସନ୍ଧାନୀ ରଚନା–

'ନାଗରମଣି ସାର ଶୂର–ଭୀଧାମ
ନାହିଁ ଶ୍ରୁତିରେ ତାହା କୀରତି ସମଯେ ।'

(କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ୨୦।୨)

ଏହି ପଦର ରାଗ କଳହଂସ କେଦାର । ଏହି ରାଗରେ ପଦର ଅର୍ଥ କରାଗଲେ ପ୍ରେମିକର ପ୍ରାଧାନ୍ୟ ପ୍ରକାଶିତ ହେବ । ଯଥା: ରାଜକୁମାର ହେଉଛନ୍ତି ପୁରୁଷ ଶ୍ରେଷ୍ଠ ଓ ବଡ଼ ବଡ଼ ବୀରମାନେ ତାଙ୍କୁ ଭୟ କରନ୍ତି । ତାଙ୍କର କୀର୍ତ୍ତିତୁଲ୍ୟ ଅନ୍ୟ କାହାର କୀର୍ତ୍ତି କର୍ଣ୍ଣରେ ଶୁଣାଯାଇନାହିଁ କିମ୍ବା ବେଦରେ ବର୍ଣ୍ଣିତ ହୋଇନାହିଁ । (ନାଗରମଣି–ପୁରୁଷ ଶ୍ରେଷ୍ଠ, ସାର–ଶ୍ରେଷ୍ଠ, ଶୂର–ବୀର, ଭୀ–ଭୟ, ଧାମ–ସ୍ଥାନ, ଶ୍ରୁତି–କର୍ଣ୍ଣ, ବେଦ)

ଏହି ପଦର ରାଗ 'ଭୂପାଳ' ହେଲେ ନାୟିକାର ବର୍ଣ୍ଣନା ପ୍ରକାଶିତ ହେବ ।

'ନାଗ ରମଣୀ ସାର ସୁରଭିର ଧାମ
ନାହିଁ ଶ୍ରୁତିରେ ତାହା, କି ରତି ସମଯେ ।'

ରାଜକୁମାରୀ ନାଗକନ୍ୟାମାନଙ୍କଠାରୁ ମଧ୍ୟ ଶ୍ରେଷ୍ଠ ସୌନ୍ଦର୍ଯ୍ୟର ସ୍ଥାନ । ତାଙ୍କ ପରି କେହି ଥିବାର ଶୁଣାଯାଏ ନାହିଁ । ରତି ବା ତାଙ୍କ ସହ କ'ଣ ସମାନ ହେବ ? (ନାଗ ରମଣୀ–ନାଗକନ୍ୟା, ସାର–ଶ୍ରେଷ୍ଠ, ସୁରଭି–ସୌନ୍ଦର୍ଯ୍ୟ, ଧାମ–ସ୍ଥାନ, ରତି–ତ୍ରିଭୁବନର ଶ୍ରେଷ୍ଠ ସୁନ୍ଦରୀ ଓ କନ୍ଦର୍ପଙ୍କ ପତ୍ନୀ)

ଛ) ସର୍ବ ଯମକ:– (ପ୍ରତ୍ୟେକ ପାଦ ସମାନ, ମାତ୍ର ଅର୍ଥ ଭିନ୍ନ)

୧) 'ବନପ୍ରିୟ ତୋଷଦାନୀ ରମଣୀ ଏ ଲୋକେ
ବନପ୍ରିୟ ତୋଷଦାନୀ ରମଣୀ ଏ ଲୋକେ ।'

(ବୈଦେହୀଶ ବିଳାସ)

(ବନପ୍ରିୟ–ବନ ପ୍ରିୟ ଯାହାର–କୋକିଳ, ଗୌତମ ଋଷି)

୨) 'ଅହିମକର ତାପ ନାଶେ ଶୋଭା ସାରସ ଚକ୍ରେ
ଅହିମକର ତାପ ନାଶେ ଶୋଭା ସାରସ ଚକ୍ରେ ।

(ଲାବଣ୍ୟବତୀ)

୧ମ ପାଦ (ଅହି–ସାପ, ମକର–ମତ୍ସ୍ୟ ବିଶେଷ, ତାପ–ଦୁଃଖ, ସାରସ–ପଦ୍ମ, ଚକ୍ରେ–ସମୂହରେ)

୨ୟ ପାଦ (ଅହିମକର–ଯାହାର କିରଣ ହିମ ନୁହେଁ–ସୂର୍ଯ୍ୟ, ତାପ–ଉଷ୍ଣତା, ସାରସ–ହଂସ, ଚକ୍ରେ–ମଣ୍ଡଳିରେ)

ଜ) ଯମକ–

୧) ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।

(ଲାବଣ୍ୟବତୀ)

୨) ଜୀବନ ଜୀବନ ଜୀବନ
ଜୀବନ ଧନୀ ସୁକୁନ୍ତଳା ତେଜିବ
ଜଗତ ନଳିନୀ ନଳିନୀ ନଳିନୀ ନଳିନୀ
ଯେବେ ନିରେଖିବ କୋକିଳ, ଜବାଧରା ମନ ରଞ୍ଜନା
ଜଗତ ସୁରଭି ସୁରଭି ସୁରଭି ସୁରଭି ସୁରଭି ବରନା ।

(ଯମକରାଜ ଚଉତିଶା)

ଝ) ଶ୍ଳେଷ–

'ବାବୁ ନାକ ଶିରୀଦାନ ଯୋଗ୍ୟ ଯୋଷାକୁ
ବିହର କାନନ କର ଆଲିଙ୍ଗନକୁ ।'

(ବୈଦେହୀଶ ବିଳାସ)

ଞ) ଦ୍ୱିଅକ୍ଷର–

'ରସାରେ ସାର ସୁରସ ସରସୀ,
ସଂସାର ଶିରୀ ସୁରସ ସରସୀ ।'

ଟ) ର, ସ, ପ, ଞ୍ଚ, କ – ଏହି ପାଞ୍ଚଟି ଅକ୍ଷରକୁ ଆଦ୍ୟ ବର୍ଣ୍ଣ ନିୟମରେ ପ୍ରୟୋଗ କରି ରଚିତ କାବ୍ୟର ନାମ 'ରସପଞ୍ଚକ' । ଏହା ଏକ ଉନ୍ନତ ଅଦ୍ୱିତୀୟ ଅଳଙ୍କାର ଗ୍ରନ୍ଥ ।

ଠ) 'ବୀର ଯେତେ ସେନା ବାର ରସା ସାର
ରବା ନାଶେ ତେଜେ ରବି
ବିହେ ତଜି ପୁରିତର ତମ
ମତ ରତ ରିପୁ ଜିତ ହେବି ।'

(ବୈଦେହୀଶ ବିଳାସ, ୪୯ ଛାନ୍ଦ)

(ବାମ ଆଡୁ ପଢ଼ିଲେ ଯାହା, ଦକ୍ଷିଣ ଆଡୁ ପଢ଼ିଲେ ତାହା)

ଗୋଟିଏ ଦୁଇଟି ପଦ ନୁହେଁ ଏହିଭଳି ଅନେକ ଅଦ୍ଭୁତ ଛାନ୍ଦ ରଚନା କରି ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବା ପାଇଁ ସର୍ବଗୁଣେ ସମର୍ଥ କରିଯାଇଛନ୍ତି । ଭାଷାର ଗାମ୍ଭୀର୍ଯ୍ୟରୁ ଏକ ଜାତିର ପରମ୍ପରା ଓ ସଂସ୍କାର ଅନୁମାନ କରାଯାଏ । ସମ୍ପ୍ରତି ଆନ୍ତର୍ଜାତିକ ଶିକ୍ଷା, ବିଜ୍ଞାନ ଓ ସାଂସ୍କୃତିକ ସଂଗଠନ (UNESCO) ଦ୍ୱାରା ପ୍ରକାଶିତ ତଥ୍ୟ ଅନୁଯାୟୀ ସୁରକ୍ଷା ଅଭାବରୁ ଏସିଆ ମହାଦେଶରେ ୧୦୮, ଇଉରୋପରେ ୧୪୩, ଆମେରିକାରେ ୧୦ଟି ସମେତ ସମଗ୍ର ପୃଥିବୀରେ ଅନେକ ଭାଷା ସମ୍ପୂର୍ଣ୍ଣ ଲୋପ ପାଇଗଲାଣି । ବର୍ତ୍ତମାନ ପୃଥିବୀରେ ୬୦୦୦ (ଛ' ହଜାର)ରୁ ଅଧିକ ଭାଷା ବିପଦଗ୍ରସ୍ତ ହୋଇଛି, ଯାହାକି ଏ ଶତାବ୍ଦୀର ଶେଷ ସୁଦ୍ଧା ହୁଏତ ବିନାଶ ହୋଇଯାଇପାରେ । ଏକ ଭାଷାର ମୃତ୍ୟୁ ସହିତ ସେ ଜାତିର ସଂସ୍କୃତି ମଧ୍ୟ ସମାଧିପ୍ରାପ୍ତ ହୁଏ । ଏସବୁକୁ ଦୃଷ୍ଟିରେ ରଖି ପ୍ରତିବର୍ଷ ଫେବୃଆରୀ ମାସ ୨୧ ତାରିଖକୁ ସାରା ପୃଥିବୀରେ ଆନ୍ତର୍ଜାତିକ ମାତୃଭାଷା ଦିବସ ଭାବେ ପାଳନ କରାଯାଉଛି । ବାସ୍ତବିକ ଉପାଦେୟ ତଥ୍ୟ ସମୃଦ୍ଧ ଓଡ଼ିଆ ଭାଷାର ସୁରକ୍ଷା ଆମ ସମସ୍ତଙ୍କର ନୈତିକ ଦାୟିତ୍ୱ ହେବା ଉଚିତ ।

ଉପ ବିଭାଗ ଅଧିକାରୀ
ମତ୍ସ୍ୟ ଓ ପ୍ରାଣୀ ସମ୍ପଦ ବିକାଶ ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର

# ଅକ୍ଷୟ ତୃତୀୟା

**ଆରତୀ ରାଣୀ ଡାକୁଆ**

ବୈଶାଖ ମାସ ଶୁକ୍ଳପକ୍ଷ ତୃତୀୟା ଦିନ
ଅକ୍ଷୟ ତୃତୀୟା ନାମରେ ହୁଏ ପାଳନ ॥
ଏହା ଏକ କୃଷିଭିତ୍ତିକ ପର୍ବ ଅଟଇ
ଚାଷୀ ଭାଇ ଅଖିମୁଠି ଅନୁକୂଳ କରଇ ॥
ଲୋକଙ୍କ ମଧ୍ୟେ ବିଶ୍ୱାସ ରହିଅଛି ମନେ
ଭଗବାନ ବିଷ୍ଣୁ ଏହିଦିନ
ଯବଶସ୍ୟ କରିଥିଲେ ଉତ୍ପାଦନ ॥
ଏହିଦିନ ଦାନ, ଧର୍ମ, ସ୍ନାନ ଶ୍ରାଦ୍ଧକଲେ ପିତୃ ତର୍ପଣ
ଅକ୍ଷୟ ହୋଇବ ପୁଣ୍ୟ କହଇ ପୁରାଣ ॥
ଏହିଦିନ କୁଳବଧୂମାନେ ଷଷ୍ଠୀ ଦେବୀଙ୍କୁ ପୂଜନ୍ତି
ନିଜ ସନ୍ତାନ–ସନ୍ତତିଙ୍କର ମଙ୍ଗଳ ମନାସନ୍ତି ॥
ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଶ୍ରୀଜୟଦେବ
ଏହିଦିନ ହୋଇଲେ ଜନ୍ମିତ
ତାଙ୍କ ରଚନା 'ଶ୍ରୀ ଗୀତଗୋବିନ୍ଦ' ପାଇଁ
ଏ ବିଶ୍ୱେ ହୋଇଲେ ବିଖ୍ୟାତ ॥
ପବିତ୍ର ଅକ୍ଷୟ ତୃତୀୟାରେ କଲେ ଗଙ୍ଗା ସ୍ନାନ
ମହାପୁଣ୍ୟ ମିଳେ ବୋଲି ଅଛି ତ ବିଧାନ ॥
ରଥଯାତ୍ରା ପାଇଁ ଅକ୍ଷୟ ତୃତୀୟାରୁ ରଥ କାମ ହୁଏ ଅନୁକୂଳ
ଚନ୍ଦନ ଯାତ୍ରାର ଶୁଭାରମ୍ଭ ହୁଏ ଏହିଦିନ ଅଟେ ଶୁଭବେଳ ॥
ଅକ୍ଷୟ ତୃତୀୟାର ମହିମା ଓ ମହତ୍ତ୍ୱ ଅଟେ ଅନନ୍ୟ
ଓଡ଼ିଆ ପର୍ବ–ପର୍ବାଣି ମଧ୍ୟରେ ପାଇଛି ବିଶେଷ ସ୍ଥାନ ॥

ପ୍ରଧାନ ଶିକ୍ଷୟିତ୍ରୀ, ବନ୍ଧମୁଣ୍ଡା ସରକାରୀ ଉ.ପ୍ରା ବିଦ୍ୟାଳୟ
ମାୟାବରା, ପାଟଣାଗଡ, ବଲାଙ୍ଗୀର

# ସ୍ୱାଭିମାନୀ ଓଡ଼ିଆ ବନାମ ସ୍ୱତନ୍ତ୍ର ଉତ୍କଳ

**ଗିରିଜାଶଙ୍କର ତରାସିଆ**

କବିବର ରାଧାନାଥ ରାୟ 'ଦରବାର' କାବ୍ୟରେ ସାମନ୍ତ ଚନ୍ଦ୍ରଶେଖରଙ୍କ ଉଦ୍ଦେଶ୍ୟରେ ସମ୍ମାନ ଜଣାଇ ଗାଇ ଉଠିଥିଲେ–

ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପୀ
କୀର୍ତ୍ତିମାଳା ଯା'ର ବିରାଜେ ଅଦ୍ୟାପି
ଏକାମ୍ରେ କୋଣାର୍କେ ଯା'କୀର୍ତ୍ତି ଭାସ୍ୱର
ଯୋଗ୍ୟପୁତ୍ର ତୁମ୍ଭେ ସେହି ଉତ୍କଳର ।

ଅତୀତରେ ଓଡ଼ିଶାର ଭୌଗଳିକ ସୀମା ଗୋଦାବରୀଠାରୁ ଗଙ୍ଗା ଯାଏଁ ପରିବ୍ୟାପ୍ତ ଥିଲା । ସମଗ୍ର ଆର୍ଯ୍ୟାବର୍ତ୍ତରେ ପ୍ରାଚୀନ ଉତ୍କଳ ଏକ ଯୋଦ୍ଧା ଜାତି ଭାବେ ଖ୍ୟାତି ଅର୍ଜନ କରିଥିଲା । କପିଳ ସଂହିତାରେ ବର୍ଣ୍ଣନା କରାଯାଇଛି ଯେ–

ରାଷ୍ଟ୍ରରେ ଭାରତ ଶ୍ରେଷ୍ଠ ରାଜ୍ୟରେ ଉତ୍କଳ
ଉତ୍କଳ ସମାନ ରାଜ୍ୟ ଧରାରେ ବିରଳ ।

ବ୍ରହ୍ମପୁରାଣରେ ଉତ୍କଳ ରାଜ୍ୟକୁ ବିଶ୍ୱାସନୀୟ, ସାଧୁ ଏବଂ ସଚ୍ଚୋଟ ବ୍ୟକ୍ତିଙ୍କର ବାସସ୍ଥଳୀଭାବେ ଉଲ୍ଲେଖ କରାଯାଇଛି । ନେପାଳର ପଶୁପତିନାଥ ମନ୍ଦିରରେ କଳିଙ୍ଗରାଜ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଥିବା ବେଳେ ଆଫଗାନିସ୍ଥାନରେ ଅବସ୍ଥିତ ଅଶୋକଙ୍କର ତ୍ରୟୋଦଶ ଶିଳାଲେଖରେ କଳିଙ୍ଗ ରାଜ୍ୟ ସଂପର୍କରେ ଉଲ୍ଲେଖ ରହିଛି । କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ର ପୁସ୍ତକରେ କଳିଙ୍ଗ ରାଜ୍ୟକୁ ବୟନ ଶିଳ୍ପର ଏକ ପ୍ରଧାନ କେନ୍ଦ୍ର ଭାବେ ଅଭିହିତ କରିଥିଲା ବେଳେ ମୋଗଲ ସମ୍ରାଟ ଆକବରଙ୍କ ରାଜସଭାରେ ଥିବା ଐତିହାସିକ ଆବୁଲ ଫାଜଲ ଆଇନ–ଇ–ଆକବରୀରେ ଓଡ଼ିଶାରେ ନାନା ପ୍ରକାରର ଫଳ ପ୍ରଚୁର ପରିମାଣରେ ଉତ୍ପାଦିତ ହେବା ଏବଂ ଏଠାରେ ପାନଚାଷ କରାଯାଉଥିବା ସମ୍ପର୍କରେ ଉଲ୍ଲେଖ କରିଥିଲେ । ଶାକ୍ୟ ମୁନିଙ୍କର ବୁଦ୍ଧତ୍ୱ ପ୍ରାପ୍ତିର ପ୍ରଥମ ଦିବସରେ ଉରୁବିଲ୍ୱଠାରେ ଓଡ଼ିଶାର ଦୁଇଜଣ ବଣିକ ତପସୁ ଓ ଭଲ୍ଲିକ ବୁଦ୍ଧଦେବଙ୍କୁ ମଧୁପିଷ୍ଟକ ଅର୍ପଣ କରି ତାଙ୍କର କ୍ଷୁଧା ନିବାରଣ କରିଥିବା ବିନୟ ପିଟକର ଏହି କାହାଣୀ ଇତିହାସ ବକ୍ଷରେ ସ୍ୱର୍ଣ୍ଣମୟ ଅଧ୍ୟାୟ ସୃଷ୍ଟି କରିଛି ।

ଉତ୍କଳର ନିଜର ସଂସ୍କୃତି ରହିଛି । ତାହା ଦେବ ସଂସ୍କୃତି । ଏହା ପ୍ରଧାନ ଆଭିମୁଖ୍ୟ – ବିଭେଦରେ ସମନ୍ୱୟ ସ୍ଥାପନ । ଏ ସମସ୍ତ ସମନ୍ୱୟର ପ୍ରାଣକେନ୍ଦ୍ର ଉତ୍କଳୀୟ ଜଗନ୍ନାଥ ସଂସ୍କୃତି । ଏହି ଭୂମିରେ ବୌଦ୍ଧ, ଜୈନ, ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ସୌର ଆଦି ମହାଭାରତୀୟ ଧର୍ମବାଦ ଓ ଆଦି ମହାଭାରତୀୟ ଧର୍ମବାଦ ତଥା ଆଦି ଦ୍ରାବିଡ଼ ଗୋଷ୍ଠୀଙ୍କ ଧର୍ମ ଧାରଣା ମଧ୍ୟରେ ଏକ ଅଭୂତପୂର୍ବ ସମନ୍ୱୟ ସ୍ଥାପନ ଦ୍ୱାରା ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇପାରିଛି ।

କିନ୍ତୁ କାଳର କୁଟିଳ ଗତିରେ କାଳକ୍ରମେ ଅତୀତ ଓଡ଼ିଶାର କୀର୍ତ୍ତିସମୂହ ଲୋପ ପାଇବାକୁ ବସିଛି । ଓଡ଼ିଶାର ଶେଷ ସ୍ୱାଧୀନ ନରପତି ମୁକୁନ୍ଦ ଦେବଙ୍କର ୧୫୬୮ ମସିହାରେ ପରାଜୟ ଏବଂ ନିଧନ ହେବା ପରେ ଓଡ଼ିଶାର ବିଶାଳ ଭୂଖଣ୍ଡ ସଂକୁଚିତ ହୋଇପଡ଼ିଥିଲା । ଦକ୍ଷିଣରେ ଚିଲିକା ପର୍ଯ୍ୟନ୍ତ ଗୋଲକୁଣ୍ଡା ସୁଲତାନ ଅଧିକାର କରି ବସିଥିବା ବେଳେ ପଶ୍ଚିମରେ ନିଜାମଙ୍କ ଦ୍ୱାରା ଅଧିକୃତ ହୋଇଥିଲା । ଉତ୍ତରରେ ସୁବର୍ଣ୍ଣରେଖାର ଅପରପାର୍ଶ୍ୱ ବଙ୍ଗ ନବାବଙ୍କ ଅଧୀନକୁ

ଚାଲିଯାଇଥିଲା ବେଳେ ମଧଭାଗର କିୟତ୍‌ଅଂଶ ଗଜପତି ମହାରାଜ ନାମକୁ ମାତ୍ର ଶାସନ କରୁଥିଲେ । ତେବେ ମରହଟ୍ଟା ଏବଂ ମୋଗଲମାନଙ୍କ ଆକ୍ରମଣରେ ଉତ୍କଳରେ ଧନଜୀବନ ସଂପୂର୍ଣ୍ଣ ଭାବେ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା ।

ଉତ୍ତରର ମୁଖ୍ୟ ଅଂଶ ବେଙ୍ଗଲ ଅଧୀନକୁ, ସମ୍ବଲପୁର ଏବଂ ଏହାର କିଛି ଅଂଶ ମଧ୍ୟପ୍ରଦେଶ ଅଧୀନକୁ ଚାଲିଯାଇଥିବା ବେଳେ ଗଞ୍ଜାମ ଓ ତା'ର ଆଖପାଖ ଅଞ୍ଚଳ ମାଡ୍ରାସ ପ୍ରେସିଡ଼େନ୍‌ସି ଅଧୀନକୁ ଚାଲିଯାଇଥିଲା । ପ୍ରକାରାନ୍ତେ କହିବାକୁ ଗଲେ ଓଡ଼ିଶା ଏକ ପ୍ରକାର ହସ୍ତପଦଶୂନ୍ୟ ବିକଳାଙ୍ଗ ଭାବେ ପଡ଼ି ରହିଲା । ଏହି ଅବସ୍ଥାରେ କଟାଘା'ରେ ଚୂନ ପ୍ରଲେପ ପରି ସମ୍ବଲପୁର କୋର୍ଟ କଚେରିରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ କରିବା ପାଇଁ ମଧ୍ୟପ୍ରଦେଶର ଚିଫ୍ କମିଶନର ୧୮୮୫ ମସିହା ଜାନୁଆରୀ ୧୫ ତାରିଖରେ ଏକ ଆଦେଶନାମା ଜାରି କଲେ । ଏହି ଆଦେଶ ବିରୁଦ୍ଧରେ ପ୍ରତିବାଦ କରି ଉତ୍କଳ ସଭାପକ୍ଷରୁ ଭାଇସରାୟ ଲର୍ଡ଼ ଏଲଜିନ୍‌ଙ୍କ ନିକଟକୁ ଏକ ସ୍ମାରକପତ୍ର ପ୍ରେରଣ କରାଯାଇଥିଲା ।

ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକାଠି କରାଇ ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ କେତେକ ବୁଦ୍ଧିଜୀବୀ, ସଂଗଠନ, ସମ୍ବାଦପତ୍ର ଆଦି ଚିନ୍ତା ପ୍ରକଟ କଲେ । ଏହିସବୁ କେତେକ ପ୍ରମୁଖ ସଂଗଠନମାନଙ୍କ ମଧ୍ୟରେ ଉତ୍କଳଭାଷା ଉନ୍ନତି ବିଧାୟିନୀ ସଭା ୧୮୬୬, ଉତ୍କଳୋଲ୍ଲାସିନୀ ସଭା ୧୮୬୯, ଉତ୍କଳ ଭାଷୋଦ୍ଦିପିନୀ ସଭା ୧୮୭୩ ଏବଂ ଉତ୍କଳସଭା ୧୮୭୭, ବାଲେଶ୍ୱର ଜାତୀୟ ସଭା, ବ୍ରହ୍ମପୁରର ଉତ୍କଳ ହିତୈଷିଣୀ ସମାଜ, କଟକର ଉତ୍କଳ ସଭା ଆଦି ଥିଲେ ଅନ୍ୟତମ । ସ୍ୱତନ୍ତ୍ର ଉତ୍କଳ ଗଠନ ଦାବିକୁ ଶାଣିତ କରିବା ପାଇଁ ଯେଉଁସବୁ ସମ୍ବାଦପତ୍ରମାନ ସ୍ୱର ଝଙ୍କୃତ କରୁଥିଲେ ସେମାନଙ୍କ ମଧ୍ୟରେ ବିଶ୍ୱନାଥ କରଙ୍କ ସଂପାଦିତ ଉତ୍କଳ ସାହିତ୍ୟ, କର୍ମବୀର ଗୌରୀଶଙ୍କର ସଂପାଦିତ ଉତ୍କଳ ଦୀପିକା ୧୮୬୬, ବାଲେଶ୍ୱର ସମ୍ବାଦ ବାହିକା ୧୮୬୮, ଉତ୍କଳଦର୍ପଣ ୧୮୭୩, ବାମଣ୍ଡାରୁ ପ୍ରକାଶିତ ସମ୍ବଲପୁର ହିତୈଷିଣୀ, ଗଞ୍ଜାମ ପାରଳା ଖେମୁଣ୍ଡିରୁ ପ୍ରକାଶ ପାଉଥିବା ଗଞ୍ଜାମ ନ୍ୟୁଜ ୧୮୯୬, କଟକରୁ ପ୍ରକାଶିତ ହେଉଥିବା ଓଡ଼ିଆ ନବସମ୍ବାଦ ୧୮୮୮ ଆଦି ଥିଲେ ଅନ୍ୟତମ ।

୧୮୭୦ ମସିହା ସେପ୍ଟେମ୍ବର ୨୮ ତାରିଖରେ ଘୁମୁସରଠାରେ ଓଡ଼ିଶା ମିଶ୍ରଣ ଦାବି ସମ୍ବନ୍ଧରେ ଅନୁଷ୍ଠିତ ସାଧାରଣ ସଭାକୁ ପ୍ରଥମ ଗୁରୁତ୍ୱପୂର୍ଣ୍ଣ ସଭା କହିଲେ ଅତ୍ୟୁକ୍ତି ହେବ ନାହିଁ । ବାଲେଶ୍ୱରରୁ ରାଜା ଶ୍ୟାମନନ୍ଦ ଦେ ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ ପ୍ରଥମେ ସ୍ୱର ଉତ୍ତୋଳନ କଲେ । ତାଙ୍କ ପରେ ତାଙ୍କ ପୁଅ ରାଜା ବୈକୁଣ୍ଠନାଥ ଦେ ୧୮୭୪ରେ ବଙ୍ଗର ଛୋଟଲାଟ୍‌ଙ୍କୁ ଏକ ସ୍ମାରକ ପ୍ରଦାନ କରିଥିଲେ । ପରେ ୧୯୦୨ ମସିହାରେ ବଡ଼ଲାଟ୍ ଲର୍ଡ଼ କର୍ଜନଙ୍କୁ ମଧ୍ୟ ଏକ ସ୍ମାରକପତ୍ର ପ୍ରଦାନ କରିଥିଲେ ।

୧୯୦୨ ମସିହାରେ ଗଞ୍ଜାମ ଜାତୀୟ ସମିତି ଆତ୍ମପ୍ରକାଶ କରିବା ପରେ ୧୯୦୨ ଅପ୍ରେଲ ୧୧ ଓ ୧୨ ତାରିଖ ଦୁଇଦିନ ଧରି ବ୍ରହ୍ମପୁରଠାରେ ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା ।

୧୯୦୩ ମସିହା ଡ଼ିସେମ୍ବର ୩୦ ଓ ୩୧ ଦୁଇଦିନ ଧରି କଟକର ଇଦ୍‌ଗା ପଡ଼ିଆଠାରେ ମୟୂରଭଂଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ପୌରୋହିତ୍ୱରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ୩୬୫ ଜଣ ପ୍ରତିନିଧି ଯୋଗଦାନ କରିଥିଲେ । ଏହି ଅଧିବେଶନରେ ଧନ୍ୟବାଦ ଅର୍ପଣ କରିବା ପରିପ୍ରେକ୍ଷୀରେ ଉତ୍କଳଗୌରବ ମଧୁସୂଦନ ଦାସ କହି ଉଠିଥିଲେ କି ଅନ୍ୟାନ୍ୟ ଉନ୍ନତି ଜାତିମାନଙ୍କ ସଙ୍ଗେ ତୁଳନା କରିବାକୁ ଗଲେ ଉତ୍କଳର ଅବସ୍ଥା ଅତି ଶୋଚନୀୟ । ଜନନୀ ସେବାରେ ଆତ୍ମଗର୍ବ, ସ୍ୱାର୍ଥପରତା ତ୍ୟାଗ କରିବାକୁ ପଡ଼ିବ । ମୁଁ ବା ତୁମ୍ଭେମାନେ କାଲି ଇହ ସଂସାରରୁ ଚାଲିଯିବା କିନ୍ତୁ ଜାତି ଅମର ଓ ଚିରଜୀବୀ । ସ୍ୱାର୍ଥତ୍ୟାଗ ଓ ପ୍ରେମ ଜାତୀୟ ଉନ୍ନତିର ପ୍ରଧାନ ସହାୟ ।

ଉତ୍କଳ ଗୌରବ ମଧୁସୂଦନ ଦାସ, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ୧୯୨୭ ମସିହା ନଭେମ୍ବର ୮ ତାରିଖରେ ପାଟନାଠାରେ ସାଇମନ କମିଶନଙ୍କୁ ସାକ୍ଷାତ

କରି ଓଡ଼ିଶାର ଦାବି ସଂପର୍କିତ ଏକ ସ୍ମାରକପତ୍ର ପ୍ରଦାନ କରିଥିଲେ । କମିଶନ ତାଙ୍କ ରିପୋର୍ଟରେ ଟିପ୍ପଣୀ ଦେଇ ଦର୍ଶାଇଥିଲେ, The province of Bihar and Odisha which was constituted in 1912 is the most artificial unit of all Indian provinces.

ସ୍ୱତନ୍ତ୍ର ସିନ୍ଧୁ ପ୍ରଦେଶ ଗଠନ ନିମନ୍ତେ ୧୯୨୮ ମସିହାରେ ମୁସଲିମ ଲିଗ୍ ତରଫରୁ କରାଯାଇଥିବା ଦାବି ପରିପ୍ରେକ୍ଷୀରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଦାବି କରୁଥିବା ନେତୃମଣ୍ଡଳୀ କିଛି ମାତ୍ରାରେ ଆଶାବାଦୀ ହୋଇପଡ଼ିଥିଲେ । କିନ୍ତୁ ୧୯୩୦ ମସିହା ନଭେମ୍ବର ମାସ ୧୨ ତାରିଖରୁ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲଟେବୁଲ ବୈଠକରେ ପ୍ରସ୍ତୁତ ଚିଠା ପ୍ରସ୍ତାବରେ ମୁସଲିମ ଲିଗ ପକ୍ଷରୁ ସ୍ୱତନ୍ତ୍ର ସିନ୍ଧୁ ପ୍ରଦେଶ ଗଠନ ସଂପର୍କରେ ଦରଜ କରାଯାଇଥିବା ବେଳେ ସ୍ୱତନ୍ତ୍ର ଓଡ଼ିଶା ଗଠନ ସମ୍ପର୍କରେ କୌଣସି ପ୍ରସ୍ତାବ ନଥିବାରୁ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବ୍ୟସ୍ତ ଏବଂ ବିବ୍ରତ ହୋଇ ପଡ଼ିଲେ । ତେବେ ୧୯୩୧ ମସିହା ଜାନୁଆରୀ ୬ ତାରିଖ ଦିନ ଲଣ୍ଡନଠାରେ ଅନୁଷ୍ଠିତ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଯୋଗଦେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ପ୍ରସ୍ତାବ ଆଗତ କରିଥିଲେ । ଏହି ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହେବା ପରେ ୧୯୩୧ ମସିହା ଜାନୁଆରୀ ୧୬ ତାରିଖରେ ସେକ୍ରେଟାରୀ ଅଫ୍ ଷ୍ଟେଟ ସାର୍ ସାମୁଏଲ ହୋର ଭାରତରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିବା ପାଇଁ ଘୋଷଣା କରିବା ସହିତ ସୀମା ନିର୍ଦ୍ଧାରଣ ନିମନ୍ତେ ସାର୍ ଓଡ଼ନେଲଙ୍କ ଅଧ୍ୟକ୍ଷତାରେ ଏକ ସ୍ୱତନ୍ତ୍ର କମିଟି ଗଠନ କଥା ଘୋଷଣା କଲେ । ତତ୍କାଳୀନ ଭାରତ ସରକାରଙ୍କର ଏଫ ୧୨/ଭି.ଆଇ/ ୩୧ ନମ୍ବର ପ୍ରସ୍ତାବ ଅନୁଯାୟୀ ଏହି କମିଟି ଗଠନ କରାଯାଇଥିଲା । ଏହି କମିଟିରେ ବମ୍ବେର ଏଚ୍.ଏନ୍.ମେହେଟ୍ଟା, ଆସାମର ତରୁଣରାମ ଫୁକାନ ସଦସ୍ୟ ରହିଥିବା ବେଳେ ଓଡ଼ିଆମାନଙ୍କ ପକ୍ଷରୁ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ସରକାରଙ୍କ ପକ୍ଷରୁ ମନୋନୀତ ସଭ୍ୟ ଭାବେ ତେଲୁଗୁମାନଙ୍କ ପ୍ରତିନିଧିରୂପେ ରାୟବାହାଦୁର ସିଭିଏସ୍ ନରସିଂହରାଜୁ ଏବଂ ବିହାରୀମାନଙ୍କ ପକ୍ଷରୁ ମିଷ୍ଟର ସଚ୍ଚିଦାନନ୍ଦ ସିହ୍ନା ବାର.ଏଟ୍.ଲ ସଭ୍ୟଭାବେ ନିଯୁକ୍ତ ପାଇଲେ । କିନ୍ତୁ ଅତ୍ୟନ୍ତ ବିଡ଼ମ୍ବନାର କଥା ଏହି ଯେ ପାରଳା ମହାରାଜାଙ୍କ ନେତୃତ୍ୱରେ ବିଭିନ୍ନ ଜମିଦାରୀ ଓ ତାଲୁକମାନଙ୍କର ପ୍ରତିନିଧିମାନେ ଦର୍ଶାଇଥିବା ଯୁକ୍ତିକୁ ଅଣଦେଖା କରି ଓଡ଼ନେଲ ଖାମଖିଆଲ ଭାବେ ମାନ୍ଦ୍ରାଜର ପ୍ରାଦେଶିକ ସରକାରଙ୍କ ପକ୍ଷରୁ ନିଯୁକ୍ତ ହୋଇ ସାକ୍ଷ୍ୟ ଦେବାକୁ ଆସିଥିବା ସେନସେସ୍ ଅଧ୍ୟକ୍ଷ ମି.ୟିଟିସିଙ୍କଠାରୁ ସାକ୍ଷ୍ୟ ପ୍ରମାଣ ଗ୍ରହଣ କରି ସେ ଦାଖଲ କରିଥିବା ଭାଷାଭିତ୍ତିକ ମାନଚିତ୍ରକୁ ପ୍ରାଧାନ୍ୟ ଦେଇଥିଲେ ଏବଂ ଗଞ୍ଜାମର ସୀମା ସରହଦ କାର୍ଯ୍ୟ ଶେଷ କରି ୧୯୩୨ ମସିହାରେ ଭାରତ ସରକାରଙ୍କ ନିକଟରେ ତାଙ୍କ ରିପୋର୍ଟ ଦାଖଲ କରିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ସୁଦୂର ଇଂଲଣ୍ଡରେ ପ୍ରବଳ ପରାକ୍ରମୀ ଇଂରେଜ ଶାସକଙ୍କ ନିକଟରେ ବଳିଷ୍ଠ ଅକାଟ୍ୟ ଯୁକ୍ତି ଉପସ୍ଥାପନ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ସକ୍ଷମ ହୋଇପାରିଥିଲେ । ଗଜପତି ମହାରାଜାଙ୍କୁ କଟକ ଟାଉନ ହଲରେ ୧୯୩୩ ମସିହା ଫେବୃଆରୀ ୧୨ ତାରିଖ ଦିନ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିବା ଅବସରରେ ମଧୁବାବୁ ଭାବୋଚ୍ଛ୍ୱାସ ହୋଇ ଉଠିଲେ ଆମେ ବହୁକାଳ ହେଲା ଦରଖାସ୍ତ, ସ୍ମାରକପତ୍ର, ପ୍ରସ୍ତାବ ଓ ପ୍ରତିନିଧିତ୍ୱ ମାଧ୍ୟମରେ ଆମ ଦାବି କରିଆସୁଥିଲୁ । କିନ୍ତୁ ଇଂରେଜ ସରକାରଙ୍କ ସଚିବ ସାର୍ ସାମୁଏଲ ହୋର ଏବଂ ଗୋଲଟେବୁଲ ବୈଠକର ଅନ୍ୟ ସଭ୍ୟମାନଙ୍କ ଉପରେ ପାରଳା ମହାରାଜାଙ୍କ ବ୍ୟକ୍ତିଗତ ପ୍ରଭାବ ଯୋଗୁଁ ଆଶ୍ଚର୍ଯ୍ୟଜନକ ଫଳ ପଡ଼ିଥିଲା । ଆମେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାର ଘୋଷଣା ଏବେ ପାଇଲୁ ।

ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଯୋଗଦାନ କରିଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବଂଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ବ୍ୟାସକବି ଫକିର ମୋହନ ସେନାପତି, କବିବର ରାଧାନାଥ ରାୟ, ସ୍ୱଭାବକବି ଗଙ୍ଗାଧର ମେହେର, ପଲ୍ଲୀକବି ନନ୍ଦକିଶୋର ବଳ, ଭକ୍ତକବି ମଧୁସୂଦନ ରାଓ, କର୍ମବୀର ଗୌରୀଶଙ୍କର ରାୟ, ବାଗ୍ମୀ ବିଶ୍ୱନାଥ କର, ନାଟ୍ୟକାର ରାମଶଙ୍କର, ଗୋପାଳ ଚନ୍ଦ୍ର

ପ୍ରହରାଜ, ପ୍ରଚାରକ ଅନନ୍ତ ମିଶ୍ର, ନୀଳମଣି ବିଦ୍ୟାରତ୍ନ, ବାଲେଶ୍ୱର ଜମିଦାର ବୈକୁଣ୍ଠ ନାଥ ଦେ, ବାମଣ୍ଡା ରାଜା ସାହେବ ସାର୍ ବାସୁଦେବ ସୁଢଳଦେବ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ମୟୂରଭଂଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ, କନିକା ରାଜା ଆର୍.ଏନ୍.ଭଞ୍ଜଦେଓ, କେନ୍ଦୁଝର ରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେଓ, ଆଠଗଡ଼ର ରାଜା ବିଶ୍ୱନାଥ ବେବର୍ତ୍ତା ଏବଂ ତାଳଚେର ରାଜା କିଶୋର ଚନ୍ଦ୍ର ହରିଚନ୍ଦନ ଆଦି ଥିଲେ ଅନ୍ୟତମ।

ଜାତିପ୍ରାଣ ମଧୁବାବୁ, ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ସମେତ ଅନ୍ୟାନ୍ୟ ବରପୁତ୍ରମାନଙ୍କର ନିଷ୍ଠାପର ଉଦ୍ୟମ ଯୋଗୁଁ ଉତ୍କଳ ପ୍ରଦେଶ ସ୍ୱତନ୍ତ୍ର ପ୍ରଦେଶ ଭାବେ ୧୯୩୬ ମସିହା ଅପ୍ରେଲ ପହିଲା ଦିନ ଜନ୍ମଲାଭ କରିଥିଲା। ୧୯୬୧ ମସିହାରେ ସ୍ୱତନ୍ତ୍ର ଉତ୍କଳ ଗଠନର ରଜତ ଜୟନ୍ତୀ ପାଳନ ପରିପ୍ରେକ୍ଷୀରେ ପ୍ରତିବର୍ଷ ଅପ୍ରେଲ ପହିଲା ଦିନ ରାଜ୍ୟର ସମସ୍ତ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟମାନଙ୍କରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିବସ ଉତ୍ସବ ପାଳନ କରିବା ପାଇଁ ତତ୍କାଳୀନ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଯଶୋବନ୍ତ ନାରାୟଣ ସୁଖଠଣ କର ଆଦେଶ ପ୍ରଦାନ କରିଥିଲେ। ଶ୍ରୀମତୀ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳ ଇସ୍ତଫା ପ୍ରଦାନ କରିବାରୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ପ୍ରଚଳନ କରାଗଲା। ଏହି ସମୟରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ଭାବେ ଅବସ୍ଥାପିତ ଡ଼କ୍ଟର ଏସ୍.ଏସ୍ ଆନ୍‌ସାରୀ ପ୍ରତିବର୍ଷ ଅପ୍ରେଲ ପହିଲାକୁ ସରକାରୀ ଛୁଟି ଦିବସ ଭାବେ ଘୋଷଣା କଲେ ।

ଓଡ଼ିଶାର ଜାତୀୟ ଜୀବନର ସ୍ରଷ୍ଟା ତଥା ଭବିଷ୍ୟତର ଦ୍ରଷ୍ଟା କୁଳବୃଦ୍ଧ ମଧୁସୂଦନ ଦାସ ଜାତିପ୍ରେମ ବହ୍ନିକୁ ପ୍ରଜ୍ୱଳିତ କରି ସ୍ୱାର୍ଥକୁ ଆହୂତ ଦେଲେ ସମନ୍ୱିତ ନେତୃତ୍ୱ ବଳରେ ଲକ୍ଷ୍ୟ ସାଧିତ ହୋଇପାରିବ ବୋଲି ଯେଉଁ ଆହ୍ୱାନ ଦେଇଥିଲେ, ତାହାର ପ୍ରାସଙ୍ଗିକତା ଯଥେଷ୍ଟ ଉପଲବ୍ଧ ହେଉଛି।

ଆଡ଼ଭୋକେଟ
ସା/ପୋ: ଖଣ୍ଡପଡ଼ା, ଜି–ନୟାଗଡ଼
ପିନ୍–୭୫୨୦୭୭

# ଓଡ଼ିଆ ଆମ ପରିଚୟ

**ସରୋଜ ରଞ୍ଜନ ପଟ୍ଟନାୟକ**

ଆମେ ଓଡ଼ିଶାର ଓଡ଼ିଆ ପୁଅରେ ଓଡ଼ିଆଣୀ ଆମ ମାଆ ।
ନଈ ବିଲ ବଣ ଆମ୍ବ ତୋଟା ଭରା
ହସି ଉଠେ ଆମ ଗାଁ ।
ଓଡ଼ିଆ ପଢିବା ଓଡ଼ିଆ ଲେଖିବା ଏଇ ଆମ ପରିଚୟ ।
ପାଠ ପଢିବି ନାଆଁ ରଖିବି ଏକଥା ମନରେ କୁହ ।
ପୂର୍ବରୁ ଓଡ଼ିଶା ପରାଧୀନ ଥିଲା
ଭାଗ ଭାଗ ଥିଲା ରହି
ଅପ୍ରେଲ ପହିଲା ୧୯୩୬ ସାଲରେ ସ୍ୱତନ୍ତ୍ର ହୋଇଲା ଯାଇ
ଆମେ ଏ ମାଟି ମା'ର ସନ୍ତାନ ଏ କଥା କି ମନେ ନାହିଁ ?
ଆସ ସର୍ବେ ମିଶି ସ୍ମରଣ କରିବା
ଏହି ଦିନଟିକୁ ପାଇ ।
ସେହିଦିନଟିକୁ ଉଜ୍ଜୀବିତ ପାଇଁ ଉତ୍ସବ ହୁଏ ପାଳନ
ଅପ୍ରେଲ ପହିଲା ଉତ୍କଳ ଦିବସ ଏକଥା ମନରେ ଜାଣ
ପଢିବା ଓଡ଼ିଆ ଲେଖିବା ଓଡ଼ିଆ
କହିବା ଓଡ଼ିଆ ଭାଇ
ଆମ ମାଟି ପାଣି ମା' ମାତୃଭାଷା ସଦା ରଖିବା ବଜାଇ ।

କ୍ୱାର୍ଟର ନଂ– ୨ଆର୍ ଏଫ୍– ୪/୧
କୋ: ଅପରେଟିଭ୍ ହାଉସିଂ କଲୋନୀ
ଖାରବେଳନଗର, ଭୁବନେଶ୍ୱର–୧

# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଶିଶୁ ଗୀତିରେ ଉତ୍କଳୀୟ ସଂପ୍ରୀତି

**ଡକ୍ଟର ବାନାମ୍ବର ପୃଷ୍ଟି**

ଶିଶୁ–ସାହିତ୍ୟ ହିଁ ଶିଶୁ ଜୀବନ ନିର୍ମାଣର ଏକ ପ୍ରମୁଖ ନାନ୍ଦନିକ କଳାଶକ୍ତି । ପରିବାର, ସମାଜ, ରାଷ୍ଟ୍ର ଓ ବିଶ୍ୱର ଉତ୍ତମ ସ୍ଥିତି ନିମିତ୍ତ ଏହାର ଭୂମିକା ଯୁଗଯୁଗାନ୍ତରେ ସ୍ୱୀକୃତ । ଏହା ଶିଶୁ ମନରେ ଆବଶ୍ୟକ ତଥ୍ୟ, ଚେତନା ଓ ଚିତ୍ତରଂଜନଗତ ପରିପୋଷକ ରୂପେ ମନୋବିଜ୍ଞାନୀ ସମାଜ ଦ୍ୱାରା ସ୍ୱୀକୃତିପ୍ରାପ୍ତ ଏକ ବଳିଷ୍ଠ ସାରସ୍ୱତ ବିଭବ । ଶିଶୁର କୋମଳ ମନରେ ଏହି ବିଭବ ନୂଆ ନୂଆ ସଂସ୍କାର ସୃଷ୍ଟି କରିଥାଏ । ଏକ ସୁସ୍ଥ ଓ ସମୁଜ୍ଜ୍ୱଳ ବ୍ୟକ୍ତି ଗଠନରେ ଏହାର ଉଦ୍‌ବୋଧନୀ ଓ ବିନୋଦିନୀ ଶକ୍ତି ଦ୍ୱୟ ଅମିତ ବିକ୍ରମରେ ଶିଶୁ ମାନସରେ ପ୍ରଭାବ ବିସ୍ତାର କରିଥାଆନ୍ତି । ଶିଶୁର ଜ୍ଞାନଗତ, ଆବେଗଗତ ଓ କ୍ରିୟାଗତ ବିକାଶ କ୍ଷେତ୍ରରେ ଶିଶୁ–ସାହିତ୍ୟର ଯାଦୁକରୀ ଶକ୍ତି କିପରି ଅମିତ, ତାହା ଅନୁଭବ ସାପେକ୍ଷ ବିଷୟ ବୋଲି ମତବ୍ୟକ୍ତ କରାଯାଇପାରେ ।

ପ୍ରାଚୀନ ଭାରତୀୟ ସଂସ୍କୃତ ସାହିତ୍ୟ ସମ୍ଭାର ଅନ୍ତର୍ଭୁକ୍ତ ନାରାୟଣ ବିରଚିତ 'ହିତୋପଦେଶ' ଗ୍ରନ୍ଥରେ ଶିଶୁର ମନ ଓ ରୁଚି ସଂପର୍କିତ ମତବ୍ୟକ୍ତ କରାଯାଇଅଛି –

''ଯନ୍ନବେ ଭାଜନେ ଲଗ୍ନଃ ସଂସ୍କାରୋଦ୍ଧନ୍ୟଥା ଭବେତ୍
କଥା ଛଳେନ ବାଳାନାଂ ନୀତି ସ୍ତଦିହ କଥ୍ୟତେ ।''

(ଅର୍ଥାତ୍ ଯେପରି ନୂତନ ମାଟିପାତ୍ରରେ ରେଖାଟିଏ ଅଙ୍କିତ ହୋଇଥିଲେ, ତାହା ତା'ର ଭାଙ୍ଗିବା ପର୍ଯ୍ୟନ୍ତ ରହିଥାଏ, ତଦନୁରୂପ ଗଳ୍ପକଥନ ରୀତିରେ ଶିଶୁ ମନରେ ଯେଉଁ ଅପୂର୍ବ ସଂସାର ସାଧିତ ହୋଇଥାଏ, ତାହା ତା'ପକ୍ଷରେ ଆଜୀବନ ଲିପିବଦ୍ଧ ହୋଇ ରହିଯାଏ ।)

ତ୍ରୈକାଳିକ ବିଭୂତି ଧାରଣ କରି ଧରାବତରଣ କରିଥିବା ନିଷ୍ପାପ ଶିଶୁଟିଏ ସଦାସର୍ବଦା ଥାଏ ହର୍ଷୋତ୍‌ଫୁଲ୍ଲ ଓ ଚଳଚଞ୍ଚଳ । ତା'ର ଅନାବିଳ ମନୋଭୂମିରେ ବହୁବିଧ ମହାନ୍ ଚେତନାର ବୀଜବପନ ନିମିତ୍ତ ପ୍ରାପ୍ତ ବୟସ୍କମାନଙ୍କର ଗୁରୁଦାୟିତ୍ୱ ରହିଥାଏ । ତା'ର ଜନ୍ମବାର୍ଷିକୀ ପାଳନ ଅବସରରେ ତାକୁ ନିର୍ଜୀବ ପ୍ଲାଷ୍ଟିକ୍ କଣ୍ଢେଇଟିଏ ଉପହାର ଆକାରରେ ଧରାଇ ନ ଦେଇ ''ସଦାସର୍ବଦା ଓ ସବୁ ପରିସ୍ଥିତିରେ କିଛି ଶିଖିବା ଏବଂ ଏହି ଶିଖିବାକୁ ଆଗ୍ରହୀ ହେବା ବିଷୟ ପିଲାଙ୍କୁ ଶିକ୍ଷାଦେବା ହେଉଛି ପିଲାଙ୍କ ପାଇଁ ସବୁଠାରୁ ମୂଲ୍ୟବାନ ଉପହାର''– ଏହା ମହାନ୍ ଯୋଗୀ ଅରବିନ୍ଦ ମତବ୍ୟକ୍ତ କରିଛନ୍ତି ।

ଶିଶୁର ମନରେ ଧୈର୍ଯ୍ୟ, କ୍ଷମା, ଶୁଚି, ସଂଯମ, ମେଧାଶକ୍ତି, ବିଦ୍ୟାନୁରକ୍ତି, ସତ୍ୟପ୍ରାଣତା, କ୍ରୋଧହୀନତା, ଏକାଗ୍ରତା, ନ୍ୟାୟଜ୍ଞାନ, ସହନଶୀଳତା, ଅଧ୍ୟବସାୟ ମନୋବୃତ୍ତି, ସମଦର୍ଶିତା, ନିର୍ଭୀକତା, ସଂଶୟହୀନତା, ପ୍ରସନ୍ନତା, ସ୍ୱଜନପ୍ରୀତି, ଦେଶାତ୍ମବୋଧ ଓ ବିଶ୍ୱପ୍ରୀତି ପ୍ରଭୃତି ଚେତନାର ଉଦ୍ଭବ କ୍ଷେତ୍ରରେ ଶିଶୁ ଶିକ୍ଷାର ଏକ ପ୍ରମୁଖ ଅଙ୍ଗ ରୂପେ ଶିଶୁ–ସାହିତ୍ୟର ବଳିଷ୍ଠ ଭୂମିକାକୁ ସ୍ଥାନ–କାଳ–ପାତ୍ର ନିର୍ବିଶେଷରେ ବିଦ୍ୟାର୍ଣ୍ଣବମାନଙ୍କ ଦ୍ୱାରା ଗ୍ରହଣ କରାଯାଇଅଛି ।

ସାମ୍ପ୍ରତିକ ସମୟରେ କ୍ରମଶଃ ସାମାଜିକ ଓ ସାଂସ୍କୃତିକ ଅଭିରୁଚିଗତ ବିତୃଷ୍ଣା ବୃଦ୍ଧି ଘଟିବା ବେଳେ ସୁରୁଚି ପ୍ରତି ଆକର୍ଷିତ ହେଉଛି ଶିଶୁ–ସମାଜ । ହାତରେ ଖେଳନାବନ୍ଧୁକ, ଆଖି ଆଗରେ ଇଣ୍ଟରନେଟ୍‌ର ଉଡ଼ନ୍ତା କାର୍ ଆଜି ତା' ପାଇଁ ହୋଇଯାଇଛି ଗୋଟିଏ ଗୋଟିଏ ଅନୁପମ ସ୍ୱର୍ଗୀୟ ସମ୍ପଦ । ଅଭିଭାବକ–ନିର୍ଦ୍ଦେଶିତ ଦୈନନ୍ଦିନ ଜୀବନର ଅଧ୍ୟୟନ, କୃତ୍ରିମ ସୌଜନ୍ୟବୋଧ

ପ୍ରକାଶ ଓ ବୌଦ୍ଧିକ ବିହୀନ କସରତ୍ ଭିତରେ ସେ ହୋଇଯାଇଛି ରୋବଟ୍‌ର ଏକ ପ୍ରତିରୂପ। ପଡ଼ୋଶୀର ଦୁଃଖ-ନୈରାଶ୍ୟରେ ସେ ପୂର୍ବଭଳି ସମବେଦନଶୀଳ ହୋଇଉଠୁନାହିଁ। ଜୀବନ ତା'ପାଇଁ ପାଲଟିଯାଇଛି ଚଳଚ୍ଚିତ୍ରର ଦୃଶ୍ୟ ସଦୃଶ। ଏହି ପରିପ୍ରେକ୍ଷୀରେ ତା'ର ଜୀବନ ବୃକ୍ଷକୁ ପୁନର୍ଜୀବିତ, କୁସୁମିତ ଓ ଫଳପ୍ରଦ କରିବା ପାଇଁ ଏକ ପ୍ରମୁଖ ଅବଲମ୍ବନ ରୂପେ ଶିଶୁ-ସାହିତ୍ୟର ଅମୋଘ ଶକ୍ତି ସମ୍ବନ୍ଧରେ ବିଚାର କରାଯାଇପାରେ।

ଓଡ଼ିଆ ଶିଶୁ-ସାହିତ୍ୟର ମହାପ୍ରବାହରେ ସମୟକ୍ରମେ ବିବିଧ ଚେତନାର ପ୍ରତିଫଳନ ଘଟିଛି। ଶିଶୁ-ସମାଜ ମନରେ ଭୂମି-ସଂପ୍ରୀତିର ବାର୍ତ୍ତା ପ୍ରଚାର କରି ତା'ର ଜୀବନବୋଧକୁ କମନୀୟ ଓ ଉଚ୍ଛ୍ୱାସମୟ କରିବାରେ ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀର ମୋହନ, ପଲ୍ଲିକବି ନନ୍ଦକିଶୋର, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ମିଶ୍ର, ବାଳକୃଷ୍ଣ କର, କାନ୍ତକବି ଲକ୍ଷ୍ମୀକାନ୍ତ, ଜାତୀୟ କବି ବୀରକିଶୋର ପ୍ରମୁଖ ଶିଶୁ-ସାହିତ୍ୟିକଙ୍କ ଅବଦାନ ଥିଲା ଅତୁଳନୀୟ। ସ୍ୱାଧୀନତା ପୂର୍ବବର୍ତ୍ତୀ ଉତ୍କଳର ସାରସ୍ୱତ ସମୃଦ୍ଧି ପଥରେ ଉପରିଲିଖିତ ସ୍ରଷ୍ଟାମାନଙ୍କର ଶିଶୁ-ସାହିତ୍ୟଗତ ଅନୁରକ୍ତି ଅଦ୍ୟାବଧି ଆଲୋଚ୍ୟ ବିଷୟ ରୂପେ ରହିଅଛି। ଦେଶାତ୍ମବୋଧର ଦୀପାଳୀ ଜାଳିଦେଇ ଉତ୍କଳୀୟ ଶିଶୁ-ସମାଜର ମନରେ ସ୍ୱକୀୟ ଜନ୍ମଭୂମିର ପ୍ରତି ପୁଣ୍ୟବିଭବର ସୌରଭ ସମ୍ପର୍କିତ ତଥ୍ୟକୁ ଅପୂର୍ବ ଢଙ୍ଗରେ ପ୍ରକାଶ କରିପାରିଛନ୍ତି ଏହି ଶିଶୁ ସାହିତ୍ୟିକମାନେ। ଯେଉଁ ଭୂମିରେ ଶିଶୁ-ସମାଜର ଆତ୍ମିକ ବିକାଶ ଘଟେ, ତାହାର ସାମାଜିକ, ସାଂସ୍କୃତିକ ଓ ଐତିହାସିକ ପୃଷ୍ଠଭୂମି ସମ୍ପର୍କରେ ସଚେତନ ରହି ଏହି ସ୍ରଷ୍ଟାମାନେ ସରଳ ସାବଲୀଳ ଭାଷାରେ ଶିଶୁ-ଗୀତିମାନ ସୃଷ୍ଟି କରି ଶିଶୁ ଜଗତର ପ୍ରିୟଭାଜନ ହୋଇପାରିଛନ୍ତି । ସମୟ ଅତିକ୍ରାନ୍ତ ହୋଇଥିଲେ ବି ସେହି ପ୍ରୟାସ-ପ୍ରସୂତ ଶିଶୁ-ଗୀତି ସମ୍ଭାର ଅଦ୍ୟାବଧି ଶାସ୍ତ୍ରୀୟ ମାନ୍ୟତାପ୍ରାପ୍ତ ଓଡ଼ିଆ ଭାଷାର ପରିଚୟାତ୍ମକ ବିଭବ ରୂପେ ଦେଶାତ୍ମବୋଧ ରୂପକ ବୀଜବପନ କରିପାରିଛି।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଶିଶୁ-କବିତାରେ ଉତ୍କଳ-ସଂପ୍ରୀତିବୋଧ ପରିବେଷଣ କରିବାରେ ଯେଉଁ ଯୋଗଜନ୍ମା ତଥା ଧୁରୀଣ ସାହିତ୍ୟିକମାନେ ସ୍ୱତଃପ୍ରବୃତ୍ତ ରୂପେ ଲେଖନୀ ଚାଳନା କରି ଉତ୍କଳୀୟ ଶିଶୁ-ସମାଜକୁ ଉତ୍କଳ-ମାତାର ଐତିହ୍ୟ ଓ ପରମ୍ପରା ପ୍ରତି ସଚେତନ କରିବା ପାଇଁ ସର୍ବତୋମୁଖ ହୋଇଉଠିଛନ୍ତି, ସେମାନଙ୍କ ମଧ୍ୟରୁ ଶିଶୁ-ସାହିତ୍ୟିକ ରାମକୃଷ୍ଣ ନନ୍ଦ, ଉପେନ୍ଦ୍ର ତ୍ରିପାଠୀ, ଜଗନ୍ନାଥ ମହାନ୍ତି, କୃଷ୍ଣଚରଣ ବେହେରା, ନଟବର ସାହୁ ଓ ବୀରବର ଓଡା ପ୍ରମୁଖଙ୍କ ନାମ ସୁବିଦିତ।

ଶିଶୁ-ସାହିତ୍ୟିକ ରାମକୃଷ୍ଣ ନନ୍ଦଙ୍କ ଶିଶୁ-ଗୀତିଗୁଚ୍ଛ ମଧ୍ୟରେ ଉତ୍କଳ ପ୍ରଦେଶର ପ୍ରତି ଧୂଳିକଣା ପରିଗଣିତ ହୋଇଛି ଦିବ୍ୟ ବିଭୂତିରେ। ମୋହାନୁବନ୍ଧର ସ୍ୱର-ପ୍ରବାହରେ ଶିଶୁ ମନକୁ ଭୂମିପ୍ରୀତିର ସ୍ୱାଦ ଆସ୍ୱାଦନ କରିବାକୁ ସ୍ରଷ୍ଟା ପ୍ରବର୍ତ୍ତାଇଛନ୍ତି। ବିଦ୍ୟାଳୟ ଶିଶୁ-ଜୀବନର ସ୍ୱର୍ଗଭୂମି। ଯେଉଁଠି ସାଧନାର ଅୟମାରମ୍ଭ, ସେଇଟି ସମାପ୍ତ ହୁଏ ଶୈଶବର ମନ୍ତ୍ରପାଠ। ରାମକୃଷ୍ଣଙ୍କ ଅନୁଜ୍ଞାସୂଚକ ପଦ-ସଂହତି ଶିଶୁ ମନରେ ଉତ୍କଳପ୍ରୀତିର ଉଚ୍ଛ୍ୱାସ ସୃଷ୍ଟି କରିଥାଏ।

'ଏଇ ଦେଶର ପାଣିପବନେ ଶରୀର ହେଲା ଗଢ଼ା,
ଏଇ ଦେଶର ଚାଟଶାଳୀରେ ଶିଖିଲୁ ପାଠପଢ଼ା।
ଏଇ ଦେଶର ସେବାରେ ଆମ ଜୀବନ ହେଉ ଶେଷ,
ଓଡ଼ିଆ ଆମେ, ଓଡ଼ିଆ ଆମେ, ଓଡ଼ିଶା ଆମ ଦେଶ।''
('ଓଡ଼ିଶା ମୋର ଦେଶ', ଝୁମୁକା, ରାମକୃଷ୍ଣ ନନ୍ଦ)

ଶିଶୁ-ସାହିତ୍ୟିକ ଉପେନ୍ଦ୍ର ତ୍ରିପାଠୀଙ୍କ ଶିଶୁ-କବିତା ବିଭବରେ ଉତ୍କଳର ଯଶଗୌରବ, ବୀରତ୍ୱ, ଇଚ୍ଛାଶକ୍ତି, ସମର ନିପୁଣତା ଓ ଐକାନ୍ତିକ ମୁକ୍ତିନିଷ୍ଠା ପ୍ରଭୃତି ପ୍ରତିଫଳିତ। ଉତ୍କଳୀୟର ସମର ପିପାସା ଓ ଅନତିକ୍ରମଣୀୟ ଅଭିଯାନ-ଚାତୁର୍ଯ୍ୟ ପ୍ରଭୃତି ଗୁଣକୁ ସ୍ମରଣ କରାଇ ସାମ୍ପ୍ରତିକ ଯୁଗର ଶିଶୁ-ସମାଜକୁ ସେଥିପ୍ରତି ସଚେତନ କରିବାର ପ୍ରୟାସ କରିଛନ୍ତି ଶିଶୁ ସାହିତ୍ୟିକ ଉପେନ୍ଦ୍ର।

'ମୋ ଭାଇଟି ଓଡ଼ିଆ ଥିଲାରେ ଦିନେ ବଢ଼ିଆ
ମଣୁଥିଲା ସେ ରଣଭୂଇଁକୁ ପିଲାଙ୍କ ଖେଳ ପଡ଼ିଆ।
ବୀରମଦରେ ଗାଇଲା ଗୀତ ଯେବେ ମୋ ଭାଇ ଫୁଲାଇ ଛାତି
ଥରାଇଦେଲା କୋଟି ଅରାତି କରାଇ ହଡ଼ବଡ଼ିଆ
ମୋ ଭାଇଟି ଓଡ଼ିଆ।'
('ମୋ ଭାଇଟି ଓଡ଼ିଆ', ଦେଶ ଓ ଦଶ,
ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ)

ଶିଶୁ–ସାହିତ୍ୟିକ କୃଷ୍ଣଚରଣ ବେହେରାଙ୍କ ଶିଶୁ–କବିତାଗୁଚ୍ଛରେ ଉତ୍କଳମାଟିର ସୌରଭ ଓ ମହିମାମୟ ପ୍ରକୀର୍ତ୍ତି ପ୍ରକଟିତ । ଏଇ ମାଟିର ଭୁରୁଭୁରୁ ବାସ୍ନାରେ ମନ ହୋଇଉଠେ ଜୀବନ–କୈନ୍ଦ୍ରିକ । ପ୍ରାଣର ପସରା ଏହି ପୁଣ୍ୟମାଟି । ଶିଶୁକୁ ମାଟିମନସ୍କ ଓ ସଂସ୍କୃତି ପ୍ରବଣ କରିବାର ପ୍ରବଣତାରେ କବି କୃଷ୍ଣଚରଣଙ୍କ ଏକନିଷ୍ଠ ପ୍ରୟାସ ଲକ୍ଷଣୀୟ ।

'ମାଟି ସେଇ ମାଟି ଝଟକି ଉଠେ ସୁନାଫସଲ
କିଆରି କୋଣେ ଜାଳେ ମଶାଲ,
ଲକ୍ଷିମୀ ଆସେ ମଣିଷ ଯେବେ ଫସଲ ଆଣେ କାଟି ।
ମାଟି ମମତା ଅତୁଳ ଦାନ ଜଗତେ ନାହିଁ ତାହା ସମାନ,
ମାଆର ଋଣ ଶୁଝିବ କିଏ ରଖିଛି ଜୀବନଟି,
ମାଆଟି ସେଇ ମାଟି ।''
('ମାଟି ମାଆଟି', କୃଷ୍ଣଚରଣ ବେହେରା)

ଶିଶୁ–ସାହିତ୍ୟିକ ନଟବର ସାହୁଙ୍କ ଶିଶୁ–କବିତାଗୁଡ଼ିକରେ ଜୀବନର ମର୍ମବାଣୀ ଉଚ୍ଚାରିତ । ସ୍ୱାଧୀନତା ପାଇଁ ମଣିଷ କାହିଁକି, ପକ୍ଷୀଟିଏ ମଧ୍ୟ ବ୍ୟାକୁଳତା ପ୍ରକାଶ କରେ । ପରାଧୀନ ଜୀବର ସକଳ ସୌଖ୍ୟ ମୂଲ୍ୟହୀନ । ମାଟିର ସ୍ୱପ୍ନ ଭିତରେ ଦୁଃଖ–ଦହନ ଆଣେ ପରତନ୍ତ୍ରତା । ସୁତରାଂ ଜନ୍ମଭୂମିର ସୁରକ୍ଷା ଓ ଯଥାର୍ଥ ବିକାଶ ପରିକଳ୍ପେ ସାହିତ୍ୟିକ ନଟବର ଶିଶୁମାନସକୁ ଉଦ୍‌ବୋଧନୀ ମାଧ୍ୟମରେ ପ୍ରଭାବିତ କରିବାକୁ ସଚେଷ୍ଟ । ଏକ ପକ୍ଷୀ–ଚରିତ୍ର ଅବଲମ୍ବନରେ ସେ ଶିଶୁକୁ ସ୍ୱାଧିକାର ଓ ମୁକ୍ତିର ବାର୍ତ୍ତା ଶୁଣାଇଛନ୍ତି ।

'ପରାଧୀନ ହେଲେ ପୀୟୂଷ ବିଷ
ସୁନା ପିଞ୍ଜରାରେ ମନ ନତୋଷ ।
ଖୁଣ୍ଟି ଦାନା, ପିଇ ଝରଣାପାଣି,
ଥିଲି ଆରାମରେ ଇଚ୍ଛାରେ ପୁଣି ।
ଉଡ଼ି ବୁଲୁଥିଲି ନୀଳ ଆକାଶେ
ଖାଏ ବା ନଖାଏ ମନ ଉଲ୍ଲାସେ ।
ଏଠି ବିଷପିତା ଏ ଦୁଧଭାତ କିମିତି ଗାଇବି ଆଉ ମୁଁ ଗୀତ ।'
('କିମିତି ଗାଇବି ଆଉ ମୁଁ ଗୀତ', ନଟବର ସାହୁ)

ଭୂମିପ୍ରୀତି, ଭୂମି–ମନନ, ଦେଶାତ୍ମବୋଧ ଓ ମାନବୀୟ ପ୍ରତିବଦ୍ଧତା ସ୍ମରଣ କଲାବେଳେ ଜୀବନର ଦିଗ୍‌ବିଦିକ୍‌ରେ ଜଳେ ରୋଷଣୀ । ଓଜଗୁଣର ପ୍ରାବଲ୍ୟରେ ଜୀବନର ଉଦ୍‌ଭାଷ ହୋଇଉଠେ ସୁଦୂରପ୍ରସାରୀ । ଆମ ଉତ୍ତରକାଳର ବିଶ୍ୱଧାରକ–ସୂତ୍ରଧରମାନେ (ଶିଶୁ–ସମାଜ) ଅତୀତରୁ ଶିକ୍ଷା ରୂପେ ଯାହା ଗ୍ରହଣ କରିପାରିବେ, ତାହା ହେବ ଆମ ଅନାଗତ କାଳର, ବିକାଶ–ପୋଷକ । ଏହି ପରିପ୍ରେକ୍ଷୀରେ ମନେ ପଡ଼ନ୍ତି କେତେ ଜଣ ମହାମନୀଷୀ । ଯେମିତି ଜନ୍.ଏଫ୍. କେନେଡ଼ି କହନ୍ତି– 'ତୁମ ଜନ୍ମଭୂମି ତୁମ ପାଇଁ କ'ଣ କରିଛି, ଏହା ପ୍ରଶ୍ନ କରିବା ଅପେକ୍ଷା ତୁମେ ତାହା ପାଇଁ କ'ଣ କରିଛ, ଏହା ପ୍ରଶ୍ନ କରିବା ସମୀଚୀନ ହୋଇପାରେ ।' ଏହି ପରିପ୍ରେକ୍ଷୀରେ ସ୍ମୃତିତୀର୍ଥରେ ଦୃଶ୍ୟମାନ ହୁଅନ୍ତି କବିମନୀଷୀ ୱାଲ୍‌ଟର୍ ସ୍କଟ୍ ମହୋଦୟ । ସେ ଆମକୁ ଶୁଣାଇ ଦିଅନ୍ତି ତାଙ୍କ ଅନ୍ତରର ବାଣୀ ।

'ଯେକୌଣସି ମଣିଷକୁ ଜୀବନ୍ତ ବୋଲି କୁହାଯାଇପାରିବ ନାହିଁ, ଯଦି ସେ ତା'ର ଜନ୍ମଭୂମିକୁ ମୋ ଭୂମି–ମୋ ପ୍ରିୟ ଭୂମି ରୂପେ ପ୍ରଗାଢ଼ ଅନୁରକ୍ତିରେ ପ୍ରକାଶ ନ କରିଛି ।'

**ସହାୟକ ଗ୍ରନ୍ଥପଂଜୀ**

୧) ସ୍ୱାଧୀନତା ପରବର୍ତ୍ତୀ ଓଡିଆ ସାହିତ୍ୟର ଭୂମି ଓ ଭୂମିକା, ସମ୍ପାଦନା– ଡକ୍ଟର ବୈଷ୍ଣବ ଚରଣ ସାମଲ, ଓଡିଶା ବୁକ୍‌ଷ୍ଟୋର କଟକ, ୨୦୧୫ ।

୨) ପିଲାଙ୍କୁ କିପରି ଗଢିବା, ପଞ୍ଚାନନ ମହାନ୍ତି, ପ୍ରକାଶନ ବିଭାଗ, ନବଜ୍ୟୋତି ଆଶ୍ରମ, ପଣ୍ଡିଚେରୀ, ୧୯୯୭ ।

୩) ଓଡିଆ ଶିଶୁ–ସାହିତ୍ୟର ବିବିଧ ପ୍ରସଙ୍ଗ, ଡକ୍ଟର ଲାବଣ୍ୟ ଚନ୍ଦ୍ର ସାହୁ, ପ୍ରକାଶକ– ଜଗନ୍ନାଥ ରଥ, ବିନୋଦବିହାରୀ କଟକ, ୨୦୧୩ ।

୪) ଓଡିଆ ଶିଶୁ–ସାହିତ୍ୟର ଇତିବୃତ୍ତ, ସମ୍ପାଦନା– ସୁରେଶ ଚନ୍ଦ୍ର କର, ତମସା ପ୍ରକାଶନୀ, ବାଦାମବାଡି, କଟକ, ୧୯୯୨ ।

୫) ସ୍ୱାଧୀନୋତ୍ତର ଓଡିଆ ଶିଶୁ–କବିତା, ଡକ୍ଟର ଅନ୍ତର୍ଯ୍ୟାମୀ ପ୍ରଧାନ, ପଲ୍ଲିପ୍ରଭା ପ୍ରକାଶନୀ, ଖୋର୍ଦ୍ଧା, ୨୦୧୨ ।

ଅଧ୍ୟାପକ, ଓଡ଼ିଆ ବିଭାଗ
ନୟାଗଡ଼ ସ୍ୱୟଂଶାସିତ ମହାବିଦ୍ୟାଳୟ
ସା–ଜି: ନୟାଗଡ଼

# ଓଡ଼ିଆ ଜାତୀୟତା

**ଅଧ୍ୟାପକ ପବିତ୍ର ମୋହନ ବାରିକ**

ଜାତୀୟତା ଏକ ଶବ୍ଦ, ଏହା ଆଧୁନିକ ଜନମାନସରେ ଗଭୀର ଆଲୋଡନ ସୃଷ୍ଟି କରିଥାଏ । ଜାତୀୟତା ଶବ୍ଦର ଅର୍ଥକୁ ଭିନ୍ନ ଭିନ୍ନ ବିଦ୍ୱାନମାନେ ଭିନ୍ନ ଅର୍ଥରେ ଉପସ୍ଥାପନ କରିଥାନ୍ତି । ଆକ୍ଷରିକ ଅର୍ଥରେ ନିଜ ଜାତିକୁ ଭଲ ପାଇବା ଓ ଜାତିର ସର୍ବାଙ୍ଗୀନ ଉନ୍ନତିରେ ନିଜକୁ ସମର୍ପିତ କରିବା ଜାତୀୟତା ବୋଲି କୁହାଯାଏ । ଅନ୍ୟ ଅର୍ଥରେ ନିଜ ଜାତିର ଐତିହ୍ୟ, ପରମ୍ପରା, ସଂସ୍କୃତି, ଇତିହାସ ଓ ଭାଷାକୁ ନେଇ ନିଜ ମନରେ ଯେଉଁ ସ୍ୱାଭିମାନ ସୃଷ୍ଟି କରେ, ତାହାହିଁ ଜାତୀୟତା । ଜାତିକୁ ଭଲ ପାଇବା ସହିତ ଜାତି ପ୍ରତି ଆନୁଗତ୍ୟ ପ୍ରକାଶ କରିବା ହିଁ ଜାତୀୟତା । ଜାତିର ଅତୀତ ଓ କୃତିତ୍ୱକୁ ନେଇ ଗର୍ବ ଅନୁଭବ କରିବା ହିଁ ଜାତୀୟତା କୁହାଯାଏ । ଓଡ଼ିଶାରେ ଜାତୀୟତାର ବିକାଶ ଦିଗରେ ଅନେକ ଘଟଣା ପ୍ରବାହ ପ୍ରମୁଖ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା । ଏହା ଆଲୋଚନା କରିବା ପୂର୍ବରୁ ତତ୍କାଳୀନ ରାଜନୈତିକ ବ୍ୟବସ୍ଥା ଓ ପରିସ୍ଥିତିର କିଂଚିତ ଆଲୋଚନା କରିବା ବିଧେୟ । ଓଡ଼ିଆ ଜାତୀୟତାର ବିକାଶ ପରବର୍ତ୍ତୀ ସମୟରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ, ଭାଷା ଆନ୍ଦୋଳନ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ନିର୍ଭରଯୋଗ୍ୟ ତଥା ସାର୍ଥକ ଭୂମିକା ଗ୍ରହଣ କରିଥିଲା । ସଂସ୍କୃତି ଓ ପରମ୍ପରାରେ ପରିପୂର୍ଣ୍ଣ ଓଡ଼ିଶା ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ରାଜବଂଶଙ୍କ ଅଧୀନରେ ରହି ନିଜର ଗରିମାମୟ ଇତିହାସକୁ ବଜାୟ ରଖିଥିଲା । ମଧ୍ୟଯୁଗୀୟ ଓଡ଼ିଶା ମହାନ ଗଙ୍ଗ ବଂଶ ତଥା ସୂର୍ଯ୍ୟ ବଂଶର ନରପତିଙ୍କ କୃତିତ୍ୱରେ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲା । ସମଗ୍ର ଭାରତବର୍ଷ ମୁସଲମାନ ଶାସନର ପ୍ରାଧାନ୍ୟରେ ଥିଲା ବେଳେ ଓଡ଼ିଶାର ହିନ୍ଦୁ ରାଜାମାନେ ଉତ୍କଳୀୟ ସଭ୍ୟତା ଓ ସଂସ୍କୃତିର ଉତ୍କର୍ଷ ପ୍ରତିପାଦନ କରିଥିଲେ । ୧୫୬୮ ମସିହାରେ ଓଡ଼ିଶା ତା'ର ସ୍ୱାଧୀନତା ହରାଇଲା । ଓଡ଼ିଶା ୧୫୬୮ ଖ୍ରୀଷ୍ଟାବ୍ଦରୁ ୧୭୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମୁସଲମାନମାନଙ୍କ କର୍ତ୍ତୃତ୍ୱରେ, ୧୭୫୧ରୁ ୧୮୦୩ ପର୍ଯ୍ୟନ୍ତ ମରହଟ୍ଟାମାନଙ୍କ ଆୟତାଧୀନ ଥିଲା । ୧୮୦୩ ଖ୍ରୀଷ୍ଟାବ୍ଦରୁ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଉତ୍ତରରେ ସୁବର୍ଣ୍ଣରେଖାଠାରୁ ଦକ୍ଷିଣରେ ଚିଲିକା ପର୍ଯ୍ୟନ୍ତ ଉପକୂଳବର୍ତ୍ତୀ ଅଂଚଳ ନାମରେ ପରିଚିତ ଥିଲା । ଚିଲିକାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଅଂଚଳ ପ୍ରଥମେ ଗୋଇକୁଣ୍ଡାର କୁତବ ଶାହା ସୁଲତାନଙ୍କ ଏବଂ ପରେ ହାଇଦ୍ରାବାଦର ନିଜାମଙ୍କ ଅଧୀନରେ ରହିଲା । ୧୭୫୩ ଖ୍ରୀଷ୍ଟାବ୍ଦରେ ଫରାସୀମାନେ ଏ ଅଂଚଳକୁ ହାଇଦ୍ରାବାଦ ନିଜାମଙ୍କଠାରୁ ଲାଭ କଲେ ଏବଂ ଅଳ୍ପ କିଛିବର୍ଷ ପରେ ଅର୍ଥାତ୍ ୧୭୫୯ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଫରାସୀମାନଙ୍କୁ ତୃତୀୟ କର୍ଣ୍ଣାଟକ ସମରରେ ପରାସ୍ତ କରି ଏ ଅଂଚଳ ଅଧିକାର କରିଥିଲେ । ଦକ୍ଷିଣ ଓଡ଼ିଶା ଇଂରେଜମାନଙ୍କ ଶାସନାଧୀନ ହୋଇ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ରହିଲା । ସୁବର୍ଣ୍ଣରେଖା ଓ ଗଙ୍ଗା ନଦୀ ମଧ୍ୟବର୍ତ୍ତୀ ଅଂଚଳରେ ଥିବା ମେଦିନିପୁର ପ୍ରଭୃତି ଅଂଚଳ ବଙ୍ଗ ପ୍ରେସିଡେନ୍ସିରେ ଅନ୍ତର୍ଭୁକ୍ତ ଥିଲା । ଏହି ସମୟରେ ଓଡ଼ିଶାର ଦୁର୍ଗମ ଓ ପାର୍ବତ୍ୟ ଅଂଚଳରେ ରହିଥିବା ଦେଶୀ ରାଜ୍ୟମାନେ ଇଂରେଜମାନଙ୍କ ବଶତ ସ୍ୱୀକାର କରି ଆଭ୍ୟନ୍ତରୀଣ ଶାସନରେ ସାର୍ବଭୌମ କ୍ଷମତା ଉପଭୋଗ କଲେ । ଆଧୁନିକ ପୁରୀ, କଟକ, ବାଲେଶ୍ୱର ଜିଲ୍ଲା, ଯାହା ମୋଗଲ ଓ ମରହଟ୍ଟାମାନଙ୍କ ସମୟରେ 'ମୋଗଲ ବନ୍ଦୀ' ନାମରେ ପରିଚିତ ଥିଲା, ତାହା ଇଂରେଜମାନଙ୍କ

ସମୟରେ ଓଡ଼ିଶା ଡିଭିଜନ ନାମରେ ଜଣେ କମିଶନରଙ୍କ ଅଧୀନରେ ରହିଲା ଏବଂ ବଙ୍ଗ ପ୍ରେସିଡେନ୍ସି ପ୍ରଶାସନିକ ଆଇନ ଏଥିରେ କାର୍ଯ୍ୟକାରୀ ହେଲା । ଏହାପରେ ପାଟଣା–ସମ୍ବଲପୁର ରାଜ୍ୟ କେନ୍ଦ୍ରୀୟ ପ୍ରଦେଶର ମିଶାଇ ଦିଆଗଲା ଓ ସିଂହଭୂମି, ଷଢ଼େଇକଳା, ଖରସୁଆଁ, ଗାଙ୍ଗପୁର ଓ ବଣାଇ ରାଜ୍ୟକୁ ଓଡ଼ିଶାରୁ ନେଇ ଛୋଟନାଗପୁର ଡିଭିଜନ ଅନ୍ତର୍ଭୁକ୍ତ କରାଇଲେ । ଏହାଦ୍ୱାରା ଓଡ଼ିଶା ଖଣ୍ଡ ବିଖଣ୍ଡିତ ହୋଇ ବିଭିନ୍ନ ରାଜ୍ୟ ସହ ସମ୍ମିଳିତ ହୋଇଥିଲା । ଏହା ଫଳରେ ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି, ପରମ୍ପରା ଓ ରାଜନୈତିକ ସତ୍ତା ପ୍ରତି ଗୁରୁତର ବିପଦ ଦେଖାଦେଲା । ପଶ୍ଚିମ ଓଡ଼ିଶାରେ ହିନ୍ଦୀ ଭାଷା ଓ ସଂସ୍କୃତି, ଦକ୍ଷିଣ ଓଡ଼ିଶାରେ ତେଲୁଗୁ ଭାଷା ଓ ସଂସ୍କୃତି ଏବଂ ଓଡ଼ିଶା ଡିଭିଜନରେ ବଙ୍ଗାଳି ଭାଷା ଓ ସଂସ୍କୃତିକୁ ଓଡ଼ିଶା ଉପରେ ଲଦି ଦେବାକୁ ଉଦ୍ୟମ ଜାରି ରହିଲା । ଏହିଭଳି ଏକ ଘଡିସନ୍ଧି ମୁହୂର୍ତ୍ତରେ ୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷରେ ଓଡ଼ିଶାର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ଓଡ଼ିଆ ଜାତି ଏହି ସମୟରେ ବହୁ ଗୁରୁତର ସମସ୍ୟାର ସମ୍ମୁଖୀନ ହୋଇଥିଲା । ଏହାପରେ ଓଡ଼ିଶାରେ ଏକ ନବଜାଗରଣ ଦେଖାଦେଲା । ଓଡ଼ିଶାର ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଓ ସ୍ଥାୟିତ୍ୱ ପାଇଁ ଓଡ଼ିଆମାନଙ୍କ ମଧ୍ୟରେ ସଚେତନତା ଦେଖାଦେଲା । ଇଂରେଜମାନଙ୍କ ଶାସନରେ ଶିକ୍ଷାର ପ୍ରସାର, ଗମନାଗମନ ବ୍ୟବସ୍ଥାରେ ଉନ୍ନତି, ବିଭିନ୍ନ ପତ୍ରପତ୍ରିକାର ପ୍ରକାଶନ ଏବଂ ବିଭିନ୍ନ ପ୍ରକାର ସାଂସ୍କୃତିକ ସଂଘମାନଙ୍କର ପ୍ରତିଷ୍ଠା ପ୍ରଭୃତି ଓଡ଼ିଶାରେ ଜାତୀୟତାବାଦ ବିକାଶ ଦିଗରେ ସହାୟତା ପ୍ରଦାନ କରିଥିଲା ।

ଓଡ଼ିଆ ଜାତୀୟତାର ବିକାଶ ଦିଗରେ ଶିକ୍ଷାର ପ୍ରଚାର ଓ ପ୍ରସାରର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶାର କେତେଜଣ କମିଶନର ଯଥା: ଟି.ଇ. ରେଭେନ୍ସା, ଜନବିମ୍ସ, ଛୋଟଲାଟ୍ ଜର୍ଜ କେମ୍ବେଲ, ଜମିଦାର, ରାଜା ଓ ଖ୍ରୀଷ୍ଟିଆନ ପାଦ୍ରୀମାନେ ଇଂରାଜୀ ଭାଷା ସହ ମାତୃଭାଷାର ଉନ୍ନତି ପାଇଁ ଉଦ୍ୟମ ଆରମ୍ଭ କଲେ । ସମ୍ବଲପୁର, ବାଲେଶ୍ୱର, ବାରିପଦା, କଟକ, ପୁରୀ, ବ୍ରହ୍ମପୁର ସହିତ କେତୋଟି ଶିକ୍ଷାନୁଷ୍ଠାନ ଗଠନ କରାଗଲା । ସେମାନଙ୍କ ମଧ୍ୟରେ ସମ୍ବଲପୁର ଜିଲ୍ଲା ସ୍କୁଲ, ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ଦ୍ୱାରା ବାରିପଦାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ୧୮୭୯ରେ କଟକରେ ପ୍ୟାରିମୋହନ ଏକାଡେମୀ, ବାଲେଶ୍ୱରରେ ବୈକୁଣ୍ଠନାଥ ଦେ ଓ ଫକୀର ମୋହନ ସେନାପତି ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ନାରୀ ଶିକ୍ଷାର ବିକାଶ ପାଇଁ ଫକୀର ମୋହନ ସେନାପତି ଓ ଖ୍ରୀଷ୍ଟିଆନ ପାଦ୍ରୀମାନେ ଉଦ୍ୟମ କରିଥିଲେ । ୧୮୭୬ ମସିହାରେ କଟକ ଉଚ୍ଚ ବିଦ୍ୟାଳୟ (ପୂର୍ବରୁ ଇଣ୍ଟର ମିଡିଏଟ୍ ମହାବିଦ୍ୟାଳୟ) ସ୍ନାତକ ମହାବିଦ୍ୟାଳୟ ରୂପେ ଉନ୍ନୀତ କରାଯାଇଥିଲା । କଟକରେ ଅବସ୍ଥାପିତ କମିଶନର ଟି.ଇ. ରେଭେନ୍ସାଙ୍କ ନାମରେ ଇଣ୍ଟର ମିଡିଏଟ୍ ମହାବିଦ୍ୟାଳୟଟି ରେଭେନ୍ସା କଲେଜ ନାମରେ ପରିଚିତ ହେଲା । ରେଭେନ୍ସା କଲେଜରେ ବହୁ ଓଡ଼ିଆ ଯୁବକ ଉଚ୍ଚଶିକ୍ଷା ଲାଭ କରିବାର ସୁଯୋଗ ପାଇଲେ । ସେମାନେ ଓଡ଼ିଆ ଜାତୀୟତାକୁ ତ୍ୱରାନ୍ୱିତ କରିଥିଲେ । ଏହି ଶିକ୍ଷିତ ଯୁବକମାନେ ଓଡ଼ିଶାରେ ସାମାଜିକ, ରାଜନୈତିକ, ସାଂସ୍କୃତିକ ଓ ଅର୍ଥନୈତିକ ପରିବର୍ତ୍ତନ ଆଣିବା ପାଇଁ ଉଦ୍ୟମ କରିଥିଲେ । ଉଚ୍ଚ ଶିକ୍ଷିତ ଓଡ଼ିଆ ଯୁବକମାନେ ଜାତୀୟ ଚେତନାରେ ଅଭିବୃଦ୍ଧି, ଭାଷା, ସଂସ୍କୃତିର ବିକାଶ ଓ ଓଡ଼ିଆମାନଙ୍କର ଏକତ୍ରୀକରଣ ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ତତ୍କାଳୀନ ସମୟରେ ସ୍ଥାପିତ କେତୋଟି ଛାପାଖାନାର ଜାତୀୟ ଭାବନା ଓ ଚେତନାର ଅଭିବୃଦ୍ଧିରେ ଗୁରୁତ୍ୱପୂର୍ଣ୍ଣ ସହାୟତା ଯୋଗାଇ ଥିଲା । ଜାତୀୟ ଏକତା ପ୍ରତିଷ୍ଠା ଦିଗରେ ଛାପାଖାନା ଭୂମିକା କୌଣସି ଗୁଣରେ କମ୍ ନଥିଲା । ଏହା ସହିତ ଅନେକ ପତ୍ରପତ୍ରିକା ଓ ପୁସ୍ତକ ପ୍ରକାଶିତ ହେବା ଦ୍ୱାରା ଜାତୀୟତାର ବିକାଶର ପଥ ପରିଷ୍କାର କରିଥିଲା ।

ଖ୍ରୀଷ୍ଟିଆନ ପାଦ୍ରୀମାନେ ବାଇବେଲ ଛପାଇବା ପାଇଁ ୧୮୩୭ ଖ୍ରୀଷ୍ଟାବ୍ଦରେ ମିଶନ ପ୍ରେସ୍, ୧୮୬୬ରେ ବିଚିତ୍ରାନନ୍ଦ କରଙ୍କ ଦ୍ୱାରା କଟକ ପ୍ରିଣ୍ଟିଂ ପ୍ରେସ୍, ବାଲେଶ୍ୱରରେ ଫକୀର ମୋହନ ସେନାପତିଙ୍କ ଦ୍ୱାରା ଉତ୍କଳ ପ୍ରେସ୍ ଓ ବୈକୁଣ୍ଠ ନାଥ ଦେଙ୍କ ଦ୍ୱାରା ଦେ ପ୍ରେସ୍ ସ୍ଥାପନ କରାଯାଇଥିଲା । ବାମଣ୍ଡାର ରାଜା ବାସୁଦେବ ସୁଢ଼ଳ ଦେବଙ୍କ ଦ୍ୱାରା ସୁଢ଼ଳ ପ୍ରେସ୍, ବାରିପଦାରେ ମୟୂରଭଞ୍ଜ ପ୍ରେସ୍, ବଲାଙ୍ଗୀରରେ ଦଳ ଗଞ୍ଜନ ପ୍ରେସ୍ ପ୍ରତିଷ୍ଠା କରାଯାଇଥିଲା । ଊନବିଂଶ ଶତାବ୍ଦୀର ଶେଷ

ଭାଗକୁ ସର୍ବମୋଟ ୧୬ଟି ଛାପାଖାନା ପ୍ରତିଷ୍ଠା କରାଯାଇଥିଲା । ଛାପାଖାନା ପ୍ରତିଷ୍ଠା ଦ୍ୱାରା କେତୋଟି ପତ୍ରପତ୍ରିକା ଓ ସମ୍ବାଦପତ୍ର ପ୍ରକାଶିତ ହୋଇ ଓଡ଼ିଶାରେ ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନର ସୂଚନା ଦେଇଥିଲା । ପ୍ରଥମେ ୧୮୪୫ ଓ ୧୮୬୦ରେ ଯଥାକ୍ରମେ 'ଜ୍ଞାନାରୁଣ' ଓ 'ଅରୁଣୋଦୟ' ନାମକ ଦୁଇଟି ପତ୍ରିକା ପ୍ରକାଶିତ ହୋଇଥିଲା । ୧୮୬୬ରେ ଗୌରୀଶଙ୍କର ରାୟଙ୍କ ଦ୍ୱାରା 'ଉତ୍କଳ ଦୀପିକା', ୧୮୬୮ରେ ଫକୀର ମୋହନ ସେନାପତିଙ୍କ ଦ୍ୱାରା 'ସମ୍ବାଦ ବାହିନୀ' ଓ ବୋଧଦାୟିନୀ, ୧୮୮୯ ଖ୍ରୀଷ୍ଟାବ୍ଦରେ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା 'ସମ୍ବଲପୁର ହିତୈଷିଣୀ', କଟକରୁ ବିଶ୍ୱନାଥ କରଙ୍କ ଦ୍ୱାରା 'ଉତ୍କଳ ହିତୈଷିଣୀ' ପ୍ରକାଶିତ ହୋଇଥିଲା । ୧୮୭୩ରେ ବୈକୁଣ୍ଠ ନାଥ ଦେ 'ଉତ୍କଳ ଦର୍ପଣ' ପ୍ରକାଶ କରିଥିଲେ । ଏହାପରେ ବହୁ ସଂଖ୍ୟକ ପତ୍ରିକା ବିଭିନ୍ନ ଅଂଚଳରୁ ପ୍ରକାଶ ପାଇ ଜନସାଧାରଣଙ୍କ ହୃଦୟରେ ଜାତୀୟ ଭାବନା ଜାଗ୍ରତ କରିଥିଲା । ସେମାନଙ୍କ ମଧ୍ୟରେ ଉତ୍କଳ ପୁତ୍ର (କଟକ, ୧୮୭୩), ପୁରୁଷୋତ୍ତମ ଚନ୍ଦ୍ରିକା (ପୁରୀ, ୧୮୭୪), ସ୍ୱଦେଶୀ (ବ୍ରହ୍ମପୁର, ୧୮୭୬), ପ୍ରଜା ବନ୍ଧୁ (ବାଲେଶ୍ୱର, ୧୮୮୨), ସେବକ (କଟକ, ୧୮୮୩), ସଂସ୍କାରକ (କଟକ, ୧୮୮୩), ଶିକ୍ଷାବନ୍ଧୁ (କଟକ, ୧୮୮୬), ବ୍ୟବସାୟ (ବାରିପଦା, ୧୮୮୬), ଇନ୍ଦ୍ରଧନୁ (କଟକ, ୧୮୯୩), ବିଜୁଳି (ବାମଣ୍ଡା, ୧୮୯୩), ଉତ୍କଳ ବନ୍ଧୁ (ତାଳଚେର, ୧୮୯୬), ପ୍ରଭାତି ତାରା (କଟକ, ୧୮୯୬), ଗଡଜାତ ବାସିନୀ (ତାଳଚେର, ୧୯୦୨) । ଏହାସହିତ କେତୋଟି ଇଂରାଜୀ ପତ୍ରିକା କଟକ ଷ୍ଟାର, କଟକ ଆର୍ଗସ, ଗଞ୍ଜାମ ନିଉଜ୍, ଓଡ଼ିଶା ପେଟ୍ରିଅଟ, ଓଡ଼ିଶା ଷ୍ଟୁଡେଣ୍ଟ୍ସ ପ୍ରକାଶ ଲାଭ କରିଥିଲା । ଊନବିଂଶ ଶତାବ୍ଦୀର ଶେଷ ପାଦରେ ଏହିସବୁ ପତ୍ରପତ୍ରିକା ଓଡ଼ିଶାରେ ସାମାଜିକ, ସାଂସ୍କୃତିକ, ଧାର୍ମିକ, ଅର୍ଥନୈତିକ ଓ ରାଜନୈତିକ ଜାଗରଣ ଆଣିବା ଦିଗରେ ବଳିଷ୍ଠ ଭୂମିକା ଗ୍ରହଣ କରିଆସିଥିଲା ।

୧୮୬୬ ଖ୍ରୀଷ୍ଟାବ୍ଦ ପରେ ଅନେକ ଅନୁଷ୍ଠାନ ଓ ସଂଘ ଓଡ଼ିଆ ଜାତୀୟତାକୁ ତ୍ୱରାନ୍ୱିତ କରିଥିଲା । ୧୮୬୮–୬୯ର ଉଲ୍ଲାସିନୀ ସଭା ଭାଷା ଆନ୍ଦୋଳନ ସମୟରେ ଓଡ଼ିଆମାନଙ୍କର ଏବଂ କଟକ ସୋସାଇଟି ଓ ଡିବେଟିଂ କ୍ଲବ୍ ବଙ୍ଗାଳୀମାନଙ୍କର ଅନୁଷ୍ଠାନ ରୂପେ ବ୍ୟବହୃତ ହେଉଥିଲା । ଊନବିଂଶ ଶତକର ଶେଷ ତିନି ଦଶକରେ ଯେଉଁ ଅନୁଷ୍ଠାନଗୁଡିକ ଗଢ଼ି ଉଠିଥିଲା ସେମାନଙ୍କ ମଧ୍ୟରେ ଉତ୍କଳ ବ୍ରହ୍ମ ସମାଜ (୧୮୬୯), ପୁରୀ ସମାଜ (୧୮୭୦), ଗଞ୍ଜାମ ଉତ୍କଳ ହିତବାହିନୀ ସମାଜ (୧୮୭୨), ଉତ୍କଳ ଭାଷା ଉଦ୍ଦିପନୀ ସଭା (୧୮୭୩), ଭଦ୍ରଖ ଦେଶ ହିତୈଷିଣୀ ସଭା (୧୮୭୪), ଗଞ୍ଜାମ ନିଶା ନିଷେଧିନୀ ସଭା (୧୮୭୫), ଉତ୍କଳ ସଭା (୧୮୭୭), ବାଲେଶ୍ୱର ଜାତୀୟ ସମାଜ (୧୮୭୮), ଢ଼େଙ୍କାନାଳ ହିତୈଷିଣୀ ସଭା (୧୮୮୧), ଓଡ଼ିଶା ଆସୋସିଏସନ (୧୮୮୨), ଦୁର୍ନୀତି ବିରୋଧୀ ଓ ନିଶା ନିବାରଣ ସଭା (୧୮୮୪), ଖ୍ରୀଷ୍ଟିଆନ ସଂଘ (୧୮୯୬) ଅନ୍ୟତମ । ଏମାନଙ୍କ ମଧ୍ୟରୁ ଅଧିକାଂଶ ଅନୁଷ୍ଠାନ ବେଶୀ ଦିନ ତିଷ୍ଠି ରହିନଥିଲେ ମଧ୍ୟ ସାମାଜିକ ସଚେତନତା ଓ ଜାଗରଣ ସୃଷ୍ଟିରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ସେହି ସମୟରେ ଭାଷା ସମସ୍ୟା ଓ ଆନ୍ଦୋଳନ ମଧ୍ୟ ଓଡ଼ିଆ ଜାତୀୟତାକୁ ଅନେକାଂଶରେ ସହାୟତା ପ୍ରଦାନ କରିଥିଲା । ସେସମୟରେ ଓଡ଼ିଆ ଏକ ଭାଷା ନୁହେଁ, ଏହା ବଙ୍ଗାଳୀ ଭାଷାର ଉପଭାଷା ବୋଲି କିଛି ବଙ୍ଗାଳୀ ବିଦ୍ୱାନମାନେ ଯୁକ୍ତି ଉପସ୍ଥାପନ କଲେ । ଏହା ବିରୁଦ୍ଧରେ ଜନମତ ତୀବ୍ର ରୂପ ଧାରଣ କରିଥିଲା । ୧୮୭୦ ମସିହାରେ ଜନାର୍ଦ୍ଦନ ଦାସ ତେଲୁଗୁମାନଙ୍କର ଓଡ଼ିଆ ଭାଷା ଉପରେ ଅତ୍ୟାଚାରକୁ ଦୃଢ଼ ବିରୋଧ କରିଥିଲେ ।

ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଖଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ନେତୃତ୍ୱରେ ଆନ୍ଦୋଳନ ହୋଇଥିଲା । ସମ୍ବଲପୁରରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷାର ପ୍ରାଦୁର୍ଭାବ ଅଧିକ ମାତ୍ରାରେ ଦେଖିବାକୁ ମିଳିଲା । ଏହା ବିରୋଧରେ ଜନମତ ଜାଗ୍ରତ ହେଲା । ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଜନମତର ଯେଉଁମାନେ ନେତୃତ୍ୱ ନେଇଥିଲେ ସେମାନଙ୍କ ମଧ୍ୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ବ୍ରଜମୋହନ ପଟ୍ଟନାୟକ, ବଳଭଦ୍ର ସୂପକାର, ମହନ୍ତ ବିହାରୀ ଲାଲ ଦାସ ଓ ଶ୍ରୀପତି ମିଶ୍ର । ସେମାନେ ଗାଁ ଗାଁ ବୁଲି ଓଡ଼ିଆ ଭାଷାର ସୁରକ୍ଷା, ସ୍ଥାୟିତ୍ୱ ଓ ସପକ୍ଷରେ ପ୍ରଚାର କରିଥିଲେ । ସେ ସମୟରେ କେତେଜଣ ଜାତୀୟତାବାଦୀ କବି ଓ ଲେଖକ

ସେମାନଙ୍କର ଲେଖନୀ ମୁନରେ ଜାତୀୟତାବୋଧକ କବିତା ଓ ପ୍ରବନ୍ଧ ରଚନା କରି ଜାତୀୟ ଜୀବନକୁ ମହିମା ମଣ୍ଡିତ କରିଥିଲେ । ସେହି ଜାତିପ୍ରେମୀ ଓ ଜାତିକୁ ଭଲ ପାଉଥିବା ସାରସ୍ୱତ ସାଧକମାନେ ଥିଲେ ବ୍ୟାସକବି ଫକୀର ମୋହନ ସେନାପତି, କବିବର ରାଧାନାଥ ରାୟ, ଭକ୍ତ କବି ମଧୁସୂଦନ ରାଓ, ସ୍ୱଭାବ କବି ଗଙ୍ଗାଧର ମେହେର, ପଲ୍ଲୀକବି ନନ୍ଦ କିଶୋର ବଳ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଉତ୍କଳ ଗୌରବ ମଧୁସୂଦନ ଦାସ, କର୍ମବୀର ଗୌରୀଶଙ୍କର ରାୟ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ପ୍ରମୁଖ । ଏହି ଜାତୀୟତାବାଦୀ କବି ଓ ଲେଖକମାନଙ୍କର ଜାତିପ୍ରେମ ଆଧାରିତ କବିତା ଓ ପ୍ରବନ୍ଧମାନ ଜାତି ପ୍ରାଣରେ ଜାତୀୟ ଭାବନାକୁ ଦ୍ୱିଗୁଣିତ କରିଥିଲା ।

ଧାର୍ମିକ ଜାଗରଣ ମଧ୍ୟ ଓଡ଼ିଆ ଜାତୀୟତା ବୃଦ୍ଧିରେ ନିରବଚ୍ଛିନ୍ନ ପ୍ରୟାସ ଜାରି ରଖିଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାର ଧର୍ମ କ୍ଷେତ୍ରରେ ନବ ଚେତନାର ପ୍ରଭାବ ପରିଲକ୍ଷିତ ହୋଇଥିଲା । ଏହି ସମୟରେ ଖ୍ରୀଷ୍ଟଧର୍ମ ଓ ବ୍ରହ୍ମ ସମାଜ ବିରୋଧରେ ଏକ ସଂସ୍କାରଧର୍ମୀ ଧର୍ମର ଆବଶ୍ୟକତା ଅନୁଭବ କରାଯାଉଥିଲା । ଏହି ଆବଶ୍ୟକତାକୁ ପୂରଣ କରିବାରେ ସଫଳ ହୋଇଥିଲା ଓଡ଼ିଶା ମାଟିରୁ ସମ୍ଭୂତ ଓଡ଼ିଶାର ନିଜସ୍ୱ ଧର୍ମ ତଥା ବିଶ୍ୱର କନିଷ୍ଠ ଧର୍ମ ସତ୍ୟ ମହିମା ଧର୍ମ । ଏହି ଧର୍ମର ପ୍ରାଣ ପ୍ରତିଷ୍ଠାତା ଥିଲେ ମହିମା ସ୍ୱାମୀ । ଏହି ଧର୍ମ ଓଡ଼ିଆ ଜନଜୀବନ ଓ ଓଡ଼ିଆ ସାହିତ୍ୟକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ସନ୍ଥକବି ଭୀମ ଭୋଇ ଥିଲେ ଏହି ଧର୍ମର ଶ୍ରେଷ୍ଠ ପ୍ରଚାରକ । ତାଙ୍କ ଦ୍ୱାରା ରଚିତ କବିତା ଓଡ଼ିଆମାନଙ୍କ ମନକୁ ନିଃସ୍ୱାର୍ଥ ସେବା, ଜାତିପ୍ରୀତି, ସାମାଜିକ ସଂହତି, ସାମାଜିକ ମୂଲ୍ୟବୋଧ, ତ୍ୟାଗ, ଆଧ୍ୟାତ୍ମିକ ଭାବନା, ନିରାକାର ବ୍ରହ୍ମ ଇତ୍ୟାଦି ତତ୍ତ୍ୱ ଆନ୍ଦୋଳିତ କରୁଥିଲା । ମହିମା ଧର୍ମ, ଜାତିପ୍ରଥା, କୁସଂସ୍କାର, ଅନ୍ଧବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲା । ଜାତୀୟ ଏକତା ସୃଷ୍ଟିରେ ମହିମା ଧର୍ମର ବଳିଷ୍ଠ ଭୂମିକା ରହିଛି । ଓଡ଼ିଆ ଜାତୀୟତା ବୃଦ୍ଧି ଦିଗରେ ଆମର ଐତିହ୍ୟ, ପରମ୍ପରା, ସଂସ୍କୃତିର ଭୂମିକା କୌଣସି ଗୁଣରେ କମ୍ ନୁହେଁ । ଓଡ଼ିଆ ବୀରମାନଙ୍କର ବୀରତ୍ୱପୂର୍ଣ୍ଣ କାହାଣୀ ଓଡ଼ିଆଙ୍କ ପ୍ରାଣରେ ଅପୂର୍ବ ଶିହରଣ ସୃଷ୍ଟି କରିଥାଏ । କଳିଙ୍ଗ ଯୁଦ୍ଧରେ ଓଡ଼ିଆ ବୀରମାନଙ୍କର ପ୍ରାଣମୂର୍ଚ୍ଛା ସଂଗ୍ରାମ ଓଡ଼ିଆମାନଙ୍କ ମନରେ ଗଭୀର ଜାତୀୟ ଭାବନା ସୃଷ୍ଟି କରେ । ସାମ୍ରାଜ୍ୟବାଦୀ ସମ୍ରାଟ ଖାରବେଳଙ୍କର ଦିଗ୍‌ବିଜୟର କାହାଣୀ ଓଡ଼ିଆମାନଙ୍କ ହୃଦୟରେ ଜାତୀୟ ଭାବନା ସୃଷ୍ଟି କରିଥିଲା । ଗଙ୍ଗ ବଂଶର ରାଜା ଚୋଡଗଙ୍ଗ ଦେବ, ଅନଙ୍ଗଭୀମ ଦେବ, ନରସିଂହ ଦେବ ପ୍ରଭୃତି ତାଙ୍କର ବୀରତ୍ୱପୂର୍ଣ୍ଣ ଗାଥା ଓଡ଼ିଆ ଜାତୀୟତା ସୃଷ୍ଟି ଦିଗରେ ସହାୟତା ପ୍ରଦାନ କରିଥିଲା । ସୂର୍ଯ୍ୟବଂଶର ଶାସକ କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ ମଧ୍ୟ ଜାତୀୟ ଭାବନା ସୃଷ୍ଟି ଦିଗରେ ସହାୟକ ହୋଇଥିଲା । ୧୮୦୫ ଖ୍ରୀଷ୍ଟାବ୍ଦରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ, ୧୮୧୭ ଖ୍ରୀଷ୍ଟାବ୍ଦରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ଓ ସମ୍ବଲପୁରରେ ବୀର ସୁରେନ୍ଦ୍ର ସାଏଙ୍କ ନେତୃତ୍ୱରେ ଇଂରେଜ ବିରୋଧୀ ଆନ୍ଦୋଳନ ପ୍ରଭୃତି ଘଟଣା ପ୍ରବାହ ଓଡ଼ିଆ ଜାତୀୟତା ସୃଷ୍ଟିରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ଓଡ଼ିଆ ଜାତୀୟତାର ମହାର୍ଘ୍ୟ ଅଧ୍ୟାୟ ଓଡ଼ିଶାର ଜାତୀୟ ଜୀବନକୁ ପ୍ରଭାବିତ କରିଥିଲା । ଏହାଦ୍ୱାରା ଅନୁପ୍ରାଣିତ ହୋଇ ବହୁ ଜାତୀୟବାଦୀ ବ୍ୟକ୍ତିତ୍ୱର ଆତ୍ମପ୍ରକାଶ ହୋଇଥିଲା ଓଡ଼ିଶା ମାଟିରେ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା–୭୫୨୦୫୪

❖ ❖ ❖

# ପାରମାର୍ଥିକ ଉତ୍କଳ

ଜାନକୀ ବଲ୍ଲଭ ପଟ୍ଟନାୟକ

ଉତ୍କଳ ଭୂମି ପୁରାଣ ପ୍ରସିଦ୍ଧ । କେତେକଙ୍କ ମତରେ ଅଥର୍ବ ବେଦର ରଚନା ଉତ୍କଳରେ ହିଁ ହୋଇଥିଲା । କଳିଙ୍ଗ ସୈନ୍ୟମାନେ ମହାଭାରତ ଯୁଦ୍ଧରେ ଯୋଗଦେବା କଥା ମହାଭାରତରେ ଉଲ୍ଲେଖ ଅଛି । ମୂଳ ଭାଗବତ ୯/୧/୧୩ରେ ଅଛି, ଉତ୍କଳ ନାମକ ରାଜାଙ୍କ ନାମାନୁସାରେ ଏହି ପ୍ରଦେଶ ଉତ୍କଳ ନାମରେ ନାମିତ । ଉତ୍କଳ ରାଜା ଥିଲେ ବ୍ରହ୍ମାଙ୍କର ସପ୍ତମ ଅଧସ୍ତନ । ଉତ୍କଳର ଅଧିଦେବ ଶ୍ରୀଜଗନ୍ନାଥ ସାକ୍ଷାତ୍ ଶ୍ରୀକୃଷ୍ଣ ବିଷ୍ଣୁ । ଉତ୍କଳଖଣ୍ଡର ଏକ ଶ୍ଳୋକରୁ ଜଣାଯାଏ, ସ୍ୱାୟଂଭୂବ ମନୁଙ୍କ ଦ୍ୱିତୀୟ ଚତୁର୍ଯୁଗର ପ୍ରଥମ ସତ୍ୟଯୁଗରେ ପ୍ରଥମ ଜ୍ୟେଷ୍ଠ ପୂର୍ଣ୍ଣମୀରେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ହୋଇଥିଲା । ଏଣୁ ଏହି ଉତ୍କଳ ଭୂମି ଅତି ପ୍ରାଚୀନ ଏବଂ ଏହାର ଭାଷା ମଧ୍ୟ ବହୁ ପ୍ରାଚୀନ । ଏପରି ଦେଶ ଅନ୍ୟ କେଉଁଠାରେ ନାହିଁ ପୁନଶ୍ଚ ସର୍ବପ୍ରାଚୀନ ଋକ୍ ବେଦୋକ୍ତ ପୁରୁଷ ସୂକ୍ତାନୁସାରେ ଏହି ଉତ୍କଳରେ ହିଁ ଭଗବାନ୍ ଶ୍ରୀଜଗନ୍ନାଥ ପୁରୁଷୋତ୍ତମ ନାମରେ ବିରାଜମାନ । ଏଠାର ଗଜପତି ମହାରାଜ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା ଏବଂ ଉତ୍କଳର ଅଧିବାସୀମାନେ ମଧ୍ୟ ବୈଷ୍ଣବ ବୋଲି ସ୍କନ୍ଦ ପୁରାଣରେ ଉକ୍ତି ଅଛି । ଶ୍ରୀଜଗନ୍ନାଥ ସର୍ବେଶ୍ୱରେଶ୍ୱର ଶ୍ରୀକୃଷ୍ଣ, ତାଙ୍କ ସେବା କରିବା ପାଇଁ ଶ୍ରୀମନ୍ଦିର ବେଢାରେ ସମସ୍ତ ଦେବାଦେବୀ ଅଛନ୍ତି । ଧନାଧିଷ୍ଠାତ୍ରୀ ସ୍ୱୟଂ ମହାଲକ୍ଷ୍ମୀ ଓ ବିଦ୍ୟାଧିଷ୍ଠାତ୍ରୀ ସରସ୍ୱତୀଙ୍କ ଅଧିଷ୍ଠାନ ହେତୁ ଏ ଦେଶ ଧନ ଓ ବିଦ୍ୟା କେଉଁଥିରେ ମଧ୍ୟ କମ୍ ନୁହେଁ । ଏ ଦେଶର ଭୂମିରେ ବହୁବିଧ ଖଣିଜ ଦ୍ରବ୍ୟ ଅଛି । ସବୁ ପ୍ରକାରେ ଏ ଦେଶ ସମୃଦ୍ଧ । ଏପରି ଏକ ଦେଶର ଅଧିବାସୀ ହୋଇଥିବାରୁ ଆମେ ଗର୍ବିତ ।

ସର୍ବୋପରି ପରମାର୍ଥରେ ଏ ଦେଶ ବିଶ୍ୱର ଗୁରୁ । କାରଣ ଦେବଦେବ ଜଗନ୍ନାଥ ଏବଂ ସମସ୍ତ ଜ୍ୟୋତିର୍ଲିଙ୍ଗଙ୍କ ଈଶ୍ୱର କୋଟୀ ଲିଙ୍ଗେଶ୍ୱର ଶ୍ରୀଲିଙ୍ଗରାଜ ମଧ୍ୟ ଏଠାରେ ବିରାଜମାନ । ଶାସ୍ତ୍ରରେ ଅଛି, ଉତ୍କଳେ ପୁରୁଷୋତ୍ତମାତ୍ । ଉତ୍କଳର ପୁରୁଷୋତ୍ତମ କ୍ଷେତ୍ର ସମଗ୍ର ବିଶ୍ୱରେ ହିଁ ପ୍ରଚାରିତ । ଦିନ ଆସିବ ବିଶ୍ୱର ସମସ୍ତେ ପରମାର୍ଥର ବର୍ଣ୍ଣ ପରିଚୟ ଏଇ ଉତ୍କଳରୁ ହିଁ ଶିକ୍ଷା କରିବେ ।

ଭଗବାନ୍ ଶ୍ରୀରାମ ପୁରୀ ଆସିଥିବାର କୁହାଯାଏ ଏବଂ ମୂଳ ରାମାୟଣର ଆରାଧ୍ୟ ଜଗନ୍ନାଥ ଶ୍ଳୋକରୁ ଭଗବାନ ଶ୍ରୀରାମ ବିଭୀଷଣଙ୍କୁ ଶ୍ରୀଜଗନ୍ନାଥଙ୍କ ଆରାଧନା କରିବାକୁ କହିଥିବା ଜଣାଯାଏ । ସ୍କନ୍ଦ ପୁରାଣାନୁସାରେ ଉତ୍କଳ ରାଜାଙ୍କ ଅନୁରୋଧରେ ଏକ ବଳିଷ୍ଠ ରାକ୍ଷସକୁ ମାରିବା ନିମନ୍ତେ ଦ୍ୱାରିକାଧୀଶ କୃଷ୍ଣ ମଧ୍ୟ ଉତ୍କଳକୁ ଆସିଥିଲେ । କେତେକଙ୍କ ମତରେ ମହାତ୍ମା ଯୀଶୁଖ୍ରୀଷ୍ଟ ମଧ୍ୟ ଶ୍ରୀକ୍ଷେତ୍ର ଆସିଛନ୍ତି । ବୈଷ୍ଣବାନାଂ ଯଥା ଶମ୍ଭୁ ଅର୍ଥାତ୍ ବୈଷ୍ଣବଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଲେ ଦେବ ଦେବ ମହାଦେବ, ତାଙ୍କରି ଅବତାର ଶ୍ରୀଆଦି ଶଙ୍କରାଚାର୍ଯ୍ୟପାଦ, ଶ୍ରୀରାମାନୁଜ, ମାଧ୍ୱାଚାର୍ଯ୍ୟ, ନିମ୍ବାର୍କ, ବିଷ୍ଣୁସ୍ୱାମୀ, ବଲ୍ଲଭାଚାର୍ଯ୍ୟ, ରାମାନଂଦାଚାର୍ଯ୍ୟ, ଗୋସ୍ୱାମୀ ତୁଳସୀଦାସାଦି ଶ୍ରୀକ୍ଷେତ୍ରରେ ପଦାର୍ପଣ କରି ଜ୍ଞାନ ଓ ଭକ୍ତିବାଦର ପ୍ରଚାର କରିବା ସହ ଶ୍ରୀଜଗନ୍ନାଥଙ୍କ ଆରାଧନା କରିଥିଲେ । କିନ୍ତୁ ଶ୍ରୀରାଧାକୃଷ୍ଣ ମିଳିତ ତନୁ ଯୁଗାବତାରୀ ପ୍ରେମପୁରୁଷୋତ୍ତମ ଶ୍ରୀଗୌରହରି ଯେପରି ଶ୍ରୀଜଗନ୍ନାଥଙ୍କୁ ଭକ୍ତିପ୍ରଦର୍ଶନ ପୂର୍ବକ ଭକ୍ତିକୁ ଶୀର୍ଷ ସ୍ତରରେ ପହଞ୍ଚାଇ ରସରେ ପରିଣତ କରିବା ସହ ଶ୍ରୀଜଗନ୍ନାଥ ସଂସ୍କୃତିକୁ ସମଗ୍ର ବିଶ୍ୱରେ ପରିଚିତ

କରାଇଛନ୍ତି, ତାହା ଅନନ୍ୟ । ଉତ୍କଳ ସ୍ୱୟଂ ଶ୍ରୀଜଗନ୍ନାଥ ତଥା ଏହି ସମସ୍ତ ଆଚାର୍ଯ୍ୟବର୍ଗଙ୍କ ଲୀଳାଭୂମି ହେତୁ ଏଠାର ପରମାର୍ଥ ତତ୍ତ୍ୱ ଅତ୍ୟନ୍ତ ନିଗୂଢ । ଉତ୍କଳର ମହାକବି ଶ୍ରୀଜୟଦେବଙ୍କ ମହାକାବ୍ୟ ଗୀତଗୋବିନ୍ଦର ପ୍ରଭାବ ସମଗ୍ର ଭାରତବର୍ଷରେ ପରିଲକ୍ଷିତ ହୁଏ । ଗୀତଗୋବିନ୍ଦରେ ବର୍ଣ୍ଣିତ ଶ୍ରୀରାଧାକୃଷ୍ଣଙ୍କ ଅପ୍ରାକୃତପ୍ରେମ ରୂପକ ବୀଜକୁ ପ୍ରେମାବତାରୀ ଶ୍ରୀଚୈତନ୍ୟଦେବ ମହାକଳ୍ପଦ୍ରୁମରେ ପରିଣତ କରି ଉତ୍କଳରେ ପରମାର୍ଥର ସେହି ପରିପକ୍ୱ ଫଳ ରସ ନିଜେ ଆସ୍ୱାଦନ କରିବା ସହ କେବଳ ଉତ୍କଳ କାହିଁକି ସମଗ୍ର ଭାରତବର୍ଷ ପରିବ୍ରଜ୍ୟାକରି ସେହି ଉନ୍ନତ ଉଜ୍ଜ୍ୱଳ ରସ ଅକାତରେ ବିତରଣ କଲେ । ତାଙ୍କ ଭଗବତ୍ତାକୁ ସ୍ୱୀକାର କରି ଉତ୍କଳର ପଞ୍ଚମହାପୁରୁଷ ଶ୍ରୀ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଶିଶୁ ଅନନ୍ତ ଆଦି ଶ୍ରୀଜଗନ୍ନାଥ ଯେ ଶ୍ରୀରାଧାକୃଷ୍ଣ ମିଳିତ ବିଗ୍ରହ ସେହି ଶ୍ରୀରାଧାକୃଷ୍ଣଙ୍କ ନିଗୂଢ ତତ୍ତ୍ୱକୁ ସ୍ୱ ସ୍ୱ ଗ୍ରନ୍ଥମାନଙ୍କରେ ଉପସ୍ଥାପନ ପୂର୍ବକ ଶ୍ରୀଚୈତନ୍ୟ ଦେବଙ୍କ ସହ ସମ୍ମିଳିତ ହୋଇ ଉତ୍କଳର ପୁରପଲ୍ଲୀରେ ବୈଷ୍ଣବ ଧର୍ମର ବିଜୟ ବୈଜୟନ୍ତୀ ଉଡାଇଲେ । ପରବର୍ତ୍ତୀ କାଳରେ ଏହି ପରମାର୍ଥ ପ୍ରସାର ଯୋଗୁଁ ଓଡିଶା ଦୁର୍ବଳ ହୋଇଯିବା କଥା କେତେକ ଉତ୍‌ଥାପନ କଲେ ମଧ୍ୟ ଏହାକୁ ଯୁକ୍ତିଯୁକ୍ତ ବୋଲି ଆନ୍ତରିକ ଭାବେ ଗ୍ରହଣ କରିହୁଏନି ।

ଓଡିଶାର ସ୍ୱାଧୀନ ନରପତିମାନେ ନିଜକୁ ଶ୍ରୀଜଗନ୍ନାଥଙ୍କ ଦାସ୍ୟରେ ପ୍ରତିଷ୍ଠିତ କରି ଜୀବର ସ୍ୱରୂପର ପରିଚୟ ଯେ ଶ୍ରୀକୃଷ୍ଣଙ୍କ ଦାସ ଏହାର ପରିଚୟ ଦେଇଛନ୍ତି । ଉତ୍କଳରେ ପ୍ରଧାନତଃ ଶିବ, ଶକ୍ତି ଓ ବିଷ୍ଣୁ ମନ୍ଦିର ବହୁଳ ପରିଦୃଷ୍ଟ ହୁଏ । ବିରଜା, ବିମଳା, ମଙ୍ଗଳା, ଶାରଳା, ଚର୍ଚ୍ଚିକା, ହିଙ୍ଗୁଳାଇ, କାଳୀ ଓ ଚଣ୍ଡୀକା ପ୍ରଭୃତି ଶକ୍ତିପୀଠ, ଭୁବନେଶ୍ୱର ଶ୍ରୀଲିଙ୍ଗରାଜ, ଲୋକନାଥ, ଆଖଣ୍ଡଳମଣି,ଗୁପ୍ତେଶ୍ୱର, ସିଦ୍ଧେସ୍ୱର, ଲଡୁବାବା, କପିଳେଶ୍ୱର ସୋମନାଥ, ପଞ୍ଚାନନ, ଧବଳେଶ୍ୱର ଆଦି ଶୈବପୀଠ, ପ୍ରଧାନତଃ ଶ୍ରୀଜଗନ୍ନାଥ ସାକ୍ଷୀଗୋପାଳ, କ୍ଷୀରଚୋରା ଗୋପୀନାଥ, ଅଲାରନାଥ, ଶ୍ରୀରଘୁନାଥ, କେନ୍ଦ୍ରାପଡାର ବଳଦେବ, ଆଳିର ବରାହଜୀ, କଣ୍ଟିଲୋ ନୀଳ ମାଧବ, ନିଆଳି ମାଧବ, ନୃସିଂହନାଥ ବଉଦ୍ଧ ଗନ୍ଧରାଡିର ମାଧବ ଆଦି ସହସ୍ରାଧିକ ବିଷ୍ଣୁମନ୍ଦିର ବିଦ୍ୟମାନ । ଅର୍କକ୍ଷେତ୍ର କୋଣାର୍କ ସୂର୍ଯ୍ୟମନ୍ଦିର ଏକ ପ୍ରଧାନ ସୌର ପୀଠ । ଐତିହାସିକମାନଙ୍କ ମତରେ ଗନ୍ଧରାଡିର ମାଧବ ମନ୍ଦିର ଶ୍ରୀଜଗନ୍ନାଥ ମନ୍ଦିରଠାରୁ ମଧ୍ୟ ପ୍ରାଚୀନ । ଏଠି ମହାନଦୀ, ବୈତରଣୀ, ଋଷିକୁଲ୍ୟା ସୁବର୍ଣ୍ଣରେଖା ନଦୀ ଶ୍ରୀଜଗନ୍ନାଥଙ୍କ ଗୁଣଗାନ କରି କଳକଳନାଦରେ ପ୍ରବାହମାନା । ଓଡିଶା ମନ୍ଦିର ବା ଦେବତାର ଦେଶ । ନଦୀତୀର, ପର୍ବତ ଶିଖର, ମହୋଦଧି କୂଳ ଓ ନୀଳ ଦିଗନ୍ତ ସର୍ବତ୍ର ଦେବାଳୟରେ ପରିପୂର୍ଣ୍ଣ ଅପୂର୍ବ ପ୍ରାକୃତିକ ଦୃଶ୍ୟଭରା ଏ ଦେଶର ସବୁକିଛି ଶ୍ରୀଜଗନ୍ନାଥଙ୍କ ମହିମା ଗୁନଗାନରେ ଉନ୍ମୁଖ । ଦୟାନଦୀ ତୀର ଧଉଳିପାହାଡ, ଖଣ୍ଡଗିରି, ଉଦୟଗିରି, ରତ୍ନଗିରି, ଲଳିତଗିରି ଆଦି ବୌଦ୍ଧ ଓ ଜୈନପୀଠ ଏବଂ ଶୈବ, ଶାକ୍ତ, ସୌର, ଗାଣପତ୍ୟ, ବୌଦ୍ଧ, ଜୈନ ସମସ୍ତଙ୍କ ଆରାଧ୍ୟ ହେଉଛନ୍ତି ମହାବିଷ୍ଣୁ ଦେବଦେବ ଶ୍ରୀଜଗନ୍ନାଥ । ରମା, ଶମ୍ଭୁ, ବ୍ରହ୍ମା, ଇନ୍ଦ୍ର, ଗଣପତି, ବୁଦ୍ଧ, ଜୈନ ଆଦି ସମସ୍ତଙ୍କର ପ୍ରଭୁ ହେଉଛନ୍ତି ଶ୍ରୀଜଗନ୍ନାଥ । ତାଙ୍କ ନିର୍ମାଲ୍ୟପ୍ରାପ୍ତି ଆଶାରେ ବିମଳା ଶ୍ରୀମନ୍ଦିରରେ ଅବସ୍ଥାନ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ବ୍ରହ୍ମା, ରୁଦ୍ରାଦିଙ୍କର ମାନ୍ୟ । ମହାପ୍ରସାଦରେ ସ୍ପର୍ଶ ଦୋଷ ନାହିଁ । ଚଣ୍ଡାଳ, ବ୍ରାହ୍ମଣ ଏକତ୍ର ଭୋଜନ କରିପାରିବେ । ଏପରି ଅନ୍ୟ କୁତ୍ରାପି ଦେଖାଯାଏନି ।

ଶ୍ରୀଜଗନ୍ନାଥଙ୍କ ସର୍ବେଶ୍ୱରତ୍ୱ, ପରମେଶ୍ୱରତ୍ୱ ସର୍ବତନ୍ତ୍ରସ୍ୱତନ୍ତ୍ରତ୍ୱ, ସଚ୍ଚିଦାନନ୍ଦତ୍ୱ ଓ ସର୍ବକାରଣର କାରଣତ୍ୱକୁ ହିଁ ଭକ୍ତ ଭାବଧାରୀ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁ ସ୍ଥାପନ ପୂର୍ବକ ତାଙ୍କରି ଆରାଧନା ଯେ ସର୍ବଶ୍ରେଷ୍ଠ ଏହି ଶିକ୍ଷା ହିଁ ଦେଇ ଯାଇଛନ୍ତି । ଉତ୍କଳ ଭୂମିରୁ ହିଁ ପରମାର୍ଥର ନିଗୂଢ ତତ୍ତ୍ୱ ସମଗ୍ର ବିଶ୍ୱରେ ପ୍ରସାରିତ ହେବ, ଏହା ଉତ୍କଳେ ପୁରୁଷୋତ୍ତମାତ୍ ଏହି ବ୍ୟାସ ବାଣୀ ଆଜି ସାର୍ଥକ ହୋଇଛି । ଦେଶ ବିଦେଶରେ ଶ୍ରୀଜଗନ୍ନାଥ ମନ୍ଦିର, ରଥଯାତ୍ରା ହେବାଦ୍ୱାରା ଉତ୍କଳର ଶ୍ରୀଜଗନ୍ନାଥ ସଂସ୍କୃତି ବିକଶିତ ହୋଇ ଉତ୍କଳରୁ ଯେ ପରମାର୍ଥ ସମଗ୍ର ବିଶ୍ୱରେ ପ୍ରସାରିତ ହେବ, ଏହା ରାଧାକୃଷ୍ଣ ମିଳିତ ତନୁ, ଭକ୍ତଭାବଧାରୀ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଦ୍ୱାରା ହିଁ ସାଧିତ ହୋଇଛି । ତା'ର ଶାସ୍ତ୍ର ପ୍ରମାଣ ହେଲା–

ଶ୍ରୀ, ବ୍ରହ୍ମ, ରୁଦ୍ର, ସନକା ବୈଷ୍ଣବାକ୍ଷିତିପାବନା
ଚତ୍ୱାରୌସ୍ତେ କଲୌଭାବ୍ୟା ଉତ୍କଳେପୁରୁଷୋତ୍ତମାତ୍ ।

ବ୍ରିଟିଶ୍‌ମାନଙ୍କ ଚକ୍ରାନ୍ତରେ ସେମାନଙ୍କ ଶାସନ କାଳରେ ଉତ୍କଳ ଭୂମି ସଙ୍କୁଚିତ ହୋଇଯାଇଥିଲେ ମଧ୍ୟ ଏକଦା ଏହା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଉତ୍କଳର କଳା, ସଂସ୍କୃତି, ଭାସ୍କର୍ଯ୍ୟ, ସାହିତ୍ୟ ଓ ପରମାର୍ଥ ଥିଲା ସର୍ବୋତ୍ତମ । କାଳଚକ୍ରରେ ଏହି ବିଶାଳ ଉତ୍କଳ ସଙ୍କୁଚିତ ହୋଇଯାଇଥିଲେ ମଧ୍ୟ ଶ୍ରୀଜଗନ୍ନାଥଙ୍କ କୃପାରେ ଶ୍ରୀଜଗନ୍ନାଥଙ୍କ ଭାଷା, ଓଡିଆ ଭାଷାଭିତ୍ତିରେ ୧୯୩୬ ଅପ୍ରେଲ୍ ପହିଲାରେ ପ୍ରଥମେ ସ୍ୱତନ୍ତ୍ର ପ୍ରଦେଶ ଭାବେ ଆମ୍ ପରିଚୟ ଦିଏ, ଏଥିପାଇଁ ଏଇ ଭୂମିର ପ୍ରାତଃ ସ୍ମରଣୀୟ ଜୟୀ ରାଜଗୁରୁ, ବକ୍ସିଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ଉତ୍କଳଗୌରବ ମଧୁସୂଦନ, ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀର ମୋହନ, କବିବର ରାଧାନାଥ ରାୟ, ଗଙ୍ଗାଧର ମେହେର, କର୍ମବୀର ଗୌରୀଶଙ୍କର, ରମାଦେବୀ, ଡକ୍ଟର ହରେକୃଷ୍ଣ ମହତାବ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଓ ତାଙ୍କ ସତ୍ୟବାଦୀର ସଖାଗଣଙ୍କ ବିଶେଷ ଚେଷ୍ଟାରେ ଆମ ରାଜ୍ୟ ସ୍ୱତନ୍ତ୍ର ପ୍ରଦେଶ ହେଲା । ଏବେ ଏହି ପ୍ରାଚୀନ ଉତ୍କଳ ଭାଷା ମଧ୍ୟ ଶାସ୍ତ୍ରୀୟ ମାନ୍ୟତା ପାଇଲା । ଏସବୁ ମୂଳରେ ହିଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅସୀମ କୃପା ନିହିତ ଅଛି । ଦୁଃଖର କଥା, ବର୍ତ୍ତମାନ ଓଡିଆ ହୋଇ ମଧ୍ୟ କେତେକ ବିବାହ ନିମନ୍ତ୍ରଣ ପତ୍ର ଇଂରାଜୀରେ ଛାପୁଛନ୍ତି । ଏକଥା ଆମେ ଭୁଲି ଯାଇଛେ । ଯେ–

ମାତୃଭୂମି ମାତୃଭାଷାର ମମତା ଯା'ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?

ଆଜି ସମୟ ଆସିଛି ଏ ଜାତି ଉଠୁ, ଜାଗ୍ରତ ହେଉ ନିଜ ମାତୃଭାଷାକୁ ଉଚ୍ଚ କରିବା ଶିଖୁ । ଓଡିଆମାନେ କି ସାହିତ୍ୟ, କି ରାଜନୀତି ଯେକୌଣସି ସଭାସମିତିରେ ଶ୍ରୀଜଗନ୍ନାଥଙ୍କୁ ଭୁଲନ୍ତୁ ନାହିଁ । ତାଙ୍କୁ ପ୍ରଣାମ କରି ସବୁକିଛି ଆରମ୍ଭ ହେଉ । ତେବେ ସବୁ ଠିକ୍ ହୋଇଯିବ ।

ବୁଢୀବଗିଚା, ଖୋରଧା

# କଳିଙ୍ଗ ବୀର ବିଜୁବାବୁ

ଗୀତା ଦାସ

ଏଡେ ବଡ ବୀର ଜନ୍ମଦିନ ଯା'ର
ପାଳନ ହୁଅଇ ସାରା ରାଜ୍ୟରେ
'ପଂଚାୟତିରାଜ ଦିବସେ' ନାମିତ
ବିଜୟବାନା ଉଡେ ବିଜୁଙ୍କ ନାମରେ ।
କଟକ ସହରେ ଆଶାଦେବୀ କୋଳେ
ଲକ୍ଷ୍ମୀନାରାୟଣଙ୍କ ସୁପୁତ୍ରଭାବେ
ଜନମି ହେଲେ ସେ ଉତ୍କଳର ବରପୁତ୍ର,
କଳିଙ୍ଗର ବୀର,
ଓଡିଶାର ଖାରବେଳ ସ୍ୱଭାବେ ।
ଇଣ୍ଡୋନେସିଆର ଗରବ ରଖିଲେ
'ଭୂମିପୁତ୍ର' ସମ୍ମାନ ପାଇ,
ଜଗତରେ ଜୟୀ ଓଡିଆ ମହାନ
ତୁମ, ଯଶ କୀର୍ତ୍ତି, ଜଗତ ଗାଇ ।
ବଳିଷ୍ଠ ବ୍ୟକ୍ତିତ୍ୱ, ଅନନ୍ୟ ନେତୃତ୍ୱ
ନିରିମଳ ଦେଶପ୍ରେମୀ,
ଦୁର୍ଦ୍ଧର୍ଷ ସଂଗ୍ରାମୀ ସାହସୀ,
ସତ୍ୟବାଦୀ, ସତ୍ୟାଗ୍ରହୀ ।
କଳାପୂର୍ଣ୍ଣ ଯା'ର ଉତ୍କଳ ରାଇଜ
ସଂସ୍କୃତି ଶ୍ରୀଜଗନ୍ନାଥ
ସ୍ୱାଭିମାନୀ ବୀର ଦୃଢ଼ ମନୋବଳ
ଦିଗ୍‌ବିଜୟୀ ସମ୍ରାଟ ।
ପାଠପଢ଼ାଠାରୁ ପାଇଲଟ ଯାଏଁ
ସବୁଥିରେ ସିଏ ଦକ୍ଷ,
ଦକ୍ଷ ଓଡ଼ିଆ, ଦକ୍ଷ ଭାରତୀୟ
ପ୍ରତିଭା ତାଙ୍କର ଦକ୍ଷ ।
ଯା'ନାମେ ଗର୍ବେ ଉତ୍କଳ ସନ୍ତାନେ
ଫୁଲିଉଠେ ଛାତି, ଗରବ ମଣି,
ପ୍ରବାଦ ପୁରୁଷ ବିଜୁବାବୁ ଆମ
ଜାତି, ଦେଶ ବୀର ମଉଡମଣି ।

ଗ୍ରାମ– ବଳରାମପୁର
ପୋ– କୁଜଙ୍ଗ, ଜିଲ୍ଲା– ଜଗତସିଂହପୁର
ପିନ୍–୭୫୪୧୪୧

# ପବିତ୍ର ପ୍ରାଚୀନଦୀ ପରିକ୍ରମାର ପ୍ରାଚୀନତା

ପ୍ରଫୁଲ ନାୟକ

ପୁରାଣ ବର୍ଣ୍ଣିତ ପବିତ୍ର ପ୍ରାଚୀନଦୀର ଦ୍ୱାଦଶ ନାମ ମଧ୍ୟରେ ପ୍ରମୁଖ ନାମ ହେଉଛି ଶିବାଗ୍ନି ଶାନ୍ତକାରିଣୀ । ସମୁଦ୍ର ମନ୍ଥନରୁ ନିର୍ଗତ ହଳାହଳ ବିଷ ପାନ ପ୍ରଭାବରେ ସଦାଶିବଙ୍କ ଶରୀର ନୀଳବର୍ଣ୍ଣ ପଡିଯିବା ସହ ଶିବାଗ୍ନି ଉଦ୍‌ଗୀରଣ ହେବାକୁ ଲାଗିଲା । ଶଙ୍କରଙ୍କୁ ଶାନ୍ତ କରିବା ପାଇଁ ବ୍ରହ୍ମଦେବଙ୍କ ନିର୍ଦ୍ଦେଶରେ ଅନ୍ତସଶିଳା ଶସସ୍ୱତୀ କପିଳ ମୁନୀଙ୍କ ଯଜ୍ଞରୁ ନିର୍ଗତ ହୋଇ ପ୍ରାଚୀ ଧାରାରେ ମିଶି ପ୍ରାଚୀ ସରସ୍ୱତୀ ନାମରେ ସାଗର ମନ୍ଥନ କ୍ଷେତ୍ରକୁ ଗମନ କରି ଶିବାଗ୍ନି ଶାନ୍ତ କରାଇଲେ । ଏ ତଥ୍ୟ ସୂଚାଇ ଦିଏ ଯେ ପ୍ରାଚୀ ସାଗର ସଂଗମ ତୀର୍ଥ ହିଁ ପୁରାଣ ବର୍ଣ୍ଣିତ ସାଗର ସଂଗମ ତୀର୍ଥ । ମୋହିନୀ ରୂପରେ ଭଗବାନ ବିଷ୍ଣୁ ଏଠାରେ ଗୁପ୍ତରେ ରଖିଥିବା ଅମୃତ କଳସ ଆସ୍ଥାନ ହିଁ ପ୍ରାଚୀତଟର ଅନ୍ତିମ ମଧବ (ଗୋମୁଖି କେଶବ) ଅଟନ୍ତି । ପ୍ରାଚୀତଟର ଦ୍ୱାଦଶ ମାଧବ, ଦ୍ୱାଦଶ ଶଂମ୍ଭୁ, ଦ୍ୱାଦଶ ଶକ୍ତି ପୀଠ, ଅଷ୍ଟାଦଶ ଋଷି ଆଶ୍ରମ ପ୍ରାଚୀତୀର୍ଥର ପ୍ରାଚୀନତାର ପ୍ରମାଣ ଦିଏ । ଆର୍ଯ୍ୟ ଋଷିମାନେ ପ୍ରାଚୀତଟକୁ ତପସାଧନାର ଶ୍ରେଷ୍ଠସ୍ଥାନ ଭାବେ ବାଛିଥିଲେ ଓ ପ୍ରାଚୀତୀର୍ଥ ପରିକ୍ରମା କରି ଆତ୍ମତୃପ୍ତି ପ୍ରାପ୍ତ ହୋଇଥିଲେ । ବୈଦିକ ଶାସ୍ତ୍ର ପୁରାଣରୁ ପବିତ୍ର ପ୍ରାଚୀ ସରସ୍ୱତୀଙ୍କ ମହିମା ଜାଣି ନିଜେ ଭଗବାନ ଶ୍ରୀରାମ, ଶ୍ରୀକୃଷ୍ଣ, ପଞ୍ଚୁପାଣ୍ଡବ, ଶ୍ରୀଚୈତନ୍ୟ ଦେବ, ଶ୍ରୀ ଶଙ୍କର ଦେବ, ଶ୍ରୀରାଧାରମଣ ଦେବଙ୍କ ଭଳି ଅଗଣିତ ସାଧୁସନ୍ଥ ସନ୍ନ୍ୟାସୀ ଶ୍ରଦ୍ଧାଳୁ ଏ ତୀର୍ଥସ୍ଥଳୀ ପରିକ୍ରମାରେ ମନ ବଳାଇ ଥିଲେ । ଅଦ୍ୟାବଧି ସେସବୁର ସ୍ମାରକୀ ଏଠାରେ ଦେଖିବାକୁ ମିଳେ । ଭକ୍ତ ଜୟଦେବଙ୍କ ଆରାଧ ମାଧବ ଗ୍ରାମର ଶ୍ରୀ ମାଧବାନନ୍ଦ ଜୀଉ ପ୍ରଥମେ ଲଙ୍କାପତି ରାବଣ ଓ ବିଭୀଷଣଙ୍କ ଆରାଧ ଥିଲେ । ପରେ ପୂଜନ ଦାନବ ଅରିରିଶ ସ୍ୱପ୍ନାଦେଶ ପାଇ ମାଧବା ନନ୍ଦ ଜୀଉଙ୍କୁ ପ୍ରାଚୀ ଜଳରେ ଲୁଚାଇ ରଖି ଗୁପ୍ତ ପୂଜନରେ ଲିପ୍ତ ଥିଲା । ପଂଚପାଣ୍ଡବଙ୍କ ବନବାସ ସମୟେ ପ୍ରାଚୀତୀର୍ଥ ପରିକ୍ରମା ଅବସରରେ ଶ୍ରୀକୃଷ୍ଣ ଏ ବିଷୟ ଜଣାଇ ଭୀମଙ୍କ ଦ୍ୱାରା ଅରିରିଶଙ୍କଠାରୁ ମାଧବାନନ୍ଦ ଜୀଉଙ୍କ ମଣିବିଗ୍ରହ ଉଦ୍ଧାରକରି ମାଘଶୁକ୍ଳ ଏକାଦଶୀ ଦିନ ମାଧବ ଗ୍ରାମରେ ପ୍ରତିଷ୍ଠା କରାଇ ନିତିପୂଜାର ବିଧିବିଧାନ ଖଞ୍ଜି ଥିଲେ । ଏଥିପାଇଁ ମାଧବାନନ୍ଦ ଜୀଉଙ୍କୁ ଅରିରିଶ ମାଧବ, ଯୁଜେଷ୍ଟି ମାଧବ, ପ୍ରାଚୀମାଧବ ନାମରେ ସଂବୋଧନ କରାଯାଏ ଓ ତାଙ୍କ ପ୍ରତିଷ୍ଠା ଦିବସ ମାଘ ଶୁକ୍ଳ ଏକାଦଶୀ ଦିନକୁ ଏଠାରେ ମାଧବ ଏକାଦଶୀ ଭାବେ ପାଳନ କରାଯାଏ । ଏବେ ମଧ ଏ ଦିବସରେ ମାଧବାନନ୍ଦ ଜୀଉଙ୍କ ଦର୍ଶନ ପାଇଁ ଅଗଣିତ ଶ୍ରଦ୍ଧାଳୁଙ୍କ ସମାବେଶ ଏଠାରେ ଦେଖିବାକୁ ମିଳେ ।

ପୁରାଣ ତଥ୍ୟରୁ ଜଣାପଡେ, ବନବାସ ସମୟେ ପ୍ରାଚୀତୀର୍ଥ ପରିକ୍ରମାରେ ଲିପ୍ତଥିବା ଭଗବାନ ଶ୍ରୀରାମଙ୍କୁ ଦେବର୍ଷି ନାରଦ ଜଣାଇଦେଲେ ଯେ ତାଙ୍କ ପିତା ଦଶରଥ ଋଷି ଅଭିଶାପରୁ ସ୍ୱର୍ଗଗମନ ସମ୍ଭବ ହେଉନାହିଁ । ଏଥିପାଇଁ ପବିତ୍ର ବୈଶାଖ ପୂର୍ଣ୍ଣିମା ଦିନ ପ୍ରାଚୀସ୍ନାନ ତର୍ପଣପୂର୍ବକ ପ୍ରାଚୀ ତଟେ ଶଂମ୍ଭୁ ସ୍ଥାପନର ପୁଣ୍ୟ ପିତାକୁ ଅର୍ପଣ କରିବା ଅପରିହାର୍ଯ୍ୟ । ଏପରି କରନ୍ତେ ପିତା ଦଶରଥ ବିଷ୍ଣୁରଥ ଆରୁଢ଼ା ହୋଇ ଶ୍ରୀରାମଙ୍କୁ କଲ୍ୟାଣ କରି ବୈକୁଣ୍ଠ ଗମନ କଲେ । ଏବେ ମଧ ପ୍ରାଚୀତଟ ରାମେଶ୍ୱର ଶକ୍ତିପୀଠରେ ବୈଶାଖ ପୂର୍ଣ୍ଣିମା ବଣବୁଡ ପାଇଁ ଅଗଣିତ ଶ୍ରଦ୍ଧାଳୁଙ୍କ ସମାଗମ ଦେଖିବାକୁ ମିଳେ । ବୌଦ୍ଧଭିକ୍ଷୁମାନଙ୍କ ତପସ୍ଥଳୀ ପ୍ରାଚୀ ତଟ ହୋଇଥିବାରୁ

ବୌଦ୍ଧ ପୂର୍ଣ୍ଣିମାରେ ଏଠାରେ ପବିତ୍ର ପ୍ରାଚୀସ୍ନାନ, ତର୍ପଣ ଓ ପରିକ୍ରମଣକୁ ବୌଦ୍ଧ ଗ୍ରନ୍ଥରେ ମଧ୍ୟ ସ୍ୱତନ୍ତ୍ର ମାନ୍ୟତା ଦିଆଯାଇଛି । ଏବେ ମଧ୍ୟ ଏହି ପାବନ ସ୍ନାନ ଘାଟରେ ଚଣ୍ଡାଶୋକରୁ ଧର୍ମାଶୋକ କରାଇଥିବା କଳିଙ୍ଗ ବୌଦ୍ଧ ଭିକ୍ଷୁ ଉପଗୁପ୍ତଙ୍କ ଆଶ୍ରମ ଅନ୍ତିମ ଶ୍ୱାଶ ନେଉଛି । ଏ ଆଶ୍ରମର ଅନ୍ତିମ କଳିଙ୍ଗ ବୌଦ୍ଧଭିକ୍ଷୁ ବୀର ସିଂହ ମହାପୁରୁଷ ଅଚ୍ୟୁତ ନନ୍ଦଙ୍କୁ ଶୂନ୍ୟ ବିଦ୍ୟାର ସାଧନା ଶିକ୍ଷାଇଥିବା ବୀରସିଂହ ଚଉତିଶା ବର୍ଣ୍ଣନାରୁ ଜଣାପଡେ ।

ପ୍ରାଚୀତଟର ଅପୁତ୍ରିକ ବ୍ରାହ୍ମଣ ଦମ୍ପତି ଜୟଦେବଙ୍କୁ ପୁତ୍ରରୂପେ ପାଇବା ପାଇଁ ପବିତ୍ର ପ୍ରାଚୀତୀର୍ଥ ପରିକ୍ରମା ସହ ପବିତ୍ର ଅକ୍ଷୟ ତୃତୀୟାଦିନ ଗୋତୀର୍ଥ ସ୍ନାନ ସାରି ଅମରେଶ୍ୱର ଶମ୍ଭୁ ପୂଜନ କରିଥିଲେ । ଫଳରେ ଠିକ୍ ପରବର୍ଷ ଅକ୍ଷୟ ତୃତୀୟାରେ ଶ୍ରୀଜୟଦେବ ଜନ୍ମ ନେଇଥିଲେ ଓ ବିଶ୍ୱ ପ୍ରସିଦ୍ଧ ଭକ୍ତି ଭାବ ଭରା ଗ୍ରନ୍ଥ ଶ୍ରୀଗୀତଗୋବିନ୍ଦ ରଚନା କରିବାରେ ସମର୍ଥ ହୋଇଥିଲେ । ନିଜେ ଶ୍ରୀଜଗନ୍ନାଥ ନିତ୍ୟ ଶ୍ରୀଗୀତଗୋବିନ୍ଦ ଶ୍ରବଣ ପାଇଁ ନିଜସେବା ମଧ୍ୟରେ ଏହାକୁ ଶ୍ରେଷ୍ଠ ସେବାର ମାନ୍ୟତା ପ୍ରଦାନ କରିଥିଲେ । ଆଜି ମଧ୍ୟ ପ୍ରାଚୀତଟ ମଠ, ମନ୍ଦିର, ଦେବାଳୟ ଶ୍ରଦ୍ଧାଳୁଙ୍କ ଦେବ ଆସ୍ଥାନରେ ଶ୍ରୀଗୀତଗୋବିନ୍ଦ ଗାୟନକୁ ଗୁରୁତ୍ୱ ଦିଆଯାଏ । ଓଡ଼ିଶା ରାଜ୍ୟ ସରକାର ମଧ୍ୟ ଅକ୍ଷୟ ତୃତୀୟା ଅବସରରେ ତ୍ରିଦିବସୀୟ ଶ୍ରୀଜୟଦେବ ଜୟନ୍ତୀ ସଂକୀର୍ତ୍ତନ ଯାତ୍ରା ୧୯୯୨ ମସିହାରୁ ପରିଚାଳନା କରିଆସୁଛନ୍ତି । ଏ ଯାତ୍ରାର ମୁଖ୍ୟ ସହଯୋଗୀ ତଥା ବରିଷ୍ଠ ପ୍ରାଚୀ ସଂସ୍କୃତି ଗବେଷକ ପଣ୍ଡିତ ତ୍ରିଲୋଚନ ମିଶ୍ର ଜୟଦେବ ଜୟନ୍ତୀ ସଂକୀର୍ତ୍ତନ ଯାତ୍ରାକୁ ପୁରାଣ ବିଧିରେ ସପ୍ତ ଦିବସୀୟ ପଦଯାତ୍ରା କରାଇବା ଚେଷ୍ଟାରେ ସଫଳ ନହେବାରୁ ଗୁରୁଦେବ ବିଶ୍ୱ ପ୍ରସିଦ୍ଧ କ୍ରିୟାଯୋଗୀ ତଥା ପରମହଂସ ହରିହରାନନ୍ଦ ଗିରିଙ୍କ ପଟ୍ଟଶିଷ୍ୟ ପରମହଂସ ପ୍ରଜ୍ଞାନନ୍ଦ ଗିରିଙ୍କ ଶରଣ ନେଲେ । ଗୁରୁକୁଳମ୍ ଆଶ୍ରମ ପରିସରରେ ୨୦୦୫ରୁ ବନମହୋତ୍ସବର ଆୟୋଜନ କରାଇ ପଣ୍ଡିତ ମିଶ୍ର ସଂନ୍ଥ ସମାଜକୁ ପ୍ରାଚୀପରିକ୍ରମା ପ୍ରତି ଆକୃଷ୍ଟ କଲେ । ପବିତ୍ର ପ୍ରାଚୀ ସରସ୍ୱତୀ ନଦୀଙ୍କ ମହାତ୍ମ୍ୟ ଉପରେ ପଣ୍ଡିତ ମିଶ୍ରଙ୍କ ପ୍ରଦତ୍ତ ଶାସ୍ତ୍ରୀୟ ତଥ୍ୟାବଳୀକୁ ଉପସ୍ଥିତ ବିଦ୍ୱାନମଣ୍ଡଳୀ ନିର୍ବିବାଦରେ ଗ୍ରହଣ କରିଥିଲେ । ଏହା ହିଁ ଏ ପ୍ରବନ୍ଧର ମୂଳାଧାର ଅଟେ । ଫଳସ୍ୱରୂପ ୨୦୧୨ ମସିହାରୁ ଆରମ୍ଭ ହେଲା ବହୁ ପ୍ରତୀକ୍ଷିତ ପୁରାଣ ବର୍ଣ୍ଣିତ ସାଧୁସନ୍ଥ ପରିଚାଳିତ ସପ୍ତ ଦିବସୀୟ ପବିତ୍ର ପ୍ରାଚୀତୀର୍ଥ ପରିକ୍ରମା । ଶ୍ରୀଚୈତନ୍ୟ ଦେବଙ୍କ ପରେ ୫୦୦ ବର୍ଷ ଧରି ସୁପ୍ତଥିବା ପ୍ରାଚୀତୀର୍ଥ ପରିକ୍ରମାକୁ ନୂତନ ଜୀବନ ମିଳିଗଲା । ଉତ୍କଳର ଗଜପତିମାନେ ପବିତ୍ର ପ୍ରାଚୀ ପରିକ୍ରମାକୁ ଗୁରୁତ୍ୱ ଦେଇ ପ୍ରାଚୀପୀଠ, ଘାଟ, ମଠ ବିକାଶ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବା ସହ ସପ୍ତ ଦିବସୀୟ ପ୍ରାଚୀପରିକ୍ରମାକାରୀଙ୍କ ପାଇଁ ସବୁ ସାଧନ ଯୋଗାଇ ଦେଉଥିଲେ । ଏ ଦିଗରେ କଳିଙ୍ଗ ଗଜପତିଙ୍କ ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ନବକଳେବର ପରିଚାଳନାର ପ୍ରତ୍ୟକ୍ଷ ଦାୟିତ୍ୱ ନେଇ ବନଯାଗ ତପସ୍ଥଳୀ ଦେଉଳି ମଠରେ ଏ ଭବ୍ୟ ସାତ ଶେଣିଆ ପ୍ରସସ୍ଥ ଭବନ ଗଢାଇ ଥିଲେ । ଏବେ ମଧ୍ୟ ଏ ଭବନ ସମ୍ମୁଖରେ ଥିବା ସିଂହମୂର୍ତ୍ତି ଦ୍ୱୟ ଏହାର ସ୍ମାରକୀ ବହନ କରେ । ଅନ୍ୟ ସମୟରେ ଏ ସ୍ଥାନଟି ଗଜପତିଙ୍କ ତଟ ସୁରକ୍ଷା ବାହିନୀ ପାଇକ ସମାବେଶ ପାଇଁ ବ୍ୟବହୃତ ହେଉଥିଲା । ପ୍ରାଚୀତଟ ଗୋଲରାଗଡ ସାମନ୍ତ ବଂଶାନୁକ୍ରମେ ଗଜପତିଙ୍କ ତଟ ସୁରକ୍ଷା ପାଇକ ବାହିନୀର ସେନାପତି ପଦ ତୁଲାଉ ଥିଲେ । ଏ ମହାନ ଐତିହ୍ୟକୁ ସ୍ମରଣ କରି ପ୍ରାଚୀତଟ ଗ୍ରାମବାସୀ ପ୍ରାଚୀ ପରିକ୍ରମାକାରୀଙ୍କ ସେବାରେ ତ୍ରୁଟି ରଖୁନାହାନ୍ତି । ପ୍ରତିବର୍ଷ ଫାଲଗୁନ କୃଷ୍ଣପକ୍ଷ ପଞ୍ଚମୀଠାରୁ ଏକାଦଶୀ (ପଙ୍କୋଦ୍ଧାର ଏକାଦଶୀ) ପର୍ଯ୍ୟନ୍ତ ସପ୍ତଦିବସ ବ୍ୟାପୀ ପରିଚାଳିତ ପବିତ୍ର ପ୍ରାଚୀ ପରିକ୍ରମା ଅବସରରେ ପରିକ୍ରମା ପଦଯାତ୍ରାରେ ଆଗତ ସାଧୁସନ୍ଥ ଶ୍ରଦ୍ଧାଳୁମାନଙ୍କ ଦର୍ଶନ ପୂଜନ ସତ୍‌ସଙ୍ଗ ସୌଭାଗ୍ୟ ପ୍ରାପ୍ତି ପାଇଁ ପ୍ରାଚୀତଟବାସୀଙ୍କୁ ଉତ୍କଣ୍ଠାର ସହ ଏକବର୍ଷ ଧରି ଅପେକ୍ଷା କରିବାକୁ ପଡୁଛି ।

ଆଡଭୋକେଟ୍
କାକଟପୁର, ପୁରୀ

❖ ❖ ❖

# କଣ୍ଟା ବାଉଁଶୁଣୀଙ୍କ ପରବ

ଡକ୍ଟର ପ୍ରମୋଦିନୀ ହୋତା

ଆଦିବାସୀମାନଙ୍କ ସଂସ୍କୃତି ଉଦାର ଓ ମାନବିକ ମୂଲ୍ୟବୋଧ ସମ୍ପନ୍ନ । ଆଦିବାସୀମାନଙ୍କ ଧର୍ମ ଓ ସଂସ୍କୃତି ନିଜସ୍ୱ ଏଥିରେ ମୂଳ ଚେତନା ରହିଛି ଯାହା ଜଡ଼ ଓ ଭୌତିକ ପଦାର୍ଥ ମଧ୍ୟରେ ଜୀବ ଏବଂ ଆତ୍ମାର ସମ୍ପର୍କ । କୋରାପୁଟ ଜିଲ୍ଲାର ଦାମନଯୋଡ଼ି (ଆଲୁମିନା କାରଖାନା) ନିକଟରେ କଣ୍ଟା ବାଉଁଶୁଣୀ ପୂଜା ପାଇ ଆସୁଛନ୍ତି । ମହାନ ଜଗନ୍ନାଥ ସଂସ୍କୃତି ଏବଂ ଆଦିବାସୀ ସଂସ୍କୃତିର ଅପୂର୍ବ ସମନ୍ୱୟ ପୀଠ ହେଉଛି କଣ୍ଟା ବାଉଁଶୁଣୀ ପୀଠ । ଏହି ଜିଲ୍ଲାରେ ଗ୍ରାମଦେବୀମାନେ ଗଛ ମୂଳରେ ହିଁ ପୂଜାପାଇ ଆସୁଛନ୍ତି । କଣ୍ଟା ବାଉଁଶୁଣୀ ଦେବୀ ହେଉଛନ୍ତି ସିନ୍ଧିପାର, କଣ୍ଟାଗୁଡ଼ା, ଡୁମୁରୀଗୁଡ଼ା, ଗାଦି ପାବିଲି ଗାଁର ଇଷ୍ଟ ଦେବୀ ବା ଗ୍ରାମଦେବୀ । କୋରାପୁଟ ଜିଲ୍ଲାର ସୁଙ୍କି ଘାଟି ଅନନ୍ତଗିରି ପର୍ବତ ଦ୍ୱାରା ଚାରି ଦିଗରେ ଘେରି ରହିଛି । ଏହି ଅଂଚଳଟି ସବୁଜ ବନାନୀରେ ପରିପୂର୍ଣ୍ଣ । କିମ୍ବଦନ୍ତୀ ରହିଛି ସେଠାରେ ଦୀପମାଳୀ ଗାଁ ରହିଥିଲା । ସେଠାର ମୁଖିଆ ବା ବଡ଼ନାୟକଙ୍କର ଛଅପୁଅ ଏବଂ ଗୋଟିଏ ଅନିନ୍ଦ୍ୟ ସୁନ୍ଦରୀ ଝିଅ



ଥିଲା । ପୌଷ ମାସରେ ଧାନ, ମାଣ୍ଡିଆ, ସୁଆଁ ଅମଳ ହେଲାପରେ ଆଦିବାସୀମାନେ ପୌଷ ପରବ ପାଳନ କରିଥାନ୍ତି । ସେହି ବର୍ଷରେ ମଧ୍ୟ ସମସ୍ତେ ନୂଆ ଲୁଗା ପିନ୍ଧି ମୁଣ୍ଡରେ ପୁରୁଷମାନେ ମଇଁଷି ଶିଙ୍ଘର ମୁକୁଟ ବାନ୍ଧି ହାତରେ ମୟୂର ଚୂଳର ଚାମର ଧରି ମହୁଲି, ଲନ୍ଦା, ପେଣ୍ଡମ, ସଲପରସ ପିଇ ଗୋଟିଏ ପାଖରେ ସ୍ତ୍ରୀ ଅନ୍ୟ ପାଖରେ ପୁରୁଷ ହାତରେ ହାତ ଛନ୍ଦି ମଝିରେ ବାଜାବାଲାମାନେ ମାଦଲ, ଟମକା, ଢ଼ୋଲ ମହୁରୀ ବଜାଇ ଥିଲେ । ପାଦକୁ ପାଦ ମିଳାଇ ପୁରୁଷ ଓ ସ୍ତ୍ରୀମାନେ ଢ଼େମସା ନାଚ ନାଚିଥିଲେ । ପୌଷ ପରବରେ ମସଗୁଲ ହୋଇ ନାଚିବା ପରେ ଶେଷ ଦିନ ବଡ଼ ନାୟକର ପୁଅ ଓ ଝିଅ ହାତରେ ଖଣ୍ଡା, କାତି, ବର୍ଚ୍ଛା, ତୀର, ଧନୁ ଧରି ବେଣ୍ଟକୁ ବାହାରିଲେ ଯୋଗୀ ଡ଼ଙ୍ଗରେ ପାଖରେ ଗୋଟିଏ ସମ୍ବର ଚରୁଥିବା ଦେଖି ତାକୁ ତୀର ନିକ୍ଷେପ କଲେ । ସମ୍ବର ତୀରରେ ମୃତ୍ୟୁବରଣ କଲା । ସମ୍ବରର ମାଂସକୁ ପ୍ରଥମେ ଗ୍ରାମଦେବୀ ନିକଟରେ ପୂଜା କରି ସମସ୍ତେ ଆନନ୍ଦରେ ମାଂସକୁ

ବାଣ୍ଟି ଖାଇଲେ। ବର୍ତ୍ତମାନ ଏହି ସ୍ଥାନଟି ଚବ୍ରି ନଦୀର ମୁହାଣ ବା ପାଉଁଶ ପୋଖରୀ ପାଖରେ ରହିଛି। ନିକଟରେ ବାଲୁକା ସ୍ତୂପ ଦେଖି ବଡ଼ନାୟକଙ୍କର ପୁଅ ଝିଅ ନିଜର ଅସ୍ତ୍ରଶସ୍ତ୍ରକୁ ସେଠାରେ ପୋତିଦେଲେ ଏବଂ ସିନ୍ଧିପାର ଗ୍ରାମକୁ ଆସି ଗୋଟିଏ ପତ୍ରକୁଡ଼ିଆ ତିଆରି କରି ରାତ୍ରିଯାପନ କଲେ। ସେହି ସମୟରେ ଜୟପୁରରୁ ଗୁଞ୍ଜିଗୁଡ଼ାର ଦାମିଘର ପୁଅମାନେ ସେଠାରେ ପହଞ୍ଚିଲେ । ସମସ୍ତେ ଏକତ୍ରିତ ହୋଇ କୁଡ଼ିଆରେ ରାତ୍ରିଯାପନ କଲେ। ତା'ପରଦିନ ସକାଳେ ଅସ୍ତ୍ରଶସ୍ତ୍ର ଖୋଜିବା ପାଇଁ ବାଲୁକା ସ୍ତୂପ ନିକଟରେ ପହଞ୍ଚି ଦେଖିଲେ ପୋତିଥିବା ଅସ୍ତ୍ରଶସ୍ତ୍ର ଘାଗୁଡ଼ି, ଘଣ୍ଟି ପାଲଟି ଯାଇଛି ଏବଂ ତୀର ଶକ୍ତି ଲିଙ୍ଗରେ ପରିଣତ ହୋଇଛି। ନିରାଶ ହୋଇ ସମସ୍ତେ କୁଡ଼ିଆକୁ ଆସି ଶୋଇଲେ। ରାତ୍ରିରେ ବଡ଼ ଗଡ଼ନାୟକର ପୁଅକୁ ସ୍ୱପ୍ନାଦେଶ ହେଲା ବନଦେବୀ ଏଠାରେ କଣ୍ଟା ବାଉଁଶୁଣୀ ରୂପେ ଆବିର୍ଭାବ ହୋଇଛନ୍ତି। ତାଙ୍କୁ ପୂଜା କଲେ ଗାଁର ଅଭାବ ରହିବ ନାହିଁ। ଏକଥା ସିନ୍ଧିପାର ଗାଁରେ କହିବା ପରେ ସମସ୍ତେ ଶୁଦ୍ଧପୂତ ହୋଇ ବିଧି ଅନୁଯାୟୀ ଦେବୀଙ୍କ ପୂଜା ଆରାଧନା କଲେ। ବଡ଼ ଗଡ଼ନାୟକ ଘର ଏବଂ ଦାମି ଘରର ସାନ ପୁଅ ନିଜ ଗ୍ରାମକୁ ନ ଯାଇ ସିନ୍ଧିପାର ଗ୍ରାମରେ ରହିଲେ। ବଡ଼ ନାୟକଙ୍କର ଝିଅ ଅହଲ୍ୟାକୁ ଦାମି ଘର ସାନ ପୁଅ ବାସୁଦେବ ବିବାହ କଲା। ଦିନେ ଅହଲ୍ୟା ସେହି ବାଲିକୁଦକୁ ନିଜ ବୁଢ଼ା ଅଙ୍ଗୁଳିରେ ଖୋଳିବା ସମୟରେ ଶକ୍ତି ଲିଙ୍ଗ ବାଜି ତା' ଅଙ୍ଗୁଳିରୁ ରକ୍ତ ବୋହିଲା । ପରେ ସେ ମୃତ୍ୟୁବରଣ କଲା। ତା'ପରେ ତା' ସ୍ୱାମୀ ମଧ୍ୟ ସେଠାରେ ମୃତ୍ୟୁବରଣ କଲା। ଲୋକମାନଙ୍କ ବିଶ୍ୱାସ ହେଲା ଯେ ଅହଲ୍ୟା ହେଉଛନ୍ତି ଜଣେ ଦେବି ! ସେ ମାନବୀ ରୂପରେ ବଡ଼ନାୟକ ଘରେ ଜନ୍ମ ନେଇଥିଲେ। ସେଦିନଠାରୁ ଗ୍ରାମବାସୀମାନେ ବଡ଼ନାୟକ ଘରକୁ ଦେବୀଙ୍କର ବାପଘର ଏବଂ ଦାମି ଘରକୁ ଦେବୀଙ୍କର ଶ୍ୱଶୁର ଘର ବୋଲି କହିଥାନ୍ତି। ମଙ୍ଗଳବାର ଦିନ ଦେବୀଙ୍କର ପୂଜା ଦିନ ଧରାଯାଏ। ପୌଷ ମାସର ମଙ୍ଗଳବାରଠାରୁ ଆରମ୍ଭ ହୋଇ ଦଶଦିନ ଅର୍ଥାତ୍ ପୂର୍ଣ୍ଣିମା ପର୍ଯ୍ୟନ୍ତ କଣ୍ଟା ବାଉଁଶୁଣୀଙ୍କର ପୌଷ ପରବ ବା ଘଣ୍ଟ ପରବ ଚାଲିଥାଏ। ମଙ୍ଗଳବାର ଦିନର ପୂର୍ବଦିନ ସକାଳେ ଠାକୁରାଣୀଙ୍କର ପୈତୃକ ଘର ସିନ୍ଧିପାର ଗାଦି ପାବିଲି, କଣ୍ଟାଗୁଡ଼ା, ଡୁମୁରିଗୁଡ଼ାର ଗ୍ରାମବାସୀମାନେ ଉପବାସ ରହି ଖାଲି ପାଦରେ ଚାଲି ଚାଲି କଣ୍ଟା ବାଉଁଶୁଣୀଙ୍କର ପୀଠକୁ ଆସି ସଫା ସୁତୁରା କରିଥାନ୍ତି। କଣ୍ଟା ବାଉଁଶୁଣୀ ପୀଠ ହେଉଛି ପାଞ୍ଚ ଫୁଟ ଉଚ୍ଚତା ଏବଂ ଦଶ ଫୁଟ ଓସାର ବିଶିଷ୍ଟ ଏକ ଉଇହୁଙ୍କା। ମା'ଙ୍କର କୌଣସି ମୂର୍ତ୍ତି ନାହିଁ। ବୃକ୍ଷମୂଳେ ମାଆ ପୂଜା ପାଉଛନ୍ତି। ଏହାର ଚାରିଆଡ଼େ ପାଞ୍ଚ ଏକର ବିଶିଷ୍ଟ ଜମିରେ ରହିଛି ବାଉଁଶ ବଣ। ସ୍ଥାନଟି ବାଉଁଶ ବୁଦାରେ ପରିପୂର୍ଣ୍ଣ। ମଝିରେ ଗୋଟିଏ ଛୋଟିଆ ରାସ୍ତା ରହିଛି। ଲୋକେ କହିଥାନ୍ତି ଉଇହୁଙ୍କା ଭିତରେ ମା'ଙ୍କର ମୁଣ୍ଡଠାରୁ ବେକ ପର୍ଯ୍ୟନ୍ତ ରହିଛି ଶରୀର ଅଦୃଶ। କର୍ଣ୍ଣରେ କୁଣ୍ଡଳ, ଗଳାରେ ମୁକ୍ତାମାଳ, ନାକରେ ହୀରାପଥରର ବସଣୀ, ମୁଣ୍ଡରେ ପଞ୍ଚଫଣୀ ଅହୀନାଗର ମୁକୁଟ। କିନ୍ତୁ ସେ ମୂର୍ତ୍ତି କେହି ଦେଖି ନାହାନ୍ତି। ମା' ଶକ୍ତିଲିଙ୍ଗ ରୂପେ ପୂଜା ପାଉଛନ୍ତି।

ତା'ପର ଦିନ ମଙ୍ଗଳବାର ଥାଏ ଓ ପୂଜାରୀ ଘରେ ସକାଳେ ପାଟଖଣ୍ଡା ପୂଜା କରାଯାଏ। ପୂଜାରୀ ଓ ଭକ୍ତମାନେ ଦିନସାରା ଉପାସ ରହିଥାନ୍ତି। ସମସ୍ତେ ବାଜା ବଜାଇ କଣ୍ଟା ବାଉଁଶୁଣୀକୁ ଦୁଇ ହାତ ପାତି ଆରାଧନା କରିଥାନ୍ତି। ମଧ୍ୟାହ୍ନ ସମୟରେ ମା'ଙ୍କ ପିତୁଳା, କଂକଡ଼ି ଖଣ୍ଡା, ଗୋଠଖଣ୍ଡି ଯାହା ଲୁକ୍କାୟିତ ଭାବରେ ରହିଥାଏ ସେସବୁ ବାହାର କରି ଠାକୁରାଣୀଙ୍କର ସ୍ୱତନ୍ତ୍ର ପୋଖରୀରେ ସ୍ନାନ କରାଯାଏ। ସ୍ନାନ ପରେ ମା'ଙ୍କୁ ସଦ୍ୟ ପ୍ରସ୍ତୁତ ଜଡ଼ାତେଲ, ଚନ୍ଦନ, ଘିଅ, ଚୂନା, ହଳଦୀ, ସିନ୍ଦୂର ଲଗାଯାଏ। ତା'ପରେ ନାଭିକୁଣ୍ଡ ଯାହାକି ଠାକୁରାଣୀଙ୍କର ଜନ୍ମ ସ୍ଥାନ ସେଠାରେ ସ୍ଥାପନ କରାଯାଏ। ଆରାଧନା ସମୟରେ ଠାକୁରାଣୀ ଶକ୍ତିରୂପିଣୀ ଉଇହୁଙ୍କାରୁ ତୀର ରୂପି ଲିଙ୍ଗ ଏକ ଉଜ୍ଜ୍ୱଳ ତାରକା ରୂପେ ଆସି ହାତ ପାତି ବସିଥିବା ଜଣେ ବ୍ୟକ୍ତି ହାତରେ ପଡ଼ିଥାଏ ଏବଂ ଲୋକଟି ଚେତାଶୂନ୍ୟ ହୋଇଯାଏ। ତା'ପରେ ଠାକୁରାଣୀଙ୍କର ପାଦପୂଜା ଆରମ୍ଭ ହୁଏ। ସକାଳେ କୌଣସି ଭୋଗ ଦେବୀଙ୍କର କରାଯାଇ ନଥାଏ। ପାଦପୂଜା ପରେ ହିଁ ଭୋଗ ପୂଜା ହୁଏ। କଂକଡ଼ି ଖଣ୍ଡାକୁ ଘସି ବୁଢ଼ିଆ ପୂଜା କରିଥାଏ। ବୈରାଗୀ ବୁଢ଼ା (ମା'ଙ୍କର

ସେବକ) ଦେହ ସାରା ପାଉଁଶ ବୋଳି ହୋଇଥାଏ। ଠାକୁରାଣୀଙ୍କ ଆଗମନ କଥା ସମସ୍ତଙ୍କୁ କହିଥାଏ। ଲାଠି ବୁଢ଼ିଆମାନେ ଚାମର ଛତ୍ର ସହ ଠାକୁରାଣୀଙ୍କର ଖଣ୍ଡା ଧରି ନାଚିଥାନ୍ତି। ସ୍ୱାଧୀକାରମାନେ ମହୁରୀ, ଢ଼ାଲ ସହ ଅସ୍ତ୍ରଶସ୍ତ୍ର ଧରି ନାଚିଥାନ୍ତି। ଗୁରୁମାଈମାନେ ପାରମ୍ପରିକ ବାଜା ବଜାଇ ମା'ଙ୍କୁ ଶିମ୍ବଫୁଲ, ଗେଣ୍ଡୁଫୁଲ, ନାଲିମନ୍ଦାର, ନଡ଼ିଆ, କଦଳୀ, ଅରୁଆ ଚାଉଳ, ଖଇ ଆଦି ଅର୍ପଣ କରି ନୂଆ ବସ୍ତ୍ର ପ୍ରଦାନ କରିଥାନ୍ତି ଏବଂ ଗ୍ରାମବାସୀଙ୍କ ମଙ୍ଗଳ ପାଇଁ ସ୍ତୁତି କରିଥାନ୍ତି। ପ୍ରଧାନୀ ଘରରୁ ଫୁଲ ଝଣ୍ଡା ଆସିଥାଏ। ଘୋଡ଼ା ଲମତା ଘରୁ ପାଣିଢ଼ାଳ, ନାୟକ ଘରୁ ତରୁଞ୍ଜା ମାଛ, ପାଳଙ୍ଗ ଶାଗ, ଚିଙ୍ଗୁଡ଼ି ମାଛ, ଷୋଳ ଶିଙ୍ଗା ମାଛ ଅଣାଯାଏ। ମଧ୍ୟାହ୍ନରେ ପାଦପୂଜା ପରେ ଦେବୀଙ୍କୁ ପୂଜା ଭୋଗ କରାଯାଏ। ପାଳଙ୍ଗ ଶାଗ, ତୁରଞ୍ଜା ମାଛ କିମ୍ବା ଷୋଳଶିଙ୍ଗ ଧୂପ, ଦୀପ, ଆଳତି କର୍ପୂର ସିନ୍ଦୂର, ନଡ଼ିଆ, କଦଳୀ ଇତ୍ୟାଦି ଅର୍ପଣ କରି ପୂଜା ଭୋଗ ହୁଏ। ତା'ପରେ ନାଭିକୁଣ୍ଡରେ ପୂଜା କରାଯାଏ। ପ୍ରଥମ ଭୋଗ ପୂଜା ପ୍ରଧାନୀ ଘରର, ଦ୍ୱିତୀୟ ଭୋଗ ପୂଜା ପୂଜାରୀ ଘରର ହୋଇଥାଏ। ତା'ପରେ କଣ୍ଟାଗୁଡ଼ା, ସିନ୍ଧିପାର, ଡୁମୁରିଗୁଡ଼ା, ଗାଦିପାବଲି ଗ୍ରାମବାସୀମାନେ ଅରୁଆ ଚାଉଳ, ହଳଦୀ, ଦୀପ, ଧୂପ, କଦଳୀ, ନଡ଼ିଆ ମୁଆଁ, କର୍ପୂର ଇତ୍ୟାଦି ଅର୍ପଣ କରି ପୂଜା କରିଥାନ୍ତି। ପୂଜାରୀ ଘରୁ ପାଟ ଖଣ୍ଡା ଅଣାଯାଇ ଦେବୀଙ୍କ ସହିତ ପୂଜା କରାଯାଏ। କଂକଡ଼ି ଖଣ୍ଡା ଯେଉଁଆଡ଼େ ଯାଏ ସେଠାକୁ ଠାକୁରାଣୀ ଯାଇଛନ୍ତି। ପ୍ରଥମ ଦିନରେ ପୀଠରେ ପୂଜା ପାଇଥାନ୍ତି ଅନ୍ୟଦିନମାନଙ୍କରେ ବଡ଼ନାୟକ ଏବଂ ଦାମିଘର ଲୋକମାନେ ଦେବୀଙ୍କୁ ପୂଜା କରିଥାନ୍ତି। ନବମୀ ଦିନ ଦେବୀଙ୍କ ନିକଟରେ ବଡ଼ ଭୋଗ କରାଯାଏ। ଦଶମୀ ଦିନ ପୂର୍ଣ୍ଣିମା ହୋଇଥାଏ ସେଦିନ ମା' କଣ୍ଟା ବାଉଁଶୁଣୀଙ୍କୁ ମାଳ ଦିହୁଡ଼ି ସହିତ ନିଶାର୍ଦ୍ଧ ରାତ୍ରିରେ ପୀଠକୁ ଅଣାଯାଇଥାଏ। ଅଧା ବାଟରେ ରାସ୍ତାରେ ଠାକୁରାଣୀଙ୍କୁ ପୂଜା କରାଯାଏ ଏବଂ ଗୋଟିଏ ଚିତ୍ରପଟ ଦେଖାଇ ଦିଆଯାଏ ଏବଂ ପୀଠରେ ମା' କଣ୍ଟାବାଉଁଶୁଣୀଙ୍କୁ ଛାଡ଼ି ସମସ୍ତେ ଆନନ୍ଦ ଉଲ୍ଲାସରେ ନିଜ ନିଜ ଗ୍ରାମକୁ ଫେରିଥାନ୍ତି।

ଆଜି ମଧ୍ୟ ପୀଠରେ ବାଉଁଶ ବୁଦା ରହିଛି । ଅନେକ କହିଥାନ୍ତି ଶହେ ବର୍ଷକୁ ଥରେ ବାଉଁଶଗୁଡ଼ିକ ଆପେ ଆପେ ଶୁଖିଯାଏ। ସେଠାରେ ନୂଆ ବାଉଁଶ ଗଜାରୁ ବାଉଁଶ ବୁଦା ସୃଷ୍ଟି ହୁଏ। ଜୟପୁର ରାଜା ମନ୍ଦିର ପ୍ରତିଷ୍ଠା ପାଇଁ ଚେଷ୍ଟା କରିଥିଲେ ମା'ଙ୍କ ଆଦେଶ ଯୋଗୁଁ ମନ୍ଦିର ତିଆରି ହୋଇ ପାରିଲାନି। ଆଜିର ସଭ୍ୟ ସମାଜ ପରଂପରା ସଂସ୍କୃତି ଭୁଲିଗଲାଣି କିନ୍ତୁ ଆଦିବାସୀମାନେ ପ୍ରଥା, ପରଂପରା ପର୍ବପର୍ବାଣିକୁ ନେଇ ଶୃଙ୍ଖଳିତ ଏବଂ ଚଳଚଞ୍ଚଳ ହୋଇଥାନ୍ତି। ଆଜିକାଲି ମା' କଣ୍ଟାବାଉଁଶୁଣୀ ସେବାୟତ ମଣ୍ଡଳୀ ଦ୍ୱାରା ଆଲୋକ ବ୍ୟବସ୍ଥା କରାଗଲାଣି । ଢ଼େମସା ନୃତ୍ୟ ସହିତ ଭଜନ ସନ୍ଧ୍ୟା ମଧ୍ୟ କରାଯାଉଛି।

ପାଇଲ ସାହି, ଜୟପୁର, କୋରାପୁଟ
ପିନ୍ – ୭୬୪୦୦୧

❖ ❖ ❖

# ଓଡ଼ିଆ ଭାଷା ପାଇଁ ଗଭୀର ଚିନ୍ତନ

ଡକ୍ଟର ସୌରୀବଂଧୁ କର

ଚିନ୍ତା କରିବା ଏପରି ଏକ ସାମର୍ଥ୍ୟ ଯାହା ପ୍ରତ୍ୟେକ ବ୍ୟକ୍ତିସତ୍ତା ମଧ୍ୟରେ ବିକାଶ ଲାଭ କରିଥାଏ । ଏହି ଚିନ୍ତା କରିବା ବିଭିନ୍ନ ପର୍ଯ୍ୟାୟର । ଯଦି ଆମେ କିଛି ହାସଲ କରିବାକୁ ଚିନ୍ତା କରୁ, ତାହା ହେଉଛି ସାଧାରଣ ଚିନ୍ତାଧାରା । ଏହି ଚିନ୍ତାଧାରା ହିତବାଦୀ ଚିନ୍ତା, ଯାହା ଆମ ଚିନ୍ତାଧାରାରୁ ମହନୀୟତାକୁ ଦୂରକୁ ଠେଲିଦିଏ । ବରଂ ଏହାକୁ ଆମେ ଯୋଜନା ବା ଖସଡ଼ା କହିପାରୁ । ଆଉ ଏକ ପ୍ରକାର ଚିନ୍ତା ହେଉଛି, ଯାହାସବୁ ବିଷୟରେ ଆମେ ଚିନ୍ତା କରିପାରୁ । ଏହା ଆମର ବ୍ୟସ୍ତତା ବା ବିବ୍ରତବୋଧରୁ ସୃଷ୍ଟି । ସବୁ କଥାରେ ଆମେ ବ୍ୟତିବ୍ୟସ୍ତ ହେଉ, ବିବ୍ରତ ହେଉ ଏବଂ ଚିନ୍ତାକରୁ । ଆମେ ଅଧିକାଂଶ ଲୋକ କ'ଣ କରିବା, ସେଥିପାଇଁ ଯୋଜନା କରନ୍ତି, ଖସଡ଼ା ପ୍ରସ୍ତୁତ କରନ୍ତି ଏବଂ ବିବ୍ରତ ହୋଇ ପଡ଼ନ୍ତି । ସମୟ ସମୟରେ ଆମେ ଏତେ ବିବ୍ରତ ଓ ବ୍ୟସ୍ତ ହୋଇପଡୁ ଯେ କାର୍ଯ୍ୟଟିକୁ ଅତିମାତ୍ରାରେ କରିପକାନ୍ତି ଏବଂ କ'ଣ ଭୁଲଭ୍ରାନ୍ତି ଘଟିଲା, ତାହା ମଧ୍ୟ ଜାଣିପାରନ୍ତି ନାହିଁ । କିନ୍ତୁ ଏହି ଉଭୟ ଚିନ୍ତା କରିବାର ସାମର୍ଥ୍ୟର ସତ୍ୟତା ପ୍ରତି ଅନାଦାର ସୃଷ୍ଟି କରିଥାଏ ।

ଆଉ ଏକ ପ୍ରକାର ଚିନ୍ତା ରହିଛି, ଯାହା ଅତ୍ୟନ୍ତ ଲୋକପ୍ରିୟ, ଯାହାକୁ କୁହାଯାଏ କଳ୍ପନା । ଏହା ମଧ୍ୟ ଏକ ଭିନ୍ନ ପ୍ରକାରର ଚିନ୍ତା । ଏହା ଅତ୍ୟନ୍ତ ଆମୋଦଦାୟକ ଏବଂ ଏହି ଚିନ୍ତା ବ୍ୟକ୍ତିଗତ ଓ ସାମାଜିକ ଜୀବନର ଭୁଲ୍ ତ୍ରୁଟିକୁ ସଂଶୋଧନ କରିପାରେ । ଅବଶ୍ୟ ଏହା କେବଳ କେତେକ ବ୍ୟକ୍ତିଙ୍କ କ୍ଷେତ୍ରରେ ଘଟେ । କଳ୍ପନା ମଧ୍ୟ ଲୋକମାନଙ୍କ ମନରେ ବଞ୍ଚିବାର ଆଶା ଜାଗ୍ରତ କରେ । ଏପରିକି ଯେଉଁମାନେ ଧନ୍ୟାଢ଼୍ୟ, ସେମାନେ ଉନ୍ନତମାନର ଜୀବନ ବଞ୍ଚିବା ପାଇଁ, ଅନ୍ୟ ସମ୍ମୁଖରେ ନିଜର ଭାବମୂର୍ତ୍ତିକୁ ବଜାୟ ରଖିବା ପାଇଁ, ସଂସାର ଚାପକୁ ସମ୍ମୁଖୀନ ହେବାକୁ କଳ୍ପନାର ଆଶ୍ରୟ ଗ୍ରହଣ କରନ୍ତି । ବାସ୍ତବ ଜୀବନରୁ ବର୍ତ୍ତିବା ପାଇଁ ଆମେ ଆମୋଦପ୍ରମୋଦ, ସଂଗୀତ, ନାଟକ ଓ ଗଳ୍ପ ମାର୍ଗ ଦେଇ ଖସିଯିବାକୁ ଚାହୁଁ । ଏହି ତିନି ପ୍ରକାର ଚିନ୍ତା ବ୍ୟତୀତ ଆଉ ଏକ ପ୍ରକାର ମାର୍ଗ ରହିଛି ତାହା ହେଉଛି ଗଭୀର ଚିନ୍ତନ । ଏହି ଗଭୀର ଚିନ୍ତନ ଫଳରେ ମାନବ ସଭ୍ୟତାର ବିକାଶ ଘଟିଛି, ଯାହା ଆମେ ବର୍ତ୍ତମାନ ଦେଖୁଛୁ ଓ ଉପଲବ୍ଧି କରୁଛୁ ।

ଉଦାହରଣ ସ୍ୱରୂପ ଯେତେବେଳେ ଆତ ଗଛରୁ ଆତ ତଳେ ପଡ଼ିଲା, ସେତେବେଳେ ଏହି ଗଭୀର ଚିନ୍ତା ଯୋଗୁଁ ହିଁ ଆମେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର କଲୁ । ଠିକ୍ ସେହିପରି ଚିନ୍ତା ଯୋଗୁଁ ଆମର ପୂର୍ବଜମାନେ ଓଡ଼ିଆ ଭାଷା ଭିତ୍ତିରେ ଓଡ଼ିଶା ରାଜ୍ୟ ଗଠନର ଦାବି ଉପସ୍ଥାପିତ କଲେ ଏବଂ ଆମର ଓଡ଼ିଶା ପ୍ରଦେଶ ଗଠନ ହେଲା । କାରଣ ଏହି ଗଭୀର ଚିନ୍ତା ଆବଶ୍ୟକ କରେ ଯାହାସବୁ ତଥ୍ୟ ରହିଛି ତାକୁ ଧାରାବାହିକ ଓ ପର୍ଯ୍ୟାୟକ୍ରମେ ଆଲୋଚନା କରିବା, ମୂଲ୍ୟାଙ୍କନ କରିବା ଓ ତାକୁ ପୂର୍ଣ୍ଣାଙ୍ଗ ରୂପ ଦେବା । ଓଡ଼ିଆ ଭାଷାଭିତ୍ତିରେ ଓଡ଼ିଶା ରାଜ୍ୟ ଗଠନ କରିବା ପାଇଁ ଏହିପରି ଚିନ୍ତା ଉପସ୍ଥାପିତ କରାଯାଇଥିବାରୁ ଆମେ ଆଜି ସ୍ୱତନ୍ତ୍ର ଉତ୍କଳ ଦିବସ ପାଳନ କରୁଅଛୁ । ଆମର ଭାଷା ଓଡ଼ିଆ ଓ ଆମର ରାଜ୍ୟ ଓଡ଼ିଶା ବୋଲି ଗର୍ବରେ କହୁଅଛୁ ।

ଓଡ଼ିଶାକୁ ଭାଷାଭିତ୍ତିରେ ସ୍ୱତନ୍ତ୍ର ରାଜ୍ୟ କରିବା ପାଇଁ ପ୍ରଥମେ ଚିନ୍ତା କ୍ଷେତ୍ରରେ ପ୍ରକ୍ରିୟା ଆରମ୍ଭ ହେଲା । ପ୍ରଥମେ

ଦୃଷ୍ଟିନିକ୍ଷେପ କରି ଦେଖାଗଲା ଯେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ନଥିବା ହେତୁ କିପରି ଶୋଷଣର ଶିକାର ହେଉଛି, କିପରି ହିନୀମାନି ଦେଖାଯାଉଛି । ଓଡ଼ିଶା ମାଟିରେ ବିଦେଶୀ ଉପନିବେଶବାଦୀ ଚକ୍ରାନ୍ତରେ ଓଡ଼ିଆ ଭାଷା ବିପର୍ଯ୍ୟସ୍ତ ହୋଇଥିଲା । ଓଡ଼ିଶା ପ୍ରଦେଶ ଗଠନ ହେଲେ ଅନ୍ୟ କୌଣସି ରାଜ୍ୟର କିଛି କ୍ଷତି ହେବାର ସମ୍ଭାବନା ମଧ୍ୟ ନଥିଲା ।

ଗଭୀର ଚିନ୍ତନର ବିଶେଷତ୍ୱ ହେଉଛି ଏହା ତର୍କସମ୍ମତ ଓ ଯୁକ୍ତିଯୁକ୍ତ । ଯଦି ସଠିକ୍ ଯୁକ୍ତି ରାଜ୍ୟ ଗଠନ ପାଇଁ ନ ଥାନ୍ତା, ତେବେ ହୁଏତ ଏହା ସମ୍ଭବ ହୋଇ ପାରିନଥାନ୍ତା । ଓଡ଼ିଶା ପ୍ରଦେଶ ଗଠନ ପାଇଁ ୨୫.୧୦.୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ଆବାହନୀ ଅଧିବେଶନରେ ଯେଉଁ ଆହ୍ୱାନ ଦିଆଯାଇଥିଲା, ତାହାର ଫଳହେଲା ୧୯୦୫ ମସିହାରେ ବିଭାଜିତ ଓଡ଼ିଆଭାଷୀ ପଶ୍ଚିମ ଓ ଉତ୍ତର ଅଞ୍ଚଳର ମିଶ୍ରଣ ଘଟିଥିଲା । ଉତ୍କଳ ସମ୍ମିଳନୀର ମଞ୍ଚରେ ସମଷ୍ଟିଗତ ଭାବର ସାର୍ବଜନୀନ ପ୍ରୀତି, ମୈତ୍ରୀ ପ୍ରତିଷ୍ଠିତ ହେବା ସହିତ ଓଡ଼ିଆମାନଙ୍କ ଜାତୀୟ ଜୀବନରେ ପ୍ରଥମଥର ପାଇଁ ଗୋଷ୍ଠୀବଦ୍ଧତା ପ୍ରକାଶ ପାଇଥିଲା ।

ତର୍କସମ୍ମତ ଓ ଯୁକ୍ତିଯୁକ୍ତ ସିଦ୍ଧାନ୍ତକୁ ଉପସ୍ଥାପିତ କରି ରାଜ୍ୟ ଗଠନର ମହାନ୍ କଣ୍ଡାରୀ ଉତ୍କଳଗୌରବ ମଧୁସୂଦନ ଜାତି ପ୍ରତି ତାଙ୍କର ଭାଷଣରେ କହିଥିଲେ, ମୁଁ ଯେତେବେଳେ ଏହି ସଂଘର୍ଷପୂର୍ଣ୍ଣ ସଂଗ୍ରାମର ପୃଷ୍ଠଭୂମିକୁ ପର୍ଯ୍ୟାଲୋଚନା କରେ କଅଣ ବା ଦେଖିବାକୁ ପାଏ ? ମୁଁ ଯେତେବେଳେ ଏହି ଆନ୍ଦୋଳନ ଆରମ୍ଭ କଲି ଜାତି (ଓଡ଼ିଆ) ବୋଲି କିଛି ନ ଥିଲା । ମୁଁ ସେତେବେଳେ ସର୍ବତ୍ର ଶୁଷ୍କ କଙ୍କାଳ ଆଉ ଅସ୍ଥିମାନଙ୍କର ସ୍ତୁପୀକୃତ ପାହାଡ଼ମାନଙ୍କୁ ହିଁ ଦେଖୁଥିଲି, କେବଳ ଅସ୍ଥି, ଅସ୍ଥି, ଆଉ ଅନ୍ୟ କିଛି ନୁହେଁ, କେବଳ ହିଁ ଅସ୍ଥି । ମତେ ସେହି ନିର୍ଜୀବ ଶୁଷ୍କ ଅସ୍ଥି କଙ୍କାଳ ମଧ୍ୟରେ ମାଂସପେଶୀକୁ ସଂଯୁକ୍ତ କରିବାକୁ ପଡ଼ିଲା । ସେହି ଶୀର୍ଷ ହସ୍ତମାନଙ୍କୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରିବା ସହିତ ସେମାନଙ୍କୁ ଘେନି ମୋତେ ଦୁର୍ଦ୍ଧର୍ଷ ସଂଗ୍ରାମରେ ଅବତୀର୍ଣ୍ଣ ହେବାକୁ ପଡ଼ିଲା । ଉର୍ଦ୍ଧ୍ୱରୁ ଭଗବାନଙ୍କ ବ୍ୟତୀତ ଏହି ଦୁରୂହ କାର୍ଯ୍ୟରେ ମତେ ଆଉ କେହି ସାହାଯ୍ୟ ପ୍ରଦାନ କରିନଥିଲେ । ପରିଶେଷରେ ସେ ନିଜର ବକ୍ତବ୍ୟ ସମାପ୍ତି କରି କହିଥିଲେ, ଆମ୍ଭେମାନେ ଭାରତରେ ସବୁଠାରୁ ଅଧିକ ଆଇନ ଆଚରଣ କରୁଥିବା ଜାତି ରୂପରେ ସୁପରିଚିତ । ଭଗବାନଙ୍କ ସହିତ ସମନ୍ୱିତ ହୁଅ । କର୍ତ୍ତବ୍ୟର ଆହ୍ୱାନରେ ସଂଗ୍ରାମ କରିଚାଲ । ଅନ୍ୟ ଜାତିମାନଙ୍କୁ ସାହାଯ୍ୟ କରିବାକୁ ତତ୍ପର ହୁଅ । ପୁଣି ସେହିଦିନ ଆସିବ, ଯେତେବେଳେ ତୁମ୍ଭମାନଙ୍କୁ କର୍ତ୍ତବ୍ୟ ସମ୍ପାଦନର ହିସାବ ପ୍ରଦାନ କରିବାକୁ ପଡ଼ିବ । ତୁମେ ଯଦି ଜଗତର ମଙ୍ଗଳ ସାଧନ କରିଥାଅ, ସେହି ବିଧାତା ପୁରୁଷ ଆସି କହିବେ ହେ, ମୋର ସନ୍ତାନ, ମୋର ସମୀପକୁ ଆସ । ମୁଁ ତୁମକୁ ଜୀବନର ମହିମା ମଣ୍ଡିତ ମୁକୁଟ ପିନ୍ଧାଇ ଦେବି ।

ଜାତି ଗଠନର ଏହି ଗଭୀର ଚିନ୍ତନରେ ସାର୍ଥକ ସହଯୋଗ ଲାଗି ବିଦ୍ୟମାନ ଥିଲେ କ୍ରାନ୍ତିପୁରୁଷ ରାଧାନାଥ ଆଉ ଫକୀର ମୋହନଠାରୁ ଆରମ୍ଭ କରି ଗଙ୍ଗାଧର, ଚନ୍ଦ୍ରଶେଖର, କୃଷ୍ଣଚନ୍ଦ୍ର ଗଜପତି, ଶଶୀଭୂଷଣ ପ୍ରମୁଖ ବହୁଜନନାୟକଗଣ । ସେମାନେ ଛିନ୍ନ ବିଚ୍ଛିନ୍ନ ଓଡ଼ିଆ ଜାତି ପାଇଁ ଆଣି ଦେଇଥିଲେ ନିଜସ୍ୱ ସ୍ୱତନ୍ତ୍ର ଭିତ୍ତିଭୂମି ଆଉ ଏକୀଭୂତ ପ୍ରାଣସତ୍ତା । ସୁରସିଂହ ପଟ୍ଟନାୟକଙ୍କ ଭାଷାରେ, 'ମଧୁସୂଦନଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ୍‌ଦର୍ଶନ, ପାରଳା ଓ ଖଲିକୋଟ୍ ରାଜାଙ୍କର କାର୍ଯ୍ୟନିର୍ବାହ, କନିକା ରାଜା, ଭୁବନାନନ୍ଦ ଦାସଙ୍କର କର୍ମତତ୍ପରତା, ବ୍ରଜସୁନ୍ଦର ଦାସ, ଶଶୀଭୂଷଣ ରଥ, ନୀଳକଣ୍ଠ ଦାସ ପ୍ରମୁଖଙ୍କର ସହଯୋଗିତା ଆଉ ଅସଂଖ୍ୟ ନେତୃବର୍ଗଙ୍କର ଉତ୍ସର୍ଗୀକୃତ କର୍ମ ସମ୍ପାଦନ ଫଳରେ ଓଡ଼ିଶା ପ୍ରଦେଶ ଗଠନ ସମ୍ଭବ ହୋଇ ପାରିଥିଲା ଭାରତ ସଂସ୍କାରର ଏକ ଅଙ୍ଗୀଭୂତ କାର୍ଯ୍ୟକ୍ରମ ଉପରେ ।'

ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ କବି ସାହିତ୍ୟିକ ମାୟାଧର ମାନସିଂହ କଲିକତାଠାରେ ଭାଷଣ ଦେଇ କହିଥିଲେ, ମୁଁ ଓଡ଼ିଆ ଜାତିକୁ ତିନୋଟି କାରଣରୁ ଭଲପାଏ । ସେ କାରଣଗୁଡ଼ିକ ଏହିପରି – ପ୍ରଥମ କାରଣ ଅବଶ୍ୟ ଏହି ଯେ, ମୋର ଜନନୀ ମତେ ଯେଉଁ ଭାଷା ଶିଖାଇଥିଲେ, ଓଡ଼ିଆ ଜାତି ସେହି ଭାଷା କହେ । ଏହି ଭାଷା ମୋ ରକ୍ତରେ ମିଶିଯାଇଛି । ଅନ୍ୟ ଯେତେ ଲୋକଙ୍କ ରକ୍ତରେ ଏ ଭାଷା ମିଶିଛି, ସେମାନଙ୍କ ପ୍ରତି ମୋର ଆକର୍ଷଣ ହେବା ସ୍ୱାଭାବିକ । ସେହିମାନେ ହିଁ ଓଡ଼ିଆ ଜାତି । ଦ୍ୱିତୀୟ କାରଣ ହେଉଛି ଗୋଟିଏ

ସ୍ୱଚ୍ଛଳ, ଉନ୍ନତ ସଭ୍ୟ ଜାତିର ଅଧଃପତନ। ଓଡ଼ିଆ ଜାତିର ଆଧୁନିକ ଦୁଃଖ, ଦାରିଦ୍ର୍ୟ, ମୂର୍ଖତା ମତେ ଏ ଜାତି ପ୍ରତି କରୁଣାମୟ କରି ରଖେ। ନର ନାରାୟଣର ସେବା କରିବାରେ ଯଦି ମୋ ଜୀବନର ସାର୍ଥକତା, ତେବେ ମୁଁ ଆଉ କୁଆଡ଼େ ଯିବି ? ଏହି ଓଡ଼ିଶା ଦେଶ ତ ତା'ର ପ୍ରକୃତ କ୍ଷେତ୍ର। ଓଡ଼ିଆ ଜାତିକୁ ମୁଁ ଭଲ ପାଇବାର ତୃତୀୟ ଓ ଶ୍ରେଷ୍ଠ କାରଣ ଏହି ଯେ, ଓଡ଼ିଆ ଜାତି ଏକ ସ୍ରଷ୍ଟାର ଜାତି। ଓଡ଼ିଆ ସ୍ୱପ୍ନ ଅଛି ଏବଂ ସେ ତା'ର ସ୍ୱପ୍ନକୁ ଏପରି ଭାବରେ ରୂପ ଦେଇପାରିଛି, ଯାହା କେବଳ ସଭ୍ୟତମ ମାନବ ହିଁ କରିପାରେ।'

ଓଡ଼ିଆ ଶିଳ୍ପୀ, ନିଜ ସୃଷ୍ଟିରେ ହିଁ ନିଜକୁ ମିଶାଇ ଦେଇଛି। ବୀଜ ନିଜକୁ ନଷ୍ଟ କରି ବୃକ୍ଷରେ ପରିଣତ ହେଲାପରି, ଓଡ଼ିଆ ଶିଳ୍ପୀ କଳାରେ ନିଜର ସମଗ୍ର ଅସ୍ତିତ୍ୱକୁ ସମର୍ପଣ କରିଯାଇଛି। କଳା ସୃଷ୍ଟିର ଇତିହାସରେ ଏ ଅବଦାନ ଅତୁଳନୀୟ। ମୁଁ ତେଣୁ ଓଡ଼ିଆ ଶିଳ୍ପୀକୁ ବାରମ୍ବାର ନମସ୍କାର କରେ ଏବଂ ସେହି ସୂତ୍ରରେ ଓଡ଼ିଆ ଜାତିକୁ ଭଲ ପାଏ।

ଓଡ଼ିଆ ଜାତିର ପରିଚୟ ତା'ର ଭାଷା, ତା'ର ସଂସ୍କୃତି, ତା'ର ଶିଳ୍ପକଳା। ଆମେ ଏପରି ଏକ ଜାତିରେ ଓ ରାଜ୍ୟରେ ଜନ୍ମଲାଭ କରିଅଛୁ, ଯାହା ମୂଳରୁ କ୍ଷଣିକ ପ୍ରତି ତାଚ୍ଛଲ୍ୟ କରି ଚିରନ୍ତନ ଉପରେ ଆଖି ରଖିବାକୁ ଶିଖିଛି। ଏହାହିଁ ଆମର ଆଦର୍ଶ। ଏହି ଆଦର୍ଶକୁ ଧରି ରଖିବା, ତାକୁ ଧରି ଜୀବନ ବଞ୍ଚିବା ପାଇଁ ଆମକୁ ଆମ ଭାଷା ପ୍ରତି, ଆମ ସାହିତ୍ୟ ପ୍ରତି, ଆମ ରାଜ୍ୟ ପ୍ରତି ଅଙ୍ଗୀକୃତ ହେବାକୁ ହେବ। ଏ ସମ୍ପର୍କରେ ଆମେ ଯେତେ ଗଭୀର ଚିନ୍ତା କରିବା, ଆମେ ସେତେ ଉଚ୍ଚତର ସୋପାନରେ ପହଞ୍ଚିବା। 'ଉଚ୍ଚ ହେବା ପାଇଁ କର ଯେବେ ଆଶା, ଉଚ୍ଚ କର ଆଗେ ନିଜ ମାତୃଭାଷା।' ଏ ବାଣୀ ଆଜି ବି ଓଡ଼ିଆ ପ୍ରାଣରେ ଉତ୍ସାହ ଆଣେ। ନିଜକୁ ଆତ୍ମସମ୍ମାନ ଜ୍ଞାନ ଦିଏ । ସୃଜନ ଆନନ୍ଦ କେବଳ ମାତୃଭାଷାରେ ହିଁ ସମ୍ଭବ। ମୁଁ ଓଡ଼ିଆ, ମୋର ଭାଷା ଓଡ଼ିଆ ଏବଂ ମୁଁ ଓଡ଼ିଶାର । ଏହି ଭାବ ଯଦି ମନରେ ଜାଗ୍ରତ ନ ହୁଏ, ତେବେ ସମାଜ କୃତ୍ରିମ ହୋଇଉଠେ। ଭାଷା ସେହି ପରିମାଣରେ ଜଟିଳ ହୋଇଯାଏ। ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଯେଉଁ ନିରବଚ୍ଛିନ୍ନ ସଂଗ୍ରାମ, ତା'ର ଭିତ୍ତିଭୂମିରେ ଓଡ଼ିଆ ଭାଷାର ଯେଉଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ସେ ସମ୍ପର୍କରେ ବର୍ତ୍ତମାନ ଯୁବପିଢ଼ି ଗଭୀର ଚିନ୍ତା କରିବାର ଆବଶ୍ୟକ। ଭାଷା ମୂଳତଃ ତିନିଗୋଟି କାର୍ଯ୍ୟ କରେ। ପ୍ରଥମରେ ବ୍ୟକ୍ତି ସମ୍ବେଦନଶୀଳତାର ପରିଚୟ ଦିଏ। ଦ୍ୱିତୀୟରେ ମୂଲ୍ୟବୋଧର ସମ୍ଭାବନାକୁ ଖୋଜେ ଏବଂ ତୃତୀୟରେ ଭାବି ଚିନ୍ତି କରି ଯଥାର୍ଥକୁ ଏକ ନୂତନ ଢଙ୍ଗରେ ବୁଝିବାରେ ସାହାଯ୍ୟ କରେ। ଏହିପରି ଭାବରେ ଏକ ପକ୍ଷରେ ଭାଷା ସାଂସ୍କୃତିକ ଢାଞ୍ଚା ସହିତ ଯୁକ୍ତ ହୁଏ ଏବଂ ଅନ୍ୟ ପକ୍ଷରେ ଯୁଗର ଆବଶ୍ୟକତାକୁ ବ୍ୟକ୍ତ କରେ। ତେଣୁ ଭାଷା କେବଳ ମାଧ୍ୟମ ନୁହେଁ ବରଂ ମନୁଷ୍ୟ ଅସ୍ତିତ୍ୱକୁ ବୁଝିବାର ମାଧ୍ୟମ। ବିଶ୍ୱର ସମସ୍ତ ଚିନ୍ତକମାନେ ଏହା ସ୍ୱୀକାର କରିଛନ୍ତି ଯେ ପିଲାଙ୍କର ଶିକ୍ଷା–ଦୀକ୍ଷା ତାହାର ମାତୃଭାଷାରେ ହେବା ଉଚିତ। ମୌଳିକ ଚିନ୍ତା ଅନ୍ୟ ଭାଷାରେ ହୁଏ ନାହିଁ। ଥରେ ବିଶ୍ୱକବି ରବୀନ୍ଦ୍ରନାଥ ଟାଗୋର ପ୍ରସିଦ୍ଧ ଲେଖକ ବଲରାଜ ସାହାଣୀଙ୍କୁ କହିଥିଲେ, 'ଲେଖକର ସମ୍ପର୍କ ମାଟି ସହିତ, ନିଜର ଲୋକମାନଙ୍କ ସହିତ ଓ ନିଜର ଭାଷା ସହିତ। ଏହା ତୁମକୁ ଆପଣାପଣର ବିଶ୍ୱାସ ଦିଏ।' ଓଡ଼ିଆ ଶାସ୍ତ୍ରୀୟ ମାନ୍ୟତା ପାଇବା ପରେ ଉପରୋକ୍ତ ବକ୍ତବ୍ୟ ଆହୁରି ଗୁରୁତ୍ୱପୂର୍ଣ୍ଣ। ସେଥିପାଇଁ ଯେତିକି ଗର୍ବ ଓ ଗୌରବ କରିବା ତତୋଽଧିକ ଦାୟିତ୍ୱ ବହନ କରିବା। ଓଡ଼ିଶା ପ୍ରଦେଶ ଭାରତଭୂମିରେ ତା'ର ସ୍ୱକୀୟ ମର୍ଯ୍ୟାଦାରେ ରଦ୍ଧିମନ୍ତ ହୋଇ ବିକାଶ ମାର୍ଗରେ ଅଗ୍ରସର, ତାହା ମଧ୍ୟ ଆମ ପାଇଁ ମହତ୍ତ୍ୱପୂର୍ଣ୍ଣ। ଏହାକୁ ଅଧିକ ସୁସଂହତ ଓ ଉନ୍ନତ ସୋପାନକୁ ଉନ୍ନୀତ କରିବା ପାଇଁ ଓଡ଼ିଆ ଭାଷା ଉପରେ ଗୁରୁତ୍ୱ ଦେଇ କାର୍ଯ୍ୟ କରିବା, ତାହା ଆମର ଗଭୀର ଚିନ୍ତନର ଅଂଶ ହେଉ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫

❖ ❖ ❖

# ଉତ୍କଳଗୌରବ ମଧୁସୂଦନ ଦାସ

ଉତ୍କଳ ଗୌରବ ମଧୁସୂଦନ ଦାସ ଥିଲେ ଓଡ଼ିଆ ଜାତିର ଗର୍ବ ଓ ଗୌରବର ପ୍ରତୀକ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାରେ ନୂତନ ରାଜନୈତିକ ଚେତନା ସୃଷ୍ଟି କରି ଓଡ଼ିଶାର ଏବଂ ଓଡ଼ିଆ ଜାତିର ଉନ୍ନତି ଓ ସ୍ୱାର୍ଥରକ୍ଷା ତଥା ସ୍ୱାଭିମାନ ବଜାୟ ରଖିବା ପାଇଁ ମଧୁବାବୁ ସର୍ବସ୍ୱ ତ୍ୟାଗ କରିଥିଲେ । ଛାତ୍ର ଜୀବନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଜୀବନ ଥିଲା ସଂଘର୍ଷମୟ । ସେ ସାରାଜୀବନ ଦେଶ ଓ ଜାତି ପାଇଁ ସଂଘର୍ଷ କରି ଭାରତବର୍ଷରେ ଓଡ଼ିଆ ଜାତିର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ । ଯାହାଫଳରେ ଓଡ଼ିଆ ଜାତି ଆଜି ଭାରତବର୍ଷରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାପୂର୍ଣ୍ଣ ଆସନ ହାସଲ କରିପାରିଛି ।



ମଧୁସୂଦନ ଦାସ ୧୮୪୮ ମସିହା ଏପ୍ରିଲ ୨୮ ତାରିଖ ଦିନ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ଶୈଶବାବସ୍ଥାରୁ ମଧୁସୂଦନ ମାତା ପାର୍ବତୀ ଦେବୀଙ୍କର ଧର୍ମପୂତ ଜୀବନଶୈଳୀରେ ପ୍ରଭାବିତ ହୋଇଥିଲେ । ସେ ତାଙ୍କ ମା'ଙ୍କଠାରୁ ଶିଖି ଥିଲେ ''ଆଲୋ ସଖୀ ଆପଣା ମହତ ଆପେ ରଖି ।'' ଯାହାକୁ ପାଥେୟ କରି ଉତ୍ତର ଜୀବନରେ ସେ ବହୁ ଉର୍ଦ୍ଧ୍ୱକୁ ଉଠି ପାରିଥିଲେ । ଚାଟଶାଳୀ ପାଠ ଶେଷ କରିବା ପରେ ମଧୁସୂଦନ ସତ୍ୟଭାମାପୁର ନିକଟବର୍ତ୍ତୀ ମହାସିଙ୍ଗପୁର ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଥିଲେ । ତା'ପରେ ହାଇସ୍କୁଲରେ ପଢ଼ିବା ପାଇଁ କଟକ ଯାଇ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ ଏବଂ ୧୮୬୪ ମସିହାରେ ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏଣ୍ଟ୍ରାନ୍ସ ପାଶ୍ ପରେ ବାପାଙ୍କର ଇଚ୍ଛା ଥାଏ ସେ ଚାକିରି କରନ୍ତୁ କିନ୍ତୁ ମଧୁବାବୁଙ୍କ ଇଚ୍ଛା ଥାଏ ସେ ଉଚ୍ଚଶିକ୍ଷା ଲାଭ କରି ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ହେବେ । ବାପାଙ୍କର ତୀବ୍ର ବିରୋଧ ସତ୍ତ୍ୱେ ମଧୁବାବୁ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ଦୃଢ଼ ସଂକଳ୍ପ ନେଇ କିଛି ଦିନ ପାଇଁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରିଥିଲେ ଓ ତତ୍‌ପରେ ଉଚ୍ଚଶିକ୍ଷା ପାଇଁ କଲିକତା

ଯାଇ ୧୮୭୦ ମସିହାରେ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ଭାବେ ବି.ଏ. ପାଶ୍ କଲେ । ସେ ୧୮୭୩ ମସିହାରେ ଏମ୍.ଏ. ଓ ତତ୍ପରେ ବି.ଏଲ୍. ପାଶ୍ କରିଥିଲେ । ଇତ୍ୟବସରରେ ତାଙ୍କର ବିବାହ ସରିଥାଏ । ପତ୍ନୀ ସୌଦାମିନୀ ଥିଲେ ବଙ୍ଗୀୟ ଖ୍ରୀଷ୍ଟିୟାନ୍ ସଂପ୍ରଦାୟର । କଲିକତା ଆସିବା ପରଠାରୁ ମଧୁବାବୁ ମଧ୍ୟ ଖ୍ରୀଷ୍ଟିୟାନ୍ ଧର୍ମରେ ଦୀକ୍ଷିତ ହୋଇ ସାରିଥିଲେ ଏବଂ ପିତାଙ୍କ ଦ୍ୱାରା ତେଜ୍ୟପୁତ୍ର ଭାବେ ଘୋଷିତ ହୋଇଥିଲେ ।

ଓକିଲାତି ପାଶ୍ କରିବା ପରେ ମଧୁବାବୁ ପ୍ରଥମେ କିଛି ବର୍ଷ ପାଇଁ କଲିକତା ହାଇକୋର୍ଟରେ ଓଡ଼ିଆ ଅନୁବାଦକ ଭାବେ କାର୍ଯ୍ୟ କରିଥିଲେ । ସେହି ସମୟରେ ପତ୍ନୀ ସୌଦାମିନୀଙ୍କର ବିୟୋଗ ଘଟିଥିଲା ଏବଂ ଏହା ତାଙ୍କୁ ଏତେ ବ୍ୟଥିତ କରିଥିଲା ଯେ, ସେ ଆଉ ପୁନର୍ବାର ବିବାହ କରି ନଥିଲେ । ତତ୍ପରେ କଲିକତାର ଆଲିପୁର କୋର୍ଟରେ ସେ ତାଙ୍କର ଓକିଲାତି ଜୀବନ ଆରମ୍ଭ କରିଥିଲେ । କଲିକତାରେ ସେ ଥିଲେ ପ୍ରଥମ ଓଡ଼ିଆ ଓକିଲ । କିଛିଦିନ ପରେ କେତେଜଣ ବନ୍ଧୁଙ୍କ ଅନୁରୋଧକ୍ରମେ ମଧୁବାବୁ ୧୮୮୧ ମସିହାରୁ କଟକରେ ଓକିଲାତି ଆରମ୍ଭ କଲେ । ମଧୁବାବୁଙ୍କ ତୀକ୍ଷ୍ଣ ବୁଦ୍ଧି ହେତୁ ସେ ଓକିଲାତିରେ ପାରଦର୍ଶିତା ହାସଲ କରିଥିଲେ । ଓଡ଼ିଆ ଡିଗ୍ରୀଧାରୀ ଆଇନଜୀବୀ ଭାବେ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଜମିଦାର ଓ ରାଜାମାନଙ୍କ ନିକଟରେ ପରିଚିତ ହେଲେ । ଓକିଲାତି ଜୀବନରେ ସେ ବହୁ ଦରିଦ୍ର ଲୋକଙ୍କ ପାଇଁ ବିନା ଫିସ୍‌ରେ ଲଢ଼ି ସେମାନଙ୍କୁ ଅତ୍ୟାଚାରୀ ଧନୀକମାନଙ୍କ କବଳରୁ ରକ୍ଷା କରିଥିଲେ । ତେଣୁ ତାଙ୍କର ଅସାଧାରଣ ଧୀଶକ୍ତି ପାଇଁ ପରମ ସମ୍ମାନ ସ୍ୱରୂପ ଲୋକେ ତାଙ୍କୁ 'ମଧୁ ବାରିଷ୍ଟର' ବୋଲି କହୁଥିଲେ । ସେତେବେଳେ ଇଂରେଜ ସରକାର ଓଡ଼ିଶାର ଗଜପତି ରାଜାଙ୍କ ହାତରୁ ଚକ୍ରାନ୍ତ କରି ଜଗନ୍ନାଥ ମନ୍ଦିର ପରିଚାଳନା ଭାର କାଢ଼ି ନେବା ପାଇଁ ଆଇନ କରିବାରୁ ମଧୁବାବୁ ସେହି ଆଇନ ରଦ୍ଦ ହେବା ପର୍ଯ୍ୟନ୍ତ ଲଢ଼େଇ କରି ଓଡ଼ିଶାର ସମ୍ମାନ ରକ୍ଷା କରିଥିଲେ । କେନ୍ଦୁଝର ରାଜାଙ୍କୁ ତାଙ୍କ ରାଜଗାଦି ଫେରାଇ ଦେବା ପାଇଁ ସେ ସାର୍ ଚାର୍ଲସ୍ ଇଲିଅଟ୍‌ଙ୍କୁ ସାକ୍ଷାତ କରି ଏପରି ଭାବେ ପ୍ରଭାବିତ କରିଥିଲେ ଯେ, ଶେଷରେ ସେ କେନ୍ଦୁଝର ରାଜାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଲେ । ଏହିପରି ଭାବେ ଆଇନ ବ୍ୟବସାୟରେ ତାଙ୍କର ଖ୍ୟାତି ଓ ପ୍ରତିଷ୍ଠା ବୃଦ୍ଧି ପାଇଲା ।

ଓଡ଼ିଶା ଓ ଓଡ଼ିଆଙ୍କ ପାଇଁ ମଧୁବାବୁଙ୍କ ମନ ଭିତରେ ସର୍ବଦା ଦରଦ ଭରି ରହିଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଅବହେଳିତ ଅବସ୍ଥାରେ ଥିବା ସେ ଉପଲବ୍ଧି କଲେ । ମଧୁବାବୁଙ୍କ ପ୍ରଚେଷ୍ଟାରେ ୧୯୦୩ ମସିହାରେ ଆହୂତ ହେଲା ଉତ୍କଳ ସମ୍ମିଳନୀ, ଯାହାକି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଢ଼ି ତୋଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ତାଙ୍କର ନିଷ୍ପାପର ଉଦ୍ୟମ ଫଳରେ ତତ୍କାଳୀନ ବଡ଼ଲାଟ୍ ଲର୍ଡ୍ କର୍ଜନ ସମ୍ବଲପୁର ଅଞ୍ଚଳକୁ ମଧ୍ୟପ୍ରଦେଶରୁ ଅଲଗା କରି ଓଡ଼ିଶାରେ ମିଶାଇ ଥିଲେ । ମଧୁବାବୁଙ୍କର ଲର୍ଡ୍ କର୍ଜନଙ୍କୁ ସାକ୍ଷାତର ଫଳସ୍ୱରୂପ ତତ୍କାଳୀନ ସରକାରଙ୍କ ପକ୍ଷରୁ 'ରିସେଲ୍ ସର୍କୁଲାର' ପ୍ରକାଶ ପାଇଲା । ସେଥିରେ ମଧ୍ୟପ୍ରଦେଶ, ବଙ୍ଗଳା ଏବଂ ମାନ୍ଦ୍ରାଜ ଅଧୀନରେ ଥିବା ଓଡ଼ିଆ ଅଞ୍ଚଳଗୁଡ଼ିକୁ ଓଡ଼ିଶା ଡିଭିଜନ୍‌ରେ ମିଶ୍ରଣ ପାଇଁ ସୁପାରିଶ କରାଯାଇଥିଲା । ମଧୁବାବୁ ୧୯୧୭ ମସିହାରେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ଙ୍କୁ ସାକ୍ଷାତ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ଦାବି ଉପସ୍ଥାପନ କରିଥିଲେ । ପୁନର୍ବାର ୧୯୩୧ ମସିହାରେ ଓଡନେଲ୍ କମିଟି ଆଗରେ ମଧ୍ୟ ଏହି ଦାବିର ପୁନରାବୃତ୍ତି କରିଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା । ଏପରିକି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ମଧୁବାବୁ ଏକାଧିକବାର ଲଣ୍ଡନ ଯାତ୍ରା କରି ସେଠାରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ଯଥାର୍ଥତା ସଂପର୍କରେ ବିଲାତ ସରକାରଙ୍କ ନିକଟରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ ।

ବିଚ୍ଛିନ୍ନାଞ୍ଚଳ ସମେତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଏବଂ ଓଡ଼ିଶାରେ କୁଟୀର ଶିଳ୍ପର ବିକାଶ ସହିତ କୃଷି, ବାଣିଜ୍ୟ, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଏକ ନୂତନ ଜାଗରଣ ସୃଷ୍ଟି କରିବା ସକାଶେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ମଧୁବାବୁ ସର୍ବଦା ଉଦ୍ୟମରତ ଥିଲେ । ତାଙ୍କର ଜୀବନକାଳ ମଧ୍ୟରେ ସେ ଦୁଇଥର ଉତ୍କଳ ସମ୍ମିଳନୀର ସଭାପତି ଭାବେ ମନୋନୀତ ହୋଇଥିଲେ - ପ୍ରଥମେ ୧୯୧୩ ମସିହାରେ

ପୁରୀଠାରେ ହୋଇଥିବା ନବମ ଅଧିବେଶନ ପାଇଁ ଏବଂ ୧୯୧୮ ମସିହାରେ କଟକଠାରେ ଅନୁଷ୍ଠିତ ହୋଇଥିବା ସ୍ୱତନ୍ତ୍ର ଅଧିବେଶନ ପାଇଁ ।

୧୯୧୩ ମସିହା ଜାନୁଆରୀ ୨୦ ତାରିଖରେ ମଧୁବାବୁ ଓଡ଼ିଶାର ପ୍ରଜା ପ୍ରତିନିଧି ଭାବେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ଭାବେ ମନୋନୀତ ହୋଇଥିଲେ ଏବଂ ସେହିବର୍ଷ ସେ ଭାରତୀୟ ବିଧାନ ପରିଷଦ (Imperial Council)କୁ ସର୍ବପ୍ରଥମ ଓଡ଼ିଆ ସଭ୍ୟ ଭାବେ ମଧ୍ୟ ମନୋନୀତ ହୋଇଥିଲେ । ୧୯୨୦ ମସିହା ନଭେମ୍ବର ୩୦ ତାରିଖରେ ମଧୁସୂଦନ ଦାସ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇ ୧୯୨୧ ମସିହା ଏପ୍ରିଲ ୨୨ ତାରିଖରେ ବିହାର-ଓଡ଼ିଶା ସରକାରରେ ସ୍ୱାୟତ୍ତ ଶାସନ ମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ମଧୁବାବୁଙ୍କ ମତରେ ''ମନ୍ତ୍ରୀମାନେ ହେଲେ ଜନସାଧାରଣଙ୍କର ସେବକ, ଜନସେବା ପାଇଁ ମନ୍ତ୍ରୀମାନେ ଦରମା ନେବା ଅନୁଚିତ ।'' ସରକାର ମଧୁବାବୁଙ୍କର ଏହି ମତ ଗ୍ରହଣ ନକରିବାରୁ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ।

ମଧୁବାବୁ କହୁଥିଲେ ''ଶିଳ୍ପର ଉନ୍ନତି ବିନା ଜାତିର ଅର୍ଥନୈତିକ ବିକାଶ ଅସମ୍ଭବ ।'' ସେଥିପାଇଁ ସେ ପ୍ରତିଷ୍ଠା କରିଥିଲେ 'ଉତ୍କଳ ଟ୍ୟାନେରୀ', ଯେଉଁଥିରୁ ଉତ୍ପାଦିତ ଜୋତାର ସେତେବେଳେ ସମଗ୍ର ଦେଶରେ ଚାହିଦା ଥିଲା । ଆଉ ମଧ୍ୟ କଟକର ସୁନା-ରୂପା ତାରକସି କାମର ବିକାଶ ଘଟାଇବା ପାଇଁ ସେ କଟକଠାରେ ପ୍ରତିଷ୍ଠା କରିଥିଲେ 'ଓଡ଼ିଶା ଆର୍ଟଓୟାର୍', ଯାହାର ଉତ୍ପାଦିତ ସାମଗ୍ରୀକୁ ନେଇ ସେ ବିଲାତଠାରେ ଏକ ପ୍ରଦର୍ଶନୀ ଆୟୋଜନ କରିଥିଲେ ଏବଂ ଇଂରେଜମାନଙ୍କୁ ବୁଝାଇ ଦେଇଥିଲେ ଯେ ଓଡ଼ିଆ ବଣିଆମାନେ କିଭଳି ବିନା ଯନ୍ତ୍ରପାତିରେ ଧାତୁଦ୍ରବ୍ୟର ଗୁଣ ଜାଣନ୍ତି । ଏହିସବୁ ଅନୁଷ୍ଠାନ ତାଙ୍କ ନିଜ ପ୍ରଚେଷ୍ଟା ତଥା ସ୍ୱ-ଅର୍ଥରେ ପରିଚାଳିତ ହେଉଥିଲା । ଉତ୍କଳ ଟ୍ୟାନେରୀ ପାଇଁ ସେ କରିଥିବା ଋଣ ପରିଶୋଧ କରି ନପାରି ନିଜର କଟକ ଓ ପୁରୀଠାରେ ଥିବା ଜମି ଓ ଘର ବନ୍ଧକ ତଥା ବିକ୍ରି କରି ଦେଇଥିଲେ । ତଥାପି ସେ ଭାଙ୍ଗିପଡ଼ି ନଥିଲେ । ଓଡ଼ିଆ ଜାତିର ଉନ୍ନତି ତଥା ସ୍ୱାଭିମାନ ପ୍ରତିଷ୍ଠା ପାଇଁ ଅକୁଣ୍ଠିତ ଚିତ୍ତରେ ସେ ନିଜର ସର୍ବସ୍ୱ ଦାନ କରି ଯାଇଛନ୍ତି । ଓଡ଼ିଆ ଜାତି କିପରି ଦେଶ ବିଦେଶରେ ସମ୍ମାନିତ ହେବ, ଏହାଥିଲା ତାଙ୍କର ଏକମାତ୍ର ଧ୍ୟେୟ ।

ଓଡ଼ିଆ ସାହିତ୍ୟର ନବଜାଗରଣରେ ମଧୁବାବୁଙ୍କର ଭୂମିକା ଥିଲା ଅନବଦ୍ୟ । ମଧୁବାବୁଙ୍କ ରଚିତ କାବ୍ୟକବିତା ଓଡ଼ିଆ ଜାତିକୁ ନୂତନ ଦିଗନ୍ତର ସନ୍ଧାନ ଦେବା ସଂଗେସଂଗେ ପ୍ରତ୍ୟେକ ଓଡ଼ିଆଙ୍କ ପ୍ରାଣରେ ଭରି ଦେଇଥିଲା ଜାତୀୟତାର ପ୍ରେମ ବହ୍ନି । ତାଙ୍କ ରଚିତ 'ଉତ୍କଳ ସନ୍ତାନ' ହେଉ ଅଥବା 'ସନ୍ତାନର ଉକ୍ତି' ହେଉ, 'ଜାତି ଇତିହାସ' ହେଉ କିମ୍ବା 'ଜନନୀର ଉକ୍ତି' ହେଉ ସବୁ କବିତାରେ ଭରି ରହିଛି ଜନନୀ ଜନ୍ମଭୂମି ପାଇଁ ଏକ ଆବେଗପୂର୍ଣ୍ଣ ଜାତୀୟତା ଭାବ, ଯାହାକି ଆଜି ମଧ୍ୟ ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରୁଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ତଥା ଓଡ଼ିଆ ଜାତିର ସାମଗ୍ରିକ ବିକାଶ ମଧୁବାବୁଙ୍କର ସ୍ୱପ୍ନ ଓ ସଂକଳ୍ପ ଥିଲା । ବିଧିର ବିଧାନ କେ କରିବ ଆନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦୁଇବର୍ଷ ପୂର୍ବରୁ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖ ଦିନ ଉତ୍କଳ ଜନନୀର ଏହି ମହାନ୍ ବରପୁତ୍ରଙ୍କର ଜୀବନ ଦୀପ ଲିଭି ଯାଇଥିଲା । ଓଡ଼ିଆ ଜାତିର ଉତ୍ଥାନ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ଓଡ଼ିଆ ଜାତି ପାଇଁ ତାଙ୍କର ଆତ୍ମୀୟତାର ପଟାନ୍ତର ନାହିଁ । ମୃତ୍ୟୁଶଯ୍ୟାରେ ଥାଇ ସେ କହିଥିଲେ, ''ମୁଁ ଅକିଞ୍ଚନ ଚାଲିଯାଏ କିନ୍ତୁ ଓଡ଼ିଆ ଜାତି ବଞ୍ଚି ରହିଥାଉ ।'' ପ୍ରକୃତରେ ସେ ଥିଲେ ଉତ୍କଳ ଜନନୀର ଯୋଗ୍ୟତମ ସନ୍ତାନ ।

❖ ❖ ❖